ଓଡ଼ିଶାର ପ୍ରଥମ ସାହିତ୍ୟ ପତ୍ର

# ଉତ୍କଳ ଦର୍ପଣ

ସଂଗ୍ରହ ଓ ସଂପାଦନା

ଡକ୍ଟର ଅରବିନ୍ଦ ଗିରି



ପ୍ରଗତି ଉତ୍କଳ ସଂଘ

ରାଉରକେଲା

"ନୂତନ ଯୁଗରୁଚିରେ ଉଦ୍‌ବୁଦ୍ଧ ଏକ ଶିକ୍ଷିତ ସଂପ୍ରଦାୟ ଯେତେବେଳେ ପାଠ୍ୟପୁସ୍ତକ ସହିତ ସୃଷ୍ଟିମୁଖୀ ଯଥାର୍ଥ ସାହିତ୍ୟର ରଚନା ଦିଗରେ ଏକାନ୍ତ ଅଭିଳାଷୀ ହୋଇ ଉଠୁଥିଲା, ସେତେବେଳେ ତା ଭାବନାର ଅଭିବ୍ୟକ୍ତି ପାଇଁ ଆବଶ୍ୟକ ପଡୁଥିଲା ପ୍ରକୃଷ୍ଟ ମାଧ୍ୟମ। **ଉତ୍କଳର ପ୍ରଥମ ସାହିତ୍ୟ ମାସିକ 'ଉତ୍କଳ ଦର୍ପଣ' ଥିଲା ଏଇ ଆବଶ୍ୟକତା ପରିପୂରଣର ମୂର୍ତ୍ତ ପ୍ରକାଶ ମାତ୍ର** । ଏ ପତ୍ରିକାର ଏପରି ଜନ୍ମ ପରିବେଶ ଓ ଆବିର୍ଭାବ-ଇତିହାସ ଓଡିଶାର ଅତି କମ୍ ସାହିତ୍ୟ-ପତ୍ରିକା ଭାଗ୍ୟରେ ଦେଖିବାକୁ ମିଳେ"।

**ଡକ୍ଟର ନଟବର ସାମନ୍ତରାୟ**

ଓଡ଼ିଶାର ପ୍ରଥମ ସାହିତ୍ୟପତ୍ର

# ଉତ୍କଳ ଦର୍ପଣ

(୧୮୭୩)

ସଂଗ୍ରହ ଓ ସମ୍ପାଦନା :

ଡକ୍ଟର ଅରବିନ୍ଦ ଗିରି

ପ୍ରଗତି ଉତ୍କଳ ସଂଘ

ରାଉରକେଲା

**ଓଡ଼ିଶାର ପ୍ରଥମ ସାହିତ୍ୟପତ୍ର : ଉତ୍କଳ ଦର୍ପଣ**

ସଂପାଦକ : **ଡକ୍ଟର ଅରବିନ୍ଦ ଗିରି**
ସୁଏଲପୁର, ବାଲେଶ୍ୱର

ପ୍ରକାଶକ : **ପ୍ରଗତି ଉତ୍କଳ ସଂଘ**
ଫକୀରମୋହନ ନଗର, ସେକ୍ଟର-୭
ରାଉରକେଲା - ୭୬୯୦୦୩, ଓଡ଼ିଶା
ଫୋନ୍ - (୦୬୬୧)୨୬୪୦୧୪୩

ପରିବେଷକ : **ଗ୍ରନ୍ଥମନ୍ଦିର**, ବିନୋଦବିହାରୀ, କଟକ-୭୫୩ ୦୦୨

ଅକ୍ଷରସଜ୍ଜା ଓ ମୁଦ୍ରଣ : **ଅପ୍‌ଟିମା (ଅଫ୍‌ସେଟ୍) ପ୍ରିଣ୍ଟସ୍**
ସୂତାହାଟ, କଟକ-୭୫୩୦୦୧,
ଫୋନ୍-(୦୬୭୧)୨୬୨୫୧୪୮

ପ୍ରଥମ ସଂସ୍କରଣ : ୨୦୦୭

ମୂଲ୍ୟ : ଟ.୧୪୦/-

**Odisara Prathama Sahityapatra : Utkal Darpana**
(First Literary Journal of Orissa : Utkal Darpan)

Editor : **Dr. Arabinda Giri**
Suelpur, Balasore

Published by : **PRAGATI UTKAL SANGHA**
Fakirmohan Nagar, Sector-7
Rourkela-769003, Orissa
Phone - (0661)2640143

Dirtributor : **Grantha Mandir**, Binode Behari, Cuttack-753002

Typesetting & Printed at : **Optima (Offset) Prints**,
Sutahat, Cuttack-753001,
Phone - (0671)2625148

First Edition : 2007

Price : Rs.140/-

# କୃତଜ୍ଞତା ଜ୍ଞାପନ

ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ସାହିତ୍ୟ ପତ୍ରିକା 'ଉତ୍କଳ ଦର୍ପଣ' ଦୁଇବର୍ଷକାଳ (୧୮୭୩ରୁ ୧୯୭୪ ମସିହା) ମାସିକ ରୂପରେ ପ୍ରକାଶ ପାଇଥିଲା । ଏହି ପତ୍ରିକାଟି କାଳକ୍ରମେ ସମ୍ପୂର୍ଣ୍ଣ ଦୁର୍ଲଭ ହୋଇଯିବା ଫଳରେ ଓଡ଼ିଆ ଭାଷାସାହିତ୍ୟ ବିଷୟରେ ଗବେଷଣା ଓ ଅଧ୍ୟୟନରତ ଅଧ୍ୟାପକ ଓ ଛାତ୍ରଛାତ୍ରୀମାନଙ୍କ ପାଇଁ ଏହା ସମ୍ପୂର୍ଣ୍ଣ ଅଜ୍ଞାତ ଥିଲା । 'ରାଧାନାଥ ଜୀବନୀ' ପୁସ୍ତକର ଲେଖକ ସ୍ୱର୍ଗତ ଦୁର୍ଗାଚରଣ ରାୟ ଓ ବିଶିଷ୍ଟ ପ୍ରାବନ୍ଧିକ, ସମାଲୋଚକ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ମହାଶୟ ଏହି ପତ୍ରିକା ବିଷୟରେ ଯେଉଁ ବିବରଣୀ ପ୍ରଦାନ କରିଥିଲେ, ପରବର୍ତ୍ତୀ ଆଲୋଚକମାନେ କେବଳ ସେହିସବୁ ତଥ୍ୟକୁ ହିଁ ଗ୍ରହଣ କରିଥିଲେ; କିନ୍ତୁ ଉତ୍କଳ ଦର୍ପଣର ପ୍ରକୃତ ମାସିକରୂପ ଦେଖିବାର ସୁଯୋଗ ପାଇନଥିଲେ ।

ସୌଭାଗ୍ୟକ୍ରମେ 'ଉତ୍କଳ ଦର୍ପଣ' (୧୮୭୩) ପ୍ରଥମ ବର୍ଷର ଏଗାରଟି ସଂଖ୍ୟା କୀଟଦ୍ରଂଷ୍ଟ ଅବସ୍ଥାରେ ମୋହର ହସ୍ତଗତ ହୋଇଥିଲା । ଫଳରେ ମୁଁ ପତ୍ରପତ୍ରିକାରେ ଉତ୍କଳ ଦର୍ପଣରେ ପ୍ରକାଶିତ ରଚନା ବିଷୟରେ ଆଲୋଚନାମାନ ପ୍ରକାଶକରି ଗବେଷକ ଓ ଆଲୋଚକମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲି । ଉକ୍ତ ପତ୍ରିକାଟିକୁ ପୁନଃମୁଦ୍ରଣ କରିବାପାଇଁ ମନରେ ମଧ୍ୟ ଇଚ୍ଛାପ୍ରକାଶ କରିଥିଲି ।

ଓଡ଼ିଶାର ବହୁ ବରେଣ୍ୟ ସାହିତ୍ୟିକ ଓ ଅଧ୍ୟାପକ ଏହାର ପୁନଃମୁଦ୍ରଣ ପାଇଁ ଚିଠି ମାଧ୍ୟମରେ ଏବଂ ବ୍ୟକ୍ତିଗତ ଭାବରେ ବହୁବାର ଅନୁରୋଧ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆଭାଷା ସାହିତ୍ୟ ବିଭାଗର ପୂର୍ବତନ ପ୍ରଫେସର ତଥା ବିଶିଷ୍ଟ ସମାଲୋଚକ ମୋର ପୂଜ୍ୟ ଗୁରୁଦେବ ନିତ୍ୟାନନ୍ଦ ଶତପଥୀ,ପ୍ରଫେସର ବୈଷ୍ଣବଚରଣ ସାମଲ, ବିଶିଷ୍ଟ ସାହିତ୍ୟ ସମାଲୋଚକ ଅଧ୍ୟାପକ ପଠାଣି ପଟ୍ଟନାୟକ, ବିଶ୍ୱଭାରତୀ ଶାନ୍ତିନିକେତନର ଓଡ଼ିଆ ଭାଷାସାହିତ୍ୟ ବିଭାଗର ପ୍ରଫେସର ଶ୍ୟାମସୁନ୍ଦର ମହାପାତ୍ର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ଭାଷାସାହିତ୍ୟ ବିଭାଗର ପୂର୍ବତନ ପ୍ରଫେସର, ବିଶିଷ୍ଟ ଗବେଷକ ଓ ସମାଲୋଚକ ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର କୃଷ୍ଣଚରଣ ବେହେରା ତଥା ମୋର ଅଗ୍ରଜପ୍ରତିମ ବିଶିଷ୍ଟ ଗବେଷକ ଓ ସମାଲୋଚକ ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ପ୍ରମୁଖଙ୍କ ନାମ ଏହି ପ୍ରସଙ୍ଗରେ ବିଶେଷଭାବେ ସ୍ମରଣଯୋଗ୍ୟ । ପ୍ରଫେସର ଶ୍ୟାମସୁନ୍ଦର ମହାପାତ୍ର ୧୧।୧୨।୦୧ ତାରିଖ ଦିନ ଉକ୍ତ ଦୁର୍ଲଭ ପତ୍ରିକା ବିଷୟରେ ଆଲୋଚନାପାଇଁ ବିଶ୍ୱଭାରତୀ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ପାଠଚକ୍ରକୁ ମୋତେ ଆମନ୍ତ୍ରଣ

କରିଥିଲେ । ପ୍ରାୟ ୨୫ ପୃଷ୍ଠା ସମ୍ବଳିତ ଏକ ପ୍ରବନ୍ଧ ସେଠାରେ ମୁଁ ପାଠ କରଥିଲି, ଯାହା ଉକ୍ତ ପତ୍ରିକାର ମୁଖବନ୍ଧ ଭାବରେ ସନ୍ନିବିଷ୍ଟ ।

ଏହାପରେ ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ କାର୍ଯ୍ୟବଶତଃ ବାଲେଶ୍ୱର ଆସିବା ଅବସରରେ ଉକ୍ତ ପତ୍ରିକାଟିକୁ ଦେଖିବାର ସୁଯୋଗ ପାଇଥିଲେ ଏବଂ ରାଉରକେଲା 'ପ୍ରଗତି ଉତ୍କଳ ସଂଘ' ତରଫରୁ ଏହାର ପୁନଃମୁଦ୍ରଣ ପାଇଁ ପ୍ରସ୍ତାବ ଦେଇଥିଲେ । ସେତେବେଳକୁ ଓଡ଼ିଶାର ବିଶିଷ୍ଟ କବି ବ୍ରଜନାଥ ରଥ ଏବଂ ସଂଗ୍ରାହକଙ୍କ ମିଳିତ ଉଦ୍ୟମରେ ଏହାର ମୁଦ୍ରଣ ପାଇଁ ଡି.ଟି.ପି. କାର୍ଯ୍ୟ ପ୍ରାଥମିକ ଭାବରେ ଆରମ୍ଭ ହୋଇସାରିଥିଲା । ମାତ୍ର ରାଉରକେଲା 'ପ୍ରଗତି ଉତ୍କଳ ସଂଘ'ର ପ୍ରକାଶିତ ବିବିଧ ଦୁର୍ଲଭ ପୁସ୍ତକାବଳୀ ଦେବେନ୍ଦ୍ରବାବୁଙ୍କ ବଳିଷ୍ଠ ସମ୍ପାଦନାରେ ପ୍ରକାଶ ପାଇଥିବାର ଜ୍ୱଳନ୍ତ ଦୃଷ୍ଟାନ୍ତ ଆମର ସିଦ୍ଧାନ୍ତକୁ ବଦଳାଇ ଦେଇଥିଲା । ଫଳରେ ବ୍ରଜନାଥ ରଥଙ୍କ ସୁପରାମର୍ଶ କ୍ରମେ ଦେବେନ୍ଦ୍ର ବାବୁଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପ୍ରକାଶ ପାଇଁ ବିଶେଷ ଆଗ୍ରହ ପ୍ରକାଶ କରି 'ପ୍ରଗତି ଉତ୍କଳ ସଂଘ'ର ଲିଖିତ ପ୍ରତିଶ୍ରୁତି ମୁତାବକ 'ଉତ୍କଳ ଦର୍ପଣ' ପତ୍ରିକାର ପାଣ୍ଡୁଲିପି ପୁନଃମୁଦ୍ରଣ ପାଇଁ ଦେବେନ୍ଦ୍ରବାବୁଙ୍କୁ ହସ୍ତାନ୍ତର କରିଥିଲି । ଏଥିପାଇଁ 'ପ୍ରଗତି ଉତ୍କଳ ସଂଘ'ର ସମସ୍ତ କର୍ମକର୍ତ୍ତା ତଥା ମୋର ଅଗ୍ରଜ ବିଶିଷ୍ଟ ଗବେଷକ ଦେବେନ୍ଦ୍ରବାବୁଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛି । ଅତଏବ ପତ୍ରିକାଟି ଲୋକଲୋଚନକୁ ପୁନର୍ବାର ଆସିବା କ୍ଷେତ୍ରରେ ସମସ୍ତ ଗୌରବର ଅଧିକାରୀ ହିଁ ଦେବେନ୍ଦ୍ରବାବୁ । ଇତ୍ୟବସରରେ ପ୍ରୁଫ୍ ସଂଶୋଧନ, ପତ୍ରିକା ସନିବିଷ୍ଟ ସ୍ୱୀୟ ଆଲୋଚନା ଅଂଶର କେତେକ ପରିବର୍ତ୍ତନ ତଥା ସଜ୍ଜୀକରଣ ଜନିତ ସୁପାରମର୍ଶ ଓ ସହଯୋଗ ପାଇଁ ତାଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛି ।

ପୁସ୍ତକଟିର ମୁଦ୍ରଣ କରିଛନ୍ତି ଅପ୍ରତିମା ଅଫସେଟ୍ ପ୍ରିଣ୍ଟସ୍, କଟକର ତତ୍ତ୍ୱାବଧାରକ ଶ୍ରୀମାନ୍ ତପନ କୁମାର ମହାପାତ୍ର । ପୁସ୍ତକଟିର ମୁଦ୍ରଣ ପରିପାଟୀ ପାଇଁ ସେ ସମସ୍ତଙ୍କର ଧନ୍ୟବାଦର ପାତ୍ର । ପତ୍ରିକାଟିର ସମସ୍ତ ସଂଖ୍ୟାକୁ ଅବିକଳ ଓ ମୌଳିକଭାବରେ ମୁଦ୍ରଣ କରିବା କ୍ଷେତ୍ରରେ ଅଧିକ ଯତ୍ନବାନ ହୋଇଛି । ସେଥିରେ ଯଦି କେଉଁଠି ସାମାନ୍ୟ ତ୍ରୁଟି ରହିଯାଇଥାଏ, ତା'ହେଲେ ଉଦାର ଗୁଣରେ କ୍ଷମାଦେବେ ।

ବହୁ ବିଳମ୍ବରେ ହେଲେବି 'ଉତ୍କଳ ଦର୍ପଣ' (୧୮୭୩)ଭଳି ଦୁର୍ଲଭ ପତ୍ରିକାଟି ଲୋକଲୋଚନକୁ ଆସିଛି । ଉତ୍କଳର ଜ୍ଞାନୀ, ଗୁଣୀ ପାଠକ, ଅଧ୍ୟାପକ, ଗବେଷକ ଓ ଛାତ୍ରଛାତ୍ରୀମାନଙ୍କ କାର୍ଯ୍ୟରେ ଏହା ସାମାନ୍ୟତମ ସହାୟକ ହେଲେ, ଶ୍ରମ ସାର୍ଥକ ହେଲା ଭାବିବି ।

ବାଲେଶ୍ୱର
ତା ୩୦.୧୧.୦୬ରିଖ

ଅରବିନ୍ଦ ଗିରି

# ସୂଚୀପତ୍ର



—

## ପ୍ରକାଶକଙ୍କ ନିବେଦନ

ମଧୁବାବୁଙ୍କ ଚିନ୍ତାଧାରାରେ ଅନୁପ୍ରାଣିତ, ରାଉରକେଲାର ଅନ୍ୟତମ ପୁରାତନ ସାଂସ୍କୃତିକ ଅନୁଷ୍ଠାନ, 'ପ୍ରଗତି ଉତ୍କଳ ସଂଘ' ଗତ ପଇଁଚାଳିଶ ବର୍ଷ ଧରି ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ପ୍ରକାଶ ପ୍ରସାର ପାଇଁ ଅବାରିତ ଉଦ୍ୟମ କରିଆସିଛି । ମଧୁବାବୁଙ୍କ ବାସସ୍ଥାନ (ବର୍ତ୍ତମାନ ଶୈଳବାଳା ମହିଳା ମହାବିଦ୍ୟାଳୟ, କଟକ)କୁ ବାଦ୍‌ଦେଲେ, ଓଡ଼ିଶାରେ ପ୍ରଥମ, ତାଙ୍କର ପୂର୍ଣ୍ଣ ଅବୟବ ବ୍ରୋଞ୍ଜ ପ୍ରତିମୂର୍ତ୍ତି ରାଉରକେଲା ଷ୍ଟେସନ୍ ନିକଟରେ ୧୯୭୬ ମସିହାରେ ଏହି ଅନୁଷ୍ଠାନଦ୍ୱାରା ପ୍ରତିଷ୍ଠା କରାଯାଇଥିଲା । ଏପ୍ରିଲ୍ ପହିଲାକୁ, ଏକ ଜାତୀୟ ଉତ୍ସବ ରୂପେ, ସଂପୂର୍ଣ୍ଣ ବେସରକାରୀ ଉଦ୍ୟମରେ, ମହାସମାରୋହରେ, ପ୍ରଥମ କରି ୧୯୬୮ ମସିହାରେ ଓ ତାହାପରେ ପ୍ରତିବର୍ଷ ଏହି ଅନୁଷ୍ଠାନ ପାଳନ କରିବା ପରେ କ୍ରମଶଃ ଏହା ଉତ୍କଳ ଦିବସ ରୂପେ ଓଡ଼ିଶାର ପୁରପଲ୍ଲୀରେ ପାଳିତ ହେଉଛି । ଏତଦ୍‌ବ୍ୟତୀତ ଅନୁଷ୍ଠାନଟିର ବିଭିନ୍ନ ଆଭିମୁଖ୍ୟ ଓ କାର୍ଯ୍ୟକ୍ରମ ମଧ୍ୟରେ ଏକ ସ୍ୱତନ୍ତ୍ର ଉଦ୍ୟମ ଏହାର ପ୍ରକାଶନ ବିଭାଗ । ମଧୁବାବୁଙ୍କର ବକ୍ତୃତା, ତାଙ୍କ ସମ୍ପର୍କୀୟ ବିଭିନ୍ନ ଲେଖା, ତା'ଛଡ଼ା ଓଡ଼ିଆ ଭାଷାର ପୁରାତନ ସାହିତ୍ୟିକମାନଙ୍କର ଅପ୍ରକାଶିତ/ବିକ୍ଷିପ୍ତ ଲେଖା ଓ ଆଲୋଚନା ଏହି ବିଭାଗଦ୍ୱାରା ସଂକଳିତ ଓ ପ୍ରକାଶିତ ହୋଇଆସୁଅଛି । ଏହି ଅବସରରେ,ଅସୀମ ଶ୍ରଦ୍ଧା ଓ ଅଙ୍ଗୀକାରବଦ୍ଧତା ସହ ଏହି ପ୍ରକାଶନ ବିଭାଗର ସମସ୍ତ ଦାୟିତ୍ୱ ସ୍ୱେଚ୍ଛାକୃତଭାବେ ମୁଣ୍ଡେଇ ନେଇଥିବା ସାହିତ୍ୟିକ ବନ୍ଧୁଙ୍କର ଅବଦାନ ସମ୍ପର୍କରେ ସାମାନ୍ୟ ଉଲ୍ଲେଖ ନକଲେ ମନରେ ଗଭୀର କୃତଘ୍ନତାବୋଧର ଦୁଃଖ ରହିଯିବ । ଅନୁଷ୍ଠାନର ଗର୍ବ, ଏହି ବିଶିଷ୍ଟ ସଭ୍ୟ ହେଲେ ଅଧ୍ୟାପକ ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାଶ ।

ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ କେବଳ ଜଣେ ବିଶିଷ୍ଟ ଜମିଦାର ବା ବ୍ୟବସାୟୀ ନଥିଲେ, ଆଧୁନିକ ଓଡ଼ିଶା ଗଠନରେ ତାଙ୍କର ଥିଲା ସକାରାତ୍ମକ ଅବଦାନ । ବଂଗଳା ଲେଜିସଲେଟିଭ କାଉନସିଲର ସେ ଥିଲେ ପ୍ରଥମ ଓଡ଼ିଆ ସଭ୍ୟ । ବିଦ୍ୟାଳୟ ପ୍ରତିଷ୍ଠାଠାରୁ ଆରମ୍ଭ କରି ପ୍ରେସ୍ ସ୍ଥାପନ ପର୍ଯ୍ୟନ୍ତ ବିଭିନ୍ନ ଜନମଙ୍ଗଳ କାର୍ଯ୍ୟରେ ତାଙ୍କର ଥିଲା ପ୍ରମୁଖ ଭୂମିକା । ୧୯୦୬ ମସିହାରେ ବାଲେଶ୍ୱରରେ ହୋଇଥିବା ଉତ୍କଳ ସମ୍ମିଳନୀର ତୃତୀୟ ବାର୍ଷିକ ଅଧିବେଶନର ସେ ଥିଲେ ଅଭ୍ୟର୍ଥନା ସମିତି ସଭାପତି । ଉତ୍କଳ ସମ୍ମିଳନୀର ସପ୍ତମ ଅଧିବେଶନର ସଭାପତି ପଦ ମଧ୍ୟ ସେ ମଣ୍ଡନ କରିଥିଲେ । ରାଜା ବୈକୁଣ୍ଠନାଥ ଦେ'ଙ୍କର ଅନ୍ୟତମ

କୀର୍ତ୍ତି ହେଉଛି 'ଉତ୍କଳ-ଦର୍ପଣ' । ତାଙ୍କର ପୃଷ୍ଠପୋଷକତାରେ ପ୍ରକାଶିତ ହୋଇଥିଲା ଓଡ଼ିଶାର ଏହି ପ୍ରଥମ ମାସିକ ସାହିତ୍ୟପତ୍ର । ରାଧାନାଥ ଓ ମଧୁସୂଦନ 'ଉତ୍କଳ ଦର୍ପଣ' ପୃଷ୍ଠାରେ ହିଁ ବସ୍ତୁତଃ, ଆପଣାର ସାହିତ୍ୟକ ଜୀବନ ଆରମ୍ଭ କରିଥିଲେ । ଏହି ମାସିକ 'ଉତ୍କଳ ଦର୍ପଣ' କିନ୍ତୁ ଓଡ଼ିଶାର ବା ଓଡ଼ିଶା ବାହାରେ କୌଣସି ସ୍ଥାନରେ ଉପଲବ୍ଧ ହେଉନଥିବାରୁ ଡକ୍ଟର ନଟବର ସାମନ୍ତରାୟଙ୍କଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ କୌଣସି ଗବେଷକ ଏହା ଉପରେ ବିଶେଷ ଆଲୋଚନା କରିପାରିନାହାନ୍ତି । ଏହି ଲୁପ୍ତ ରତ୍ନକୁ ଆଜି ଲୋକଲୋଚନକୁ ଆଣୁଥିବାରୁ 'ପ୍ରଗତି ଉତ୍କଳ ସଂଘ' ଗର୍ବିତ । ଏହି ଜାତୀୟ କାର୍ଯ୍ୟ କରିଛନ୍ତି ବିଶିଷ୍ଟ ଗବେଷକ ଓ ବରିଷ୍ଠ ଓଡ଼ିଆ ଅଧ୍ୟାପକ ଡକ୍ଟର ଅରବିନ୍ଦ ଗିରି । ହଜିଯାଇଥିବା ରତ୍ନକୁ ସେ କେବଳ ଉଦ୍ଧାର କରିନାହାନ୍ତି, ତାହାକୁ ଯଥାର୍ଥ ଭାବରେ ଓଡ଼ିଶାର ବିଦ୍ୱତମଣ୍ଡଳୀ ସମ୍ମୁଖରେ ଉପସ୍ଥାପିତ ମଧ୍ୟ କରିଛନ୍ତି । ସେଥିପାଇଁ 'ପ୍ରଗତି ଉତ୍କଳ ସଂଘ' ତାଙ୍କୁ ଗଭୀର କୃତଜ୍ଞତା ଜ୍ଞାପନ କରୁଛି ।

'ପ୍ରଗତି ଉତ୍କଳ ସଂଘ'ର ଅନ୍ୟାନ୍ୟ ପ୍ରକାଶନ ଭଳି ଓଡ଼ିଶାର ସୁଧୀମଣ୍ଡଳୀ ଏହାକୁ ମଧ୍ୟ ସ୍ୱାଗତ କରିବେ ବୋଲି ଆଶା ।

ରାଉରକେଲା
୧୪.୧୨.୨୦୦୬

**ଶିବପ୍ରସାଦ ରାଓ**
ସଭାପତି, ପ୍ରଗତି ଉତ୍କଳ ସଂଘ



ମହାରାଜା ବୈକୁଣ୍ଠନାଥ ଦେ
'ଉତ୍କଳଦର୍ପଣ'ର ପୃଷ୍ଠପୋଷକ ଓ ପ୍ରକାଶକ

ଜନ୍ମ : ୧୮୫୨ ଖ୍ରୀଷ୍ଟାବ୍ଦ ମୃତ୍ୟୁ :୧୯୧୩ ଖ୍ରୀଷ୍ଟାବ୍ଦ

# ଉତ୍କଳଦର୍ପଣ ।

ମାସିକ ପତ୍ର ।

—୦—

ପ୍ରବନ୍ଧ ।

## କେଉଁ ବିଷୟମାନ ବିଳମ୍ବରେ ଶିକ୍ଷା ହୁଏ ।



ଳମ୍ବରେ କଉଣ ଶିକ୍ଷା ହୁଏ ତାହା ଟିକିଏ ଧ୍ୟାନରେ ବୁଝି ପାରବ । କେତେ ଗୁଡ଼ିଏ ଅଙ୍କ ଶିଖିବାକୁ ଅନେକ ଦିନ ଲାଗେ । କେତେ ଗୁଡ଼ିଏ ନ ଅଙ୍କ ଶିଖି ଯୁଗ ବହିଯାଏ । ସେହି ଭଳି ସେହି ନୀତିମାନ ସହଜରେ ବୁଝା ନ ଯାଏ ଏମନ୍ତ ନୁହେ । କଥାଗୁଡ଼ିକ ସରଳ—ଏପରି ହେତୁମୂଳକ ନୁହେ ଯେ, ସେହି ହେତୁର ଯାଥାର୍ଥ୍ୟ ତତ୍କାଳ ଜଣା ନ ପଡ଼ିବ । କଥାଗୁଡ଼ିକ ସତ୍ୟ ଗୁଣିଲାକ୍ଷଣି ପ୍ରତ୍ୟୟମାନ ହେବ । ତେବେ ଶିଖିବାକୁ ଏତେ ଦିନ କାହିଁକି ଲାଗେ ? କାରଣ ଏହି--ସେମାନଙ୍କ ସମ୍ବନ୍ଧେ ହୃଦୟ ଆଉ ମସ୍ତିଷ୍କର ମତଭେଦ ହୁଏ । ଅମୁକ ପରି ଚଳିବାର ଉଚିତ, କଉଣ କରିବାର ବହୁତ ତାହା ସହଜେ ଜଣା ପଡ଼େ; ମାତ୍ର ଆନ ପ୍ରକାର ଚଳିବାକୁ ଆନ ପ୍ରକାର କରିବାକୁ ସବୁ ବେଳେ ପ୍ରବୃତ୍ତି ହେଉ ଥାଏ ।

ଅନେକ ବିଷୟ ଅଙ୍କ ଶିଖିବାକୁ ଅନେକ ଦିନ ଲାଗେ, ଫଳା ଶିଖିବାକୁ ଅନେକ ଦିନ ଲାଗେ । ପଣିକିଆ ଶିଖିବାକୁ ଅନେକ ଦିନ ଲାଗେ । ମାତ୍ର ଅମ୍ଭେମାନେ ଏପରି ବିଷୟମାନଙ୍କୁ ଲକ୍ଷ କରୁ ନାହିଁ । କେତେ ଗୁଡ଼ିଏ ମନୁଷ୍ୟ ଅତ୍ୟନ୍ତ ପ୍ରକୃତ ସେମାନଙ୍କ କଡ଼ କଡ଼ ନାହାନ୍ତି ଏବା ବୌଦ୍ଧ ବୁଝି ପାରନ୍ତି ନାହିଁ । ସେମାନେ କେତେ ଦ୍ରୌପଦୀ ରଚନ୍ତି, ରସିକତାର ପଞ୍ଚକର୍ମ ଦେବା

'ଉତ୍କଳଦର୍ପଣ' ପତ୍ରିକାର ଗୋଟିଏ ପୃଷ୍ଠା

# ଓଡ଼ିଶାର ପ୍ରଥମ ସାହିତ୍ୟପତ୍ର
# ଉତ୍କଳଦର୍ପଣ

## ଉତ୍କଳ-ଦର୍ପଣ ଓ ଦେ' ପ୍ରେସ୍

ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରକୃତ ଭିତ୍ତିଭୂମି ସୃଷ୍ଟି ହୋଇଥିଲା ଊନବିଂଶ ଶତାବ୍ଦୀର ଶେଷ ଚାରି ଦଶନ୍ଧିରେ । କରାଳ ନଅଙ୍କ ଦୁର୍ଭିକ୍ଷ (୧୮୬୬) ତଥା ଭାଷାସୁରକ୍ଷା ଆନ୍ଦୋଳନ ଓଡ଼ିଶାର ଆଧୁନିକ ରୁଚିସଂପନ୍ନ ଓ ପାଶ୍ଚାତ୍ୟଶିକ୍ଷାପ୍ରାପ୍ତ ଯୁବମାନସ ମଧ୍ୟରେ ଏକ ସଚେତନତା ଓ ଜାତୀୟ ଜାଗରଣ ସୃଷ୍ଟି କରିଥିଲା । ଏହି ଜିଜ୍ଞାସୁ ଯୁବମାନସ ସ୍ୱୀୟ ମାତୃଭାଷା, ସାହିତ୍ୟ ଓ ସଂସ୍କୃତିର ପ୍ରକୃତ ଅବସ୍ଥା ଉପଲବ୍ଧି କରି ଏହାର ଉନ୍ନତି ଓ ବିକାଶ ପାଇଁ ସଂକଳ୍ପବଦ୍ଧ ହୋଇଥିଲା । ପ୍ରେସ୍-ପ୍ରତିଷ୍ଠା, ପାଠ୍ୟପୁସ୍ତକ-ରଚନା, ଭାଷାସୂତ୍ରରେ ଓଡ଼ିଶା ପ୍ରଦେଶର ଏକତ୍ରୀକରଣ ଓ ବିବିଧ ପତ୍ରପତ୍ରିକାର ପ୍ରକାଶନ ସହିତ ଜନମତକୁ ସଂଗଠିତ କରି ଓଡ଼ିଆ ଭାଷା ତଥା ସାହିତ୍ୟର ଉନ୍ନତିକରିବା ଏହି ନୂତନ ଯୁବଗୋଷ୍ଠୀ ପରମ କର୍ତ୍ତବ୍ୟ ମନେ କରିଥିଲେ । କଟକରୁ ପ୍ରକାଶିତ ଉତ୍କଳହିତୈଷୀ ଗୌରୀଶଙ୍କର ରାୟଙ୍କ ସଂପାଦିତ 'ଉତ୍କଳ ଦୀପିକା' (୧୮୬୬) ଏବଂ ବାଲେଶ୍ୱରରୁ ପ୍ରକାଶିତ ଫକୀରମୋହନ ସେନାପତିଙ୍କ ସଂପାଦିତ 'ବୋଧଦାୟିନୀ ଏବଂ ବାଲେଶ୍ୱର ସମ୍ବାଦବାହିକା' (୧୮୬୮) ସମ୍ବାଦପତ୍ର ଦୁଇଟି ତତ୍କାଳୀନ ସମଗ୍ର ଓଡ଼ିଶାରେ ଜନମତକୁ ସୁନିୟନ୍ତ୍ରିତ କରୁଥିଲା । ଏପରିକି ପାଶ୍ଚାତ୍ୟ ମନୀଷୀ ରେଭେନ୍ସା ସାହେବ, ବୀମସ୍ ସାହେବ ତଥା ଅନ୍ୟମାନଙ୍କର ମଧ୍ୟ ଏହି ପତ୍ରିକାଗୁଡ଼ିକ ପ୍ରତି ଥିଲା ଗଭୀର ଆସ୍ଥା । ଏ ସମ୍ପର୍କରେ ଡକ୍ଟର ସାମନ୍ତରାୟ କହନ୍ତି :

> ଆଧୁନିକ ସାହିତ୍ୟର ପ୍ରଥମ ବିକାଶ ଭୂମି ବଂଗପ୍ରଦେଶର ନିକଟରେ ବାଲେଶ୍ୱର ଥିବାରୁ ଏଇ ଜିଲାରେ ପ୍ରଥମେ ଏ ସାହିତ୍ୟ ଆତ୍ମପ୍ରକାଶ କରିବାକୁ ସୁବିଧା ପାଇଥିଲା । ସୌଭାଗ୍ୟବଶତଃ ସେ ସମୟରେ ରାଧାନାଥ, ମଧୁସୂଦନ ମଧ୍ୟ ଏଇ ଜିଲାକୁ ନିଜର କର୍ମକ୍ଷେତ୍ର ରୂପେ ଗ୍ରହଣ କରିନେଇଥିଲେ ।[୧]

'ଉତ୍କଳଦୀପିକା' ଓ 'ବାଲେଶ୍ୱର ସମ୍ବାଦବାହିକା' ପ୍ରକାଶିତ ହେବାର ପାଞ୍ଚବର୍ଷ ପରେ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ'ଙ୍କ ଶୁଭେଚ୍ଛା ତଥା ରାଧାନାଥ ଓ

---

(୧) ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ (୧୯୫୯) – ନଟବର ସାମନ୍ତରାୟ, ପୃ.୧୯ ।

ମଧୁସୂଦନଙ୍କ ପରି ଲୋକମାନଙ୍କ ଲେଖନୀ ସ୍ପର୍ଶରେ ଓଡ଼ିଶାର ପ୍ରଥମ ସାହିତ୍ୟପତ୍ରିକା 'ଉତ୍କଳ ଦର୍ପଣ' (୧୮୭୩) ଆତ୍ମପ୍ରକାଶ କରିଥିଲା । ଏହି ସମୟରେ 'ଉତ୍କଳ ହିତୈଷୀ (୧୮୬୮), 'ଉତ୍କଳ ପୁତ୍ର' (୧୮୭୩), 'ବିଦେଶୀ' (୧୮୭୩) ଆଦି ସାପ୍ତାହିକ ଓ ପାକ୍ଷିକ ପତ୍ରିକାଗୁଡ଼ିକ ମଧ୍ୟ ଏ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

ଏହା ପୂର୍ବରୁ ଖ୍ରୀଷ୍ଟିଆନ୍ ମିଶନାରୀମାନଙ୍କ ଉଦ୍ୟମରେ ଜ୍ଞାନାରୁଣ (୧୮୪୯), ପ୍ରବୋଧ ଚନ୍ଦ୍ରିକା (୧୮୫୬), ଅରୁଣୋଦୟ (୧୮୬୧) ଆଦି ପତ୍ରିକା ପ୍ରକାଶ ପାଇଥିଲା; ମାତ୍ର ଶିକ୍ଷାର ପ୍ରସାର ହୋଇ ନଥିବାରୁ ତଥା ପାଠକମାନଙ୍କର ଆଗ୍ରହ ଅଭାବରୁ ଏହି ପତ୍ରିକାଗୁଡ଼ିକ ଦୀର୍ଘାୟୁ ହୋଇ ପାରିନଥିଲା । ତେଣୁ ମିଶନାରୀମାନଙ୍କ ଦ୍ୱାରା ପ୍ରକାଶିତ ପତ୍ରିକାଗୁଡ଼ିକର ଭୂମିକାକୁ ନ୍ୟୂନ କରାନଯାଇ କୁହାଯାଇପାରେ ଯେ 'ଉତ୍କଳଦୀପିକା', 'ବାଲେଶ୍ୱର ସମ୍ବାଦବାହିକା' ଓ 'ଉତ୍କଳଦର୍ପଣ' ଆଦି ପତ୍ରପତ୍ରିକା ଓଡ଼ିଆ ସାହିତ୍ୟରେ ନବଯୁଗର ସୂତ୍ରପାତ କରିଥିଲା ।

ଏହା ପରେ ପରେ ଉତ୍କଳ ମଧୁପ (୧୮୭୮), ପ୍ରଜାବନ୍ଧୁ (୧୮୮୨), ସଂସ୍କାରକ (୧୮୮୪), ଶିକ୍ଷାବନ୍ଧୁ (୧୮୮୫), ନବସମ୍ବାଦ (୧୮୮୭), ଓଡ଼ିଆ ଓ ନବସମ୍ବାଦ (୧୮୮୮), ଆଶା (୧୮୮୮), ସମ୍ବଲପୁର ହିତୈଷିଣୀ (୧୮୮୯), ଉତ୍କଳ ପ୍ରଭା (୧୮୯୧), ଇନ୍ଦ୍ରଧନୁ (୧୮୯୩), ବିଜୁଳି (୧୮୯୩), ଉତ୍କଳବନ୍ଧୁ (୧୮୯୬) ଓ ଉତ୍କଳ ସାହିତ୍ୟ (୧୮୯୭) ଆଦି ମାସିକ, ପାକ୍ଷିକ ତଥା ସାମୟିକ ପତ୍ରିକା ଓଡ଼ିଶାର କଟକ, ବାଲେଶ୍ୱର, ମୟୂରଭଞ୍ଜ ଓ ଦେବଗଡ଼ ପ୍ରଭୃତି ସ୍ଥାନରୁ ପ୍ରକାଶ ପାଇଥିଲା । ଆଧୁନିକ ଶିକ୍ଷିତ ଯୁବପିଢ଼ି ଉପନ୍ୟାସ, ଗଳ୍ପ, କାବ୍ୟ, ଅନୁବାଦ, କବିତା, ଗୀତିକବିତା, ପ୍ରବନ୍ଧ, ଆଲୋଚନା, ସମାଲୋଚନା, ଭ୍ରମଣ କାହାଣୀ ଆଦି ବିବିଧ ବିଭାଗରେ ନିଜର ସୁଚିନ୍ତିତ ରୁଚିପୂର୍ଣ୍ଣ ତଥା ବୌଦ୍ଧିକ ରଚନାମାନ ଉପରୋକ୍ତ ପତ୍ରିକା ପୃଷ୍ଠାରେ ପ୍ରକାଶ କରି ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମିକୁ ସୁଦୃଢ଼ କରିଥିଲେ । ଆଧୁନିକ ଓଡ଼ିଆ ସାହିତ୍ୟ ପ୍ରାଚ୍ୟ ଓ ପାଶ୍ଚାତ୍ୟର ଚିନ୍ତାସଂଘର୍ଷର ଫଳ : ଅଧିକାଂଶ ସମାଲୋଚକ ତଥା ଐତିହାସିକଙ୍କର ଏହା ସିଦ୍ଧାନ୍ତ । ସମ୍ବାଦପତ୍ର ଓ ସାହିତ୍ୟପତ୍ରିକା ଗୋଟିଏ ଦିଗରୁ ପାଶ୍ଚାତ୍ୟ/ଇଂରାଜୀ ଶିକ୍ଷାର ପରିଣତି । ଆଧୁନିକ ସାହିତ୍ୟ ପତ୍ରପତ୍ରିକା-ଗର୍ଭସଂଜାତ । ଉନବିଂଶ ଶତକର ପତ୍ରପତ୍ରିକା ଉପରେ ଆଲୋଚନା କରି ସ୍ୱର୍ଗତ ପ୍ରିୟରଞ୍ଜନ ସେନ ଦେଇଥିବା ମନ୍ତବ୍ୟ ଏହି ପ୍ରସଙ୍ଗରେ ଉଦ୍ଧାର କରାଯାଇପାରେ :

> These have reflected the condition of modern Oriya literature and have also largely helped in its creation. The Oriya periodical was a new form influenced by the west and at the

same time, it was a medium for new writing which brought into play the creative faculties of the people.[୨]

ଓଡ଼ିଆ ସାହିତ୍ୟ ଭଳି ଓଡ଼ିଆ ପତ୍ରପତ୍ରିକା ମଧ୍ୟ ସିଧାସଳଖ ପାଶ୍ଚାତ୍ତ୍ୟ ସଂପର୍କରେ ଆସି ନଥିଲା । ସମକାଳୀନ ବଙ୍ଗଳା ପତ୍ରପତ୍ରିକା ଓଡ଼ିଆ ପତ୍ରପତ୍ରିକାଗୁଡ଼ିକୁ ଅନେକାଂଶରେ ପ୍ରଭାବିତ/ଅନୁପ୍ରେରିତ କରିଥିଲା । ସମକାଳୀନ ବଙ୍ଗଳା ପତ୍ରପତ୍ରିକାର ଏକ ସ୍ଥୂଳ ପରିଚୟ ଦେଇ ଡକ୍ଟର ଶ୍ରୀନିବାସ ମିଶ୍ର କହନ୍ତି :

...'ସମ୍ବାଦ ପ୍ରଭାକର' (୧୮୩୧), 'ତତ୍ତ୍ୱବୋଧିନୀ' (୧୮୪୩), 'ବିବିଧାର୍ଥ ସଂଗ୍ରହ' (୧୮୫୧), 'ମାସିକ ପତ୍ରିକା' (୧୮୫୪), ଏଡୁକେଶନ ଗେଜେଟ (୧୮୫୬), ସୋମପ୍ରକାଶ (୧୮୫୮), ବଙ୍ଗଦର୍ଶନ (୧୮୭୨), ଭାରତୀ (୧୮୭୭) ଓ ସାଧନା (୧୮୯୧) ପ୍ରଭୃତି ପତ୍ରିକା ଊନବିଂଶ ଶତାବ୍ଦୀରେ ଅତ୍ୟନ୍ତ ପ୍ରସିଦ୍ଧ । ଈଶ୍ୱରଚନ୍ଦ୍ର ଗୁପ୍ତ, ଅକ୍ଷୟକୁମାର ଦତ୍ତ, ରାଜେନ୍ଦ୍ରଲାଲ ମିତ୍ର, ପ୍ୟାରୀଚାନ୍ଦ ମିତ୍ର, ଭୂଦେବ ମୁଖୋପାଧ୍ୟାୟ, ବଙ୍କିମଚନ୍ଦ୍ର ଓ ରବୀନ୍ଦ୍ରନାଥ ଯଥାକ୍ରମେ ଏହି ପତ୍ରିକାଗୁଡ଼ିକର ସମ୍ପାଦକ ଥିଲେ । ଏମାନେ ବଙ୍ଗସାହିତ୍ୟର ଚିରସ୍ମରଣୀୟ କୃତବିଦ୍ୟ ସାହିତ୍ୟସାଧକ । ରାମମୋହନ ରାୟ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ଦେବେନ୍ଦ୍ରନାଥ ଠାକୁର, ରାଜନାରାୟଣ ବସୁଙ୍କ ତୁଲ୍ୟ ସୁଲେଖକ ମଧ୍ୟ ପତ୍ରିକା ସାହିତ୍ୟ ମାଧ୍ୟମରେ ନିଜ ନିଜ ରଚନା ପ୍ରକାଶପୂର୍ବକ ବଙ୍ଗଳା ଗଦ୍ୟକୁ ଅସାମାନ୍ୟ ଶକ୍ତିମଣ୍ଡିତ କରିଥିଲେ ।[୩]

ଅନୁରୂପ ଭାବରେ ଫକୀରମୋହନ, ରାଧାନାଥ, ମଧୁସୂଦନ ରାଓଙ୍କ ଭଳି ଦୂରଦ୍ରଷ୍ଟା ସାହିତ୍ୟିକମାନେ ଓଡ଼ିଆ ପତ୍ରିକାଗୁଡ଼ିକ ସହ ସମ୍ପୃକ୍ତ ଥିଲେ । ବଙ୍ଗଳା ପତ୍ରିକା ପରି ଓଡ଼ିଆ ଭାଷାରେ ସୁନ୍ଦର ପତ୍ରିକାଟିଏ ପ୍ରକାଶ କରିବାର ସଂକଳ୍ପ ନେଇ ଆଧୁନିକ ଓଡ଼ିଆ ସାହିତ୍ୟର ସର୍ବାଙ୍ଗୀନ ବିକାଶ କଥା ସେମାନେ ଚିନ୍ତା କରୁଥିଲେ । ସେମାନଙ୍କର ସ୍ୱପ୍ନ ମଧ୍ୟ ଦିନେ ସାକାର ହୋଇଥିଲା । ଫଳରେ ଓଡ଼ିଆ ସାହିତ୍ୟରେ ରାମଶଙ୍କର, ବିଶ୍ୱନାଥ କର, କୃଷ୍ଣପ୍ରସାଦ ଚୌଧୁରୀ, ଚନ୍ଦ୍ରଶେଖର ନନ୍ଦ, ନନ୍ଦକିଶୋର ବଳ, ଗୋପାଳଚନ୍ଦ୍ର ପ୍ରହରାଜ, ଶ୍ୟାମସୁନ୍ଦର ରାଜଗୁରୁ, ଗୋପୀନାଥ ନନ୍ଦ, ମୃତ୍ୟୁଞ୍ଜୟ ରଥ, ତାରିଣୀ ଚରଣ ରଥ, ନୀଳମଣି ବିଦ୍ୟାରତ୍ନ, ଜଗବନ୍ଧୁ ସିଂହ, ଶଶିଭୂଷଣ ରାୟ, ମୋହିନୀମୋହନ ସେନାପତି, ଜଳନ୍ଧର ଦେବ, ଚିନ୍ତାମଣି ଆଚାର୍ଯ୍ୟ ତଥା ସତ୍ୟବାଦୀ ଓ ସବୁଜ ଯୁଗର ପଞ୍ଚସଖାମାନଙ୍କ ଭଳି ବିଶିଷ୍ଟ ସାରସ୍ୱତ ସ୍ରଷ୍ଟାମାନେ ଆବିର୍ଭୂତ ହୋଇଥିଲେ ।

---

(୨) Modern Oriya Literature (Calcutta, 1947) – Priya Ranjan Sen, Pp.59-60.

(୩) ଆଧୁନିକ ଓଡ଼ିଆ ଗଦ୍ୟସାହିତ୍ୟ (୧୯୭୮) – ଡକ୍ଟର ଶ୍ରୀନିବାସ ମିଶ୍ର, ପୃ.୧୦୩ ।

ଆଧୁନିକ ଓଡ଼ିଆ ସାହିତ୍ୟ ଓ ଓଡ଼ିଆ ପତ୍ରପତ୍ରିକାର ପ୍ରାରମ୍ଭିକ ପର୍ଯ୍ୟାୟରେ 'ଉତ୍କଳ ଦର୍ପଣ' ମାସିକ ସାହିତ୍ୟ ପତ୍ରିକାର ଆତ୍ମପ୍ରକାଶ – ୧୮୭୩ ମସିହା ଜାନୁଆରୀରେ । ଏହା ପୂର୍ବରୁ ପ୍ରକାଶିତ 'ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦବାହିକା'ର 'ବୋଧଦାୟିନୀ' ଅଂଶଟି ସାହିତ୍ୟଧର୍ମୀ ରଚନା ପାଇଁ ଉଦ୍ଦିଷ୍ଟ ଥିବା ଫକୀରମୋହନଙ୍କ ଆତ୍ମଚରିତରୁ ଜଣାଯାଏ । କିନ୍ତୁ ସମ୍ପୃକ୍ତ ପତ୍ରିକାରେ ପ୍ରକାଶିତ ରଚନାଗୁଡ଼ିକର ଯେଉଁ ପରିଚୟ 'ଉତ୍କଳ ଦୀପିକା'ରୁ ମିଳିଥାଏ, ସେହି ପରିଚୟ ଆଧାରରେ 'ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦବାହିକା'କୁ ଏକ ସାହିତ୍ୟ ପତ୍ରିକା ବୋଲି କହିହେବ ନାହିଁ । ସେଥିପାଇଁ 'ଉତ୍କଳ ଦର୍ପଣ'କୁ ଓଡ଼ିଆ ସାହିତ୍ୟର ପ୍ରଥମ ସାହିତ୍ୟ ପତ୍ରିକାର ଗୌରବ ଦିଆଯାଇପାରେ । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ମତରେ, ''ସାହିତ୍ୟିକ ଗାରିମାରେ ଉକ୍ତ ପତ୍ରିକା ତେତେବେଳେ ପ୍ରଥମ ସ୍ଥାନ ଅଧିକାର କରିଥିଲା । ...ଏହା କହିଲେ ସମ୍ଭବତଃ ଅତ୍ୟୁକ୍ତି ହେବନାହିଁ ଯେ, 'ଉତ୍କଳ ଦର୍ପଣ' ହିଁ ଆଧୁନିକ ଉତ୍କଳ ସାହିତ୍ୟର ଆଦ୍ୟ ଲେଖକ ମଣ୍ଡଳୀ ପ୍ରସ୍ତୁତ କରିଅଛି ।[୪] ମୃତ୍ୟୁଞ୍ଜୟଙ୍କ ମତର ପ୍ରତିଧ୍ୱନି କରି ପ୍ରିୟରଞ୍ଜନ ସେନ ଲେଖିଛନ୍ତି : "The Utkala Darpana, a monthly from Balasore, started in 1873 and scoring an easy first from the literary point view, numbered Radhanath, Madhusudan and others among its contributors."[୫]

ଓଡ଼ିଆ ପତ୍ରପତ୍ରିକାର ଇତିହାସ ଆଲୋଚନା କଲାବେଳେ ସମସ୍ତ ଆଲୋଚକ/ଗବେଷକ ମାସିକ 'ଉତ୍କଳ ଦର୍ପଣ'ର ଭୂମିକାକୁ ଗୁରୁତ୍ୱର ସହ ଆଲୋଚନା କରିଥାନ୍ତି । ଡକ୍ଟର ନଟବର ସାମନ୍ତରାୟ 'ଉତ୍କଳ ଦର୍ପଣ'ର ପରିଚୟ ଦେଇ ଓ ତାହାର ଐତିହାସିକ ପୃଷ୍ଠଭୂମି ଅବତାରଣା କରିସାରିଲା ପରେ ସିଦ୍ଧାନ୍ତ କରିଛନ୍ତି :

> ନୂତନ ଯୁଗରୁଚିରେ ଉଦ୍‌ବୁଦ୍ଧ ଏକ ଶିକ୍ଷିତ ସଂପ୍ରଦାୟ ଯେତେବେଳେ ପାଠ୍ୟପୁସ୍ତକ ସହିତ ସୃଷ୍ଟିମୁଖୀ ଯଥାର୍ଥ ସାହିତ୍ୟର ରଚନା ଦିଗରେ ଏକାନ୍ତ ଅଭିଳାଷୀ ହୋଇ ଉଠୁଥିଲା, ସେତେବେଳେ ତା' ଭାବନାର ଅଭିବ୍ୟକ୍ତି ପାଇଁ ଆବଶ୍ୟକ ପଡୁଥିଲା ପ୍ରକୃଷ୍ଟ ମାଧ୍ୟମ । ଉତ୍କଳର ପ୍ରଥମ ସାହିତ୍ୟ ମାସିକ 'ଉତ୍କଳ ଦର୍ପଣ' ଥିଲା ଏଇ ଆବଶ୍ୟକତା ପରିପୂରଣର ମୂର୍ତ୍ତ ପରିପ୍ରକାଶ ମାତ୍ର । ଏ ପତ୍ରିକାର ଏପରି ଜନ୍ମ ପରିବେଶ ଓ ଆବିର୍ଭାବ-ଇତିହାସ ଓଡ଼ିଶାର ଅତି କମ୍ ସାହିତ୍ୟପତ୍ରିକା ଭାଗ୍ୟରେ ଘଟିଥିବାର ଦେଖିବାକୁ ମିଳେ ।[୬]

---

(୪) ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ (ପ୍ରଥମ ସଂସ୍କରଣ, ୧୯୭୧), ପୃ.୪୦୯ ।

(୫) Modern Oriya Literature, ପୃ.୪୨ ।

(୬) ଆଧୁନିକ ଓଡ଼ିଆ ସାହିତ୍ୟ ବିକାଶର ପୃଷ୍ଠଭୂମି (୧୯୭୯) – ନଟବର ସାମନ୍ତରାୟ, ପୃ.୧୦୯ ।

ଅଧ୍ୟାପକ ପ୍ରିୟରଞ୍ଜନ ସେନ, ଡକ୍ଟର ନଟବର ସାମନ୍ତରାୟ ଓ ପରବର୍ତ୍ତୀ କାଳରେ ଡକ୍ଟର ଶ୍ରୀନିବାସ ମିଶ୍ର ପ୍ରମୁଖ 'ଉତ୍କଳ ଦର୍ପଣ' ସମ୍ପର୍କରେ ଉଚ୍ଛ୍ୱସିତ ପ୍ରଶଂସାମୂଳକ ଆଲୋଚନା କରିଥିଲାବେଳେ, 'ଉତ୍କଳ ଦର୍ପଣ'ରେ ପ୍ରକାଶିତ ରଚନାବଳୀ ସମ୍ପର୍କରେ ବିଶେଷ ଆଲୋଚନା କରିପାରିନାହାନ୍ତି । ଅଧ୍ୟାପକ ସେନ୍ ମୃତ୍ୟୁଞ୍ଜୟଙ୍କ ମର୍ତାମତକୁ ଇଂରାଜୀ ଭାଷାରେ ଉପସ୍ଥାପନ କଲାବେଳେ, ଡକ୍ଟର ସାମନ୍ତରାୟ ସମକାଳୀନ ଅନ୍ୟାନ୍ୟ ପତ୍ରପତ୍ରିକାରେ ପ୍ରକାଶିତ ତଥ୍ୟ, ମୃତ୍ୟୁଞ୍ଜୟଙ୍କ ସୂଚନା ଓ 'ରାଧାନାଥ ଜୀବନୀ'ରେ ଥିବା ବିବରଣୀ ଭିତ୍ତିରେ ତାଙ୍କର ଆଲୋଚନାକୁ ପ୍ରସ୍ତୁତ କରିଛନ୍ତି । ଡକ୍ଟର ମିଶ୍ରଙ୍କ ଆଲୋଚନା ମଧ୍ୟ ପରୋକ୍ଷ ଉପାଦାନ-ନିର୍ଭର । ଏହାର କାରଣ ହେଲା ଅଧ୍ୟାପକ ସେନ୍, ଡକ୍ଟର ସାମନ୍ତରାୟ ଓ ଡକ୍ଟର ମିଶ୍ର ମାସିକ 'ଉତ୍କଳ ଦର୍ପଣ'ର କୌଣସି ସଂଖ୍ୟା ଦେଖିବାର ସୁଯୋଗ ପାଇନାହାନ୍ତି । ଡକ୍ଟର ସାମନ୍ତରାୟ ସ୍ପଷ୍ଟଭାବରେ ଲେଖିଛନ୍ତି :

> 'ଉତ୍କଳ ଦର୍ପଣ'ର ମାସିକ ରୂପ ସଂପୂର୍ଣ୍ଣ ସ୍ୱପ୍ନ – ଆଜି ପର୍ଯ୍ୟନ୍ତ କୌଣସି ସମାଲୋଚକ ମୂଳ ପତ୍ରିକା ଅବଲମ୍ବନରେ ଏହା ଉପରେ ଆଲୋଚନା କରିଥିବାର ବିଶ୍ୱାସ ହେଉ ନାହିଁ । ଫଳତଃ, ମୂଳ ପତ୍ରିକାରେ ଥିବା ସମସ୍ତ ଲେଖାର ସ୍ୱରୂପ ପରିପୂର୍ଣ୍ଣଭାବେ ଅବଧାରଣା କରିବା ସମ୍ଭବପର ନୁହେଁ । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ରଚନା ଓ ସମସାମୟିକ ପତ୍ରିକାର ପ୍ରକାଶିତ କେତୋଟି ଲେଖା ଏ ସମ୍ପର୍କରେ ଆମକୁ ଯେତିକି ଉପାଦାନ ଯୋଗାଇଛନ୍ତି ତାହାହିଁ ଆମର ଏକମାତ୍ର ଅବଲମ୍ବନ ।(୭)

ମୃତ୍ୟୁଞ୍ଜୟ ରଥ ପୂର୍ବୋକ୍ତ 'ଉତ୍କଳ-ପତ୍ରିକା' ପ୍ରବନ୍ଧରେ 'ଉତ୍କଳ-ଦର୍ପଣ'ରେ ପ୍ରକାଶିତ ଲେଖାଗୁଡ଼ିକ ସମ୍ପର୍କରେ ସୂଚନା ଦେଇ ଲେଖିଥିଲେ :

> ଆଧୁନିକ ସାହିତ୍ୟର ଯୁଗପ୍ରବର୍ତ୍ତକ କବିବର ରାଧାନାଥଙ୍କର ପ୍ରାଥମିକ ଲେଖାବଳୀ ଏହି ଉତ୍କଳ-ଦର୍ପଣରେ ପ୍ରତିଫଳିତ ହୋଇଥିଲା । ଯୁବକ ପାଠକମାନଙ୍କର କୌତୂହଳ ନିବାରଣ ପାଇଁ ଏଠାରେ ଉଲ୍ଲେଖ କରାଯାଇପାରେ ଯେ, କବିବର ରାଧାନାଥଙ୍କ ମେଘଦୂତ, ପବନ, ଇଟାଲୀୟ ଯୁବା, ବିବେକୀ, କାଳିଦାସ ପ୍ରଭୃତି ଏବଂ ଭକ୍ତକବି ମଧୁସୂଦନଙ୍କର ଶ୍ମଶାନ, ନିଶୀଥଚିନ୍ତା, ନିର୍ବାସିତର ବିଳାପ, ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ, ବୁଦ୍ଧ, ସୂର୍ଯ୍ୟ, ଉଲ୍‌କାପିଣ୍ଡ, ଶାସନ ପ୍ରଣାଳୀ, ଚନ୍ଦ୍ର ଓ ତାରା, ପିତୃଭକ୍ତି, ପ୍ରଣୟର ଅଦ୍ଭୁତ ପରିଣାମ ପ୍ରଭୃତି କାବ୍ୟ ଓ ପ୍ରବନ୍ଧମାନ ସେଥିରେ ପ୍ରକାଶିତ ହୋଇଥିଲା ।(୮)

---

(୭) ଏକ୍ସ, ପୃ.୧୦୨ ।

(୮) ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ, ପୃ.୪୦୯ ।

ପଣ୍ଡିତ ମୃତ୍ୟୁଞ୍ଜୟ ରଥ 'ଉତ୍କଳ ପତ୍ରିକା' (ଊନବିଂଶ ଶତାବ୍ଦୀ) ପ୍ରବନ୍ଧ/ପୁସ୍ତିକାରେ 'ଉତ୍କଳ ଦର୍ପଣ'ର ଯେଉଁ ପରିଚୟ ଦେଇଛନ୍ତି, ତାହା ଯେପରି ସଂକ୍ଷିପ୍ତ ସେହିପରି ସ୍ଥୂଳ । ପଣ୍ଡିତ ମୃତ୍ୟୁଞ୍ଜୟ 'ଉତ୍କଳ ଦର୍ପଣ'ରେ ପ୍ରକାଶିତ ରାଧାନାଥଙ୍କ ଓ ମଧୁସୂଦନଙ୍କର କେତୋଟି ରଚନାର ନାମୋଲ୍ଲେଖ କରିଛନ୍ତି । ରାଧାନାଥଙ୍କ 'କାଳିଦାସ' ଓ ମଧୁସୂଦନଙ୍କ 'ପିତୃଭକ୍ତି' ବ୍ୟତୀତ ଅନ୍ୟ ସମସ୍ତ ରଚନା ପରବର୍ତ୍ତୀ କାଳରେ ସେମାନଙ୍କ ଗ୍ରନ୍ଥାବଳୀରେ ସଙ୍କଳିତ । ଏହି ଦୃଷ୍ଟିରୁ ଦୁର୍ଗାଚରଣ ରାୟ 'ରାଧାନାଥ ଜୀବନୀ'ରେ 'ଉତ୍କଳ ଦର୍ପଣ'ରେ ପ୍ରକାଶିତ ରଚନାବଳୀର ଯେଉଁ ତାଲିକା ଦେଇଛନ୍ତି, ତାହା ଅଧିକ ଗୁରୁତ୍ୱପୂର୍ଣ୍ଣ । 'ଉତ୍କଳ-ଦର୍ପଣ'ରେ ପ୍ରକାଶିତ ଲେଖାଗୁଡ଼ିକର ପରିଚୟ ଦେଇ ଦୁର୍ଗାଚରଣ ରାୟ ଲେଖିଛନ୍ତି :

> ଉତ୍କଳ-ଦର୍ପଣ ଯେଉଁ ଦୁଇ ବର୍ଷ ମାସିକ ପତ୍ରରୂପେ ଥିଲା, ତହିଁରେ ନାନା ଉତ୍କୃଷ୍ଟ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ପ୍ରଥମ ବର୍ଷରେ ରାଧାନାଥଙ୍କର 'ବିବେକୀ', ଅନ୍ୟାନ୍ୟ ଲେଖକଙ୍କର — କାଳିଦାସ, ନିଶୀଥ ଚିନ୍ତା (ପଦ୍ୟ), ୰ ବଳରାମ ଦାସଙ୍କର 'କୁମାରସମ୍ଭବ', ଧନଞ୍ଜୟ ସିଂହ ନାମକ ଉପନ୍ୟାସ, ଶ୍ମଶାନ (ପଦ୍ୟ), ସ୍ତୋତ୍ର ଓ ରଘୁବଂଶ (ତ୍ରୟୋଦଶ ସର୍ଗ), ମଧୁସୂଦନ, ଚନ୍ଦ୍ର ଓ ତାରା, ହଣ୍ଟର୍ସ ଓଡ଼ିଶା ଇତିହାସର ସମାଲୋଚନା, ରାଧାନାଥଙ୍କର ମେଘଦୂତ, ସ୍ତ୍ରୀଶିକ୍ଷା, ଇଚ୍ଛାର ସ୍ୱାଧୀନତା, ଅର୍ଥ ଓ ମୁଦ୍ରା ପ୍ରଭୃତି ନାନା ପ୍ରବନ୍ଧ ଧାରାବାହିକରୂପେ ପ୍ରକାଶିତ ହୋଇଥିଲା । କାଳିଦାସ ପ୍ରବନ୍ଧଟି ଯେପରି ଦୀର୍ଘ ସେହିପରି ଗବେଷଣାପୂର୍ଣ୍ଣ — ଏଥିରେ ନାନା ପ୍ରସଙ୍ଗର ଉତ୍‌ଥାପନ ହୋଇଥିଲା । ଦ୍ୱିତୀୟ ବର୍ଷରେ ମଧୁସୂଦନଙ୍କ 'ଉଲ୍‌କାପିଣ୍ଡ', 'ବୁଦ୍ଧଦେବ' ପ୍ରଭୃତି ଏବଂ ଚନ୍ଦ୍ରମଣ୍ଡଳ, ନୀତିଶିକ୍ଷା, ମନ୍ଦାକିନୀ, ଉତ୍କଳଭାଷା, ବାଇମହାନ୍ତି ପାଞ୍ଜି, ନାକ୍ଷତ୍ରିକ ଜଗତ, ବିଦ୍ୟାଧ୍ୟୟନର କୁଫଳ, ପ୍ରଣୟର ଅଦ୍ଭୁତ ପରିଣାମ, ମନୋବିଜ୍ଞାନ, ସକ୍ରେଟିସ୍, ଇଟାଲୀୟ ଯୁବା (ରାଧାନାଥ) ପ୍ରଭୃତି ପ୍ରକାଶିତ ହୋଇଥିଲା ।[୯]

କିନ୍ତୁ ରାଧାନାଥ-ଜୀବନୀକାର ମଧ୍ୟ 'ଉତ୍କଳ ଦର୍ପଣ'ରେ ପ୍ରକାଶିତ ଲେଖାଗୁଡ଼ିକର ତାଲିକା ଯଥେଷ୍ଟ ଯତ୍ନର ସହିତ ପ୍ରସ୍ତୁତ କରିନାହାନ୍ତି । ଦୃଷ୍ଟାନ୍ତସ୍ୱରୂପ ବଳରାମ ଦାସଙ୍କ ଦ୍ୱାରା ଅନୂଦିତ 'କୁମାରସମ୍ଭବ'ର ଏକ ସମାଲୋଚନା 'ଉତ୍କଳ ଦର୍ପଣ'ରେ ପ୍ରକାଶିତ ହୋଇଥିଲାବେଳେ ଦୁର୍ଗାଚରଣ ରାୟ କାବ୍ୟଟି ପ୍ରକାଶିତ ହେବା କଥା କହିଛନ୍ତି । 'ଶ୍ମଶାନ' ଓ 'ସ୍ତୋତ୍ର' କବିତାଦ୍ୱୟ ମଧୁସୂଦନ ରାଓଙ୍କ ଦ୍ୱାରା ଲିଖିତ ହୋଇଥିଲାବେଳେ, ରାୟ ମହାଶୟ ଏହା ବଳରାମ ଦାସଙ୍କର ଲେଖା ବୋଲି କହିଛନ୍ତି । 'କାଳିଦାସ' ପ୍ରବନ୍ଧ ରାଧାନାଥଙ୍କଦ୍ୱାରା ଲିଖିତ ବୋଲି ମୃତ୍ୟୁଞ୍ଜୟ କହିଲାବେଳେ 'ରାଧାନାଥ ଜୀବନୀ'ରେ ଏହା 'ଅନ୍ୟାନ୍ୟ ଲେଖକଙ୍କର' ବୋଲି

(୯) ରାଧାନାଥ ଜୀବନୀ (୧ମ ମୁଦ୍ରଣ, ୧୯୪୧) — ଶ୍ରୀ ଦୁର୍ଗାଚରଣ ରାୟ, ପୃ.୪୯ ।

କୁହାଯାଇଛି । ସେହିଭଳି ମଧୁସୂଦନଙ୍କର ଅତି ପରିଚିତ କବିତା 'ନିଶୀଥ-ଚିନ୍ତା'କୁ 'ଅନ୍ୟାନ୍ୟ ଲେଖକଙ୍କର' ରଚନା ହିସାବରେ ପ୍ରଦର୍ଶିତ ।

ମୋଟ ଉପରେ କହବାକୁ ଗଲେ, 'ଉତ୍କଳ ଦର୍ପଣ'କୁ ଓଡ଼ିଆ ସାହିତ୍ୟର ପ୍ରଥମ ମାସିକ ସାହିତ୍ୟପତ୍ର ରୂପରେ ସ୍ୱୀକୃତି ପ୍ରଦତ୍ତ ହୋଇଥିଲେ ମଧ ଏହା ଉପରେ ଯଥାଯଥ ଆଲୋଚନା ହୋଇପାରିନାହିଁ । ସେଥିପାଇଁ ଏହି ଆଲୋଚକର ହସ୍ତଗତ ହୋଇଥିବା 'ଉତ୍କଳ ଦର୍ପଣ'ର ପ୍ରଥମ ବର୍ଷର ଆଧାରରେ ଏକ ସଂକ୍ଷିପ୍ତ ଆଲୋଚନା ଉପସ୍ଥାପିତ ।

ବୈକୁଣ୍ଠନାଥ ଦେ ଥିଲେ 'ଉତ୍କଳଦର୍ପଣ'ର ମୁଦ୍ରାକର, ପ୍ରକାଶକ, ପରିଚାଳକ ଓ ପୃଷ୍ଠପୋଷକ । ପୂର୍ବରୁ ସୂଚିତ, ଏହା ଥିଲା ପ୍ରଥମ ଓଡ଼ିଆ ସାହିତ୍ୟପତ୍ରିକା । ଆଧୁନିକ ଓଡ଼ିଆ ସାହିତ୍ୟର ଜଣେ ବିଶିଷ୍ଟ ପୃଷ୍ଠପୋଷକ ଥିଲେ ରାଜା ବୈକୁଣ୍ଠନାଥ ଦେ । ରାଧାନାଥ ସେତେବେଳେ ଓଡ଼ିଶାର ସ୍କୁଲ ସମୂହର ଡେପୁଟି ଇନସ୍‌ପେକ୍ଟର ଭାବରେ ୫ ବର୍ଷକାଳ (୧୮୭୨-୧୮୭୭) ମୁଖ୍ୟ କାର୍ଯ୍ୟାଳୟ ବାଲେଶ୍ୱରରେହିଁ ଅବସ୍ଥାନ କରୁଥିଲେ । ସେତେବେଳେ ବାଲେଶ୍ୱରରୁ ପ୍ରକାଶିତ 'ସମ୍ବାଦବାହିକା'ରେ ଫକୀରମୋହନ ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି ଓ ସୁରକ୍ଷା କଳ୍ପେ ଯୁକ୍ତିପୂର୍ଣ୍ଣ ଲେଖାମାନ ପ୍ରକାଶ କରୁଥିଲେ । ଫକୀରମୋହନଙ୍କ ଏଭଳି ଉଦ୍ୟମକୁ କଲେକ୍ଟର ଏବଂ ମାଜିଷ୍ଟ୍ରେଟ୍ ବୀମ୍‌ସ ସାହେବ ଖୁବ୍ ପ୍ରଶଂସା କରୁଥିଲେ । ପରକ୍ଷଣରେ 'ସମ୍ବାଦବାହିକା'ର ସେହିଁ ଏକମାତ୍ର ଲେଖକ ଥିବା ଦୃଷ୍ଟିରୁ ଖୁବ୍ ଦୁଃଖ ପ୍ରକାଶ କରିଥିଲେ । ଉକ୍ତ ପତ୍ରିକାର ଲେଖକ ବୃଦ୍ଧି ଦୃଷ୍ଟିରୁ ଦିନେ ସେ ରାଧାନାଥଙ୍କୁ ଡାକି କହିଥିଲେ, ''ଦେଖ ! ଫକୀରମୋହନ ଏକାକୀ ଲେଖୁଅଛି । ଆଉ ଜଣେ କେହି ଲେଖକ ବଢ଼ିଲେ ନାହିଁ; ତୁମ୍ଭେମାନେ ସବୁ କେହି ଲେଖୁନାହଁ ବଡ଼ ଲଜ୍ଜାର କଥା ।''(୧୦) ବୀମ୍‌ସ ସାହେବଙ୍କ ଏଭଳି କଥାରେ ସେଦିନ ରାଧାନାଥ ହୁଏତ ଖୁବ୍ ଆଘାତ ପାଇଥିଲେ । ମାତ୍ର ଦିନେ ସାନ୍ଧ୍ୟଭ୍ରମଣ ଅବସରରେ ରାଧାନାଥ ଫକୀରମୋହନଙ୍କୁ କହିଥିଲେ, ''ଦେଖ ! ଏଥର ମୁଁ ଲେଖିବି ଏବଂ ପତ୍ରିକା ପାଇଁ କେତେ ଲେଖକ ବାହାରିବେ ଏହା ସାହେବଙ୍କୁ ଦେଖାଇଦେବି ।''(୧୧) ରାଧାନାଥଙ୍କ ଏଭଳି ପ୍ରତିଜ୍ଞା ମୂଳରେ ଥିଲା ବୀମ୍‌ସ ସାହେବଙ୍କର ସାମାନ୍ୟ କେତୋଟି କଥା । ରାଧାନାଥ ଓ କୁମାର ବୈକୁଣ୍ଠନାଥ ଦେ'ଙ୍କ ମଧ୍ୟରେ ଥିବା ସୁସମ୍ପର୍କ ହେତୁ ତାଙ୍କରି ପ୍ରବର୍ତ୍ତନା ତଥା ବୀମ୍‌ସଙ୍କ ନିର୍ଦ୍ଦେଶ କ୍ରମେ ବୈକୁଣ୍ଠନାଥ 'ଉତ୍କଳ ଦର୍ପଣ' ପତ୍ରିକା ପ୍ରକାଶ କରିବାକୁ ସମ୍ମତ ହୋଇଥିଲେ । ପତ୍ରିକା ପ୍ରକାଶ ପୂର୍ବରୁ ଏକ ବିଜ୍ଞାପନରେ ପ୍ରକାଶ ପାଇଥିଲା :

> ଆମ୍ଭେମାନେ ଉତ୍କଳଦର୍ପଣ ନାମକ ଖଣ୍ଡେ ମାସିକ ସନ୍ଦର୍ଭ ପ୍ରକାଶ କରିବାକୁ ମନସ୍ଥ କରିଅଛୁ । ଉତ୍କଳ ସାହିତ୍ୟର ଉନ୍ନତି ବିଧାନ, ଉତ୍କଳୀୟ ସାମାଜିକ

(୧୦) ଏକ୍କ, ପୃ.୪୯ ।

(୧୧) ତତ୍ରୈବ ।

ରୀତି ସଂଶୋଧନ ଏହି ପତ୍ରିକାର ମୁଖ୍ୟ ଉଦ୍ଦେଶ୍ୟ ଅଟେ । ଏଣୁକରି ସେଥିରେ ଶିକ୍ଷା, ସାହିତ୍ୟ, ବିଜ୍ଞାନ, ସଙ୍ଗୀତ, ରାଜକୀୟ, ସାମାଜିକ ଓ ନୀତି ସମ୍ବନ୍ଧୀୟ ପ୍ରସ୍ତାବମାନ ପ୍ରକାଶିତ ହେବ ।''(୧୨)

ଫଳରେ ଦେ'ଙ୍କ ଉତ୍କଳ ପ୍ରେସ୍‌ରୁ 'ଉତ୍କଳ ଦର୍ପଣ' ମାସିକ ମୁଖପତ୍ର ରୂପେ ପ୍ରକାଶ ପାଇଥିଲା । ଏଥିରେ ରାଧାନାଥ, ମଧୁସୂଦନ, ବିଶ୍ୱନାଥ ଶତପଥୀ, ଜୟକୃଷ୍ଣ ଚୌଧୁରୀ, ଭୋଳାନାଥ ଦାସ, ଭୋଳାନାଥ ସାମନ୍ତରାୟ ଓ ଅନ୍ୟମାନଙ୍କର ଲେଖାମାନ ପ୍ରକାଶ ପାଇଥିଲା । ଲେଖକ ସଂଖ୍ୟା ବୃଦ୍ଧି ଉଦ୍ଦେଶ୍ୟରେ ଜଣେ ଲେଖକର ଏକାଧିକ ଭିନ୍ନ ରୁଚିର ଲେଖା ମଧ ପ୍ରକାଶ ପାଉଥିଲା । ସେଥିପାଇଁ ପ୍ରତିଟି ଲେଖା ଶେଷରେ ଲେଖକର ନାମ ରହୁନଥିଲା ।

'ଉତ୍କଳ ଦର୍ପଣ' ପ୍ରଥମ ଦୁଇବର୍ଷ (୧୮୭୩-୭୪) ମାସିକ, ୧୮୭୫ ଜାନୁୟାରୀରୁ ପାକ୍ଷିକ ଏବଂ ୧୮୭୭ରୁ ସାପ୍ତାହିକ ରୂପ ନେଇ ୧୮୮୫ ବେଳକୁ ବନ୍ଦ ହୋଇଯାଇଥିଲା । ଏହାର ମାସିକରୁ ସାପ୍ତାହିକ ରୂପ ପରିବର୍ତ୍ତନ ନେଇ 'ବାଲେଶ୍ୱର ସମ୍ବାଦବାହିକା' କ୍ଷୋଭ ପ୍ରକାଶ କରି ଲେଖିଥିଲା :

''ଆଜିକାଲି ସାହିତ୍ୟ ସଂସାରରେ 'ଉତ୍କଳ ଦର୍ପଣ' ଏକମାତ୍ର ପତ୍ରିକା ଥିଲା । ଉତ୍କଳଦର୍ପଣ ଦ୍ୱାରା ଓଡ଼ିଶାର ସାହିତ୍ୟ ସଂସାରରେ ଯେ ସମସ୍ତ ଅଭାବ ଦୂରୀଭୂତ ହେଉଥିଲା ଏହା ଆମ୍ଭେମାନେ ବୋଲୁଁନାହୁଁ । ମାତ୍ର କେତେକ ଅଂଶରେ ଉପକାର ଦର୍ଶୁଥିଲା ଓ ଭବିଷ୍ୟତକୁ ପ୍ରଭୂତ ଉପକାର ଦର୍ଶିବାର ଆଶା ଥିଲା । . . .ବାସ୍ତବରେ ଆମ୍ଭେମାନେ ଦର୍ପଣର ପୂର୍ବାକୃତି ଲୋପରେ ଯାଦୃଶ ଦୁଃଖିତ ହେବୁଁ, ସାପ୍ତାହିକ ରୂପ ଧାରଣରେ ତାଦୃଶ ଆନନ୍ଦିତ ହେବୁନାହିଁ ।''(୧୩)

କାରଣ 'ଉତ୍କଳ ଦର୍ପଣ' ୧୮୭୩-୭୪ ସାଲ ଦୁଇବର୍ଷ ମାସିକ ରୂପରେ ଏବଂ ୧୮୭୫-୭୬ ସାଲ ଦୁଇବର୍ଷ ପାକ୍ଷିକ ରୂପରେ ଯେଉଁ ମାନ ଓ ଯେଉଁ ସ୍ୱାଦର ରଚନାସବୁ ପ୍ରକାଶ କରୁଥିଲା, ଏହାର ସାପ୍ତାହିକ ରୂପ ୧୮୭୭-୮୫ ସାଲ ମଧ୍ୟରେ ସେଭଳି ରଚନାର ଅଭାବ ପରିଲକ୍ଷିତ ହୋଇଥିଲା । ଫଳରେ ଇନ୍ଦ୍ରବଲ୍ଲଭ ଭଟ୍ଟାଚାର୍ଯ୍ୟଙ୍କ ସମ୍ପାଦନାରେ ପ୍ରକାଶିତ ସାପ୍ତାହିକ ଉତ୍କଳଦର୍ପଣ ୧୮୮୫ ସାଲ ଡିସେମ୍ବର ମାସ ପରେ ବନ୍ଦ ହୋଇଯାଇଥିଲା । ଏହା ବନ୍ଦ ହେବାର ମୁଖ୍ୟ କାରଣ ଥିଲା, ୧୮୮୫ ସାଲରେ ଜଗବନ୍ଧୁ ବାନାର୍ଜୀ ନାମକ କୌଣସି ଲେଖକ କେତେକ ସରକାରୀ ନୀତିର ତୀବ୍ର ପ୍ରତିବାଦ କରି ସରକାରୀ କାର୍ଯ୍ୟକଳାପର ଉଗ୍ର ସମାଲୋଚନାତ୍ମକ ଗୋଟିଏ

(୧୨) ଉତ୍କଳ ଦୀପିକା – ତା ୦୯/୧୧/୧୮୭୨ ରିଖ ।

(୧୩) ବାଲେଶ୍ୱର ସମ୍ବାଦ ବାହିକା – ୭/୧୦, ତା ୧/୧/୧୮୭୫ ରିଖ, ପୃ.୭୪ ।

ଲେଖା ଏହି ପତ୍ରିକାରେ ପ୍ରକାଶ କରାଇଥିଲେ । ଫଳରେ ଇଂରେଜ ସରକାରଙ୍କର ବିଷ ଦୃଷ୍ଟିରେ ପଡ଼ି ପତ୍ରିକାଟି ବନ୍ଦ ହୋଇଥିଲା ।

ଏହି ଲେଖକର ହସ୍ତଗତ ହୋଇଥିବା ପ୍ରଥମ ବର୍ଷ ଉତ୍କଳ ଦର୍ପଣ (୧୮୭୩)ରେ ପ୍ରକାଶ ପାଇଥିବା ଲେଖାଗୁଡ଼ିକ ମଧ୍ୟରେ ରହିଛି ରାଧାନାଥ ରାୟଙ୍କ ବିବେକୀ, ଆମ୍ଭମାନଙ୍କ ଗୃହ, ମେଘଦୂତ (ଅନୁବାଦ), ରଘୁବଂଶ (ଅନୁବାଦ), ପବନ (କବିତା), ଇଟାଲୀୟ ଯୁବା (ବଡ଼ ଗଳ୍ପ), କାଳିଦାସ (ଆଲୋଚନା); ଅଜ୍ଞାତ ଲେଖକଙ୍କର ଧନଞ୍ଜୟ ସିଂହ (ଉପନ୍ୟାସ), ଏବଂ ମଧୁସୂଦନ ରାଓଙ୍କ ଚନ୍ଦ୍ର ଓ ତାରା, ଚନ୍ଦ୍ରଗ୍ରହଣ, ଗ୍ରହମାନେ ପ୍ରାଣିମାନଙ୍କ ଆବାସଭୂମି କି ନା, ଅର୍ଥ ଏବଂ ମୁଦ୍ରା, ଶାସନ ପ୍ରଣାଳୀ, ପ୍ରଭୃତି ପ୍ରବନ୍ଧ, ନିଶୀଥଚିନ୍ତା, ଶ୍ମଶାନ ପ୍ରଭୃତି କବିତା; ବଳରାମ ଦାସଙ୍କ କୁମାରସମ୍ଭବର ସମାଲୋଚନା ଭଳି ପୁସ୍ତକ ସମୀକ୍ଷା, ରହସ୍ୟ ଓ ବିବିଧ ସମ୍ବାଦ । ଅନ୍ୟାନ୍ୟ ପ୍ରବନ୍ଧ ମଧ୍ୟରେ ରହିଛି ମାତୃଭାଷାରେ ବିଦ୍ୟାନୁଶୀଳନ, ହର୍ଷର୍ଷ ଓଡ଼ିଶ୍ୟା ସମାଲୋଚନା, ମାଇକେଲ ମଧୁସୂଦନ ଦତ୍ତ, ଇଚ୍ଛାର ସ୍ୱାଧୀନତା । ଏହା ବ୍ୟତୀତ ସଙ୍ଗୀତ, ସ୍ତୋତ୍ରାଦି ପ୍ରକାଶ ପାଇଥିଲା ।

ଦ୍ୱିତୀୟ ବର୍ଷ (୧୮୭୪)ରେ ମଧୁସୂଦନଙ୍କ ଉଲ୍‌କାପିଣ୍ଡ, ବୁଦ୍ଧଦେବ ପ୍ରଭୃତି ପ୍ରବନ୍ଧ ଏବଂ ଚନ୍ଦ୍ରମଣ୍ଡଳ, ନୀତିଶିକ୍ଷା, ମନ୍ଦାକିନୀ, ଉତ୍କଳଭାଷା, ବାଇ ମହାନ୍ତି ପାଞ୍ଜି, ନାକ୍ଷତ୍ରିକ ଜଗତ୍, ବିଦ୍ୟାଧ୍ୟୟନର କୁଫଳ, ପ୍ରଣୟର ଅଦ୍ଭୁତ ପରିଣାମ, ମନୋବିଜ୍ଞାନ, ସକ୍ରେଟିସ୍, ଇଟାଲୀୟ ଯୁବା ପ୍ରଭୃତି ରଚନା ପ୍ରକାଶିତ । ଏଗୁଡ଼ିକ ମଧ୍ୟରୁ ବହୁ ରଚନା ଆଜି ବିସ୍ମୃତିଗର୍ଭରେ ବିଲୁପ୍ତ । ଏତଦ୍‌ଭିନ୍ନ ସାମୟିକ ଦଳାଦଳିରେ ଉତ୍କଳ ଦର୍ପଣ ଅଂଶଗ୍ରହଣ କରି ଶକ୍ତି କ୍ଷୟ କରୁଥିଲା :

> ବାଲେଶ୍ୱର ଦେ ପ୍ରେସ୍ ଓ ବୈକୁଣ୍ଠନାଥ ଦେ'ଙ୍କ ସହ ରାଧାନାଥଙ୍କ ସମ୍ପର୍କ ଦ୍ୱାରା ପାଠ୍ୟ ପୁସ୍ତକ ନିର୍ବାଚନ ପ୍ରଭାବିତ । ଉତ୍କଳୀୟ ବଙ୍ଗାଳୀମାନଙ୍କ ଉନ୍ନତି ବିଧାନରେ ତତ୍ପରତା, ଓଡ଼ିଆ ଭାଷା ଓ ଓଡ଼ିଆ ଲୋକମାନଙ୍କ ପ୍ରତି ଘୃଣାଜନକ ମନୋଭାବ ପୋଷଣ, ନିଜ ପକ୍ଷୀୟ ଲୋକଙ୍କୁ ନିଯୁକ୍ତି ଦାନ ପ୍ରଭୃତି ରାଧାନାଥଙ୍କ ବିପକ୍ଷରେ ସମ୍ବାଦବାହିକାର ଗୁରୁତର ଅଭିଯୋଗ ଥିଲା । ଉତ୍କଳଦର୍ପଣ ଏଗୁଡ଼ିକ ଯଥାଯଥ ଭାବେ ଖଣ୍ଡନ ପ୍ରୟାସୀ ହୋଇଥିଲା ।[୧୪]

## ଦେ'ଙ୍କ ଉତ୍କଳ ପ୍ରେସ୍ ଓ ବିବିଧ ପ୍ରକାଶନ

ଓଡ଼ିଆ ଭାଷାସୁରକ୍ଷା ଆନ୍ଦୋଳନରେ ବାଲେଶ୍ୱରର (୧୮୬୮-୭୦) ଫକୀରମୋହନ ସେନାପତି, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ଓ ଜନ୍ ବୀମ୍‌ସ୍‌ଙ୍କ ସହିତ

(୧୪) ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ, ପୃ.୯୬ ।

ରାଜା ବୈକୁଣ୍ଠନାଥ ଦେ' ମଧ୍ୟ ସକ୍ରିୟ ଅଂଶଗ୍ରହଣ କରିଥିଲେ । ଓଡ଼ିଆ ଭାଷାର ସୁରକ୍ଷା, ଓଡ଼ିଆ ପାଠ୍ୟପୁସ୍ତକାଦି ମୁଦ୍ରଣ ତଥା ଓଡ଼ିଆ ସାହିତ୍ୟର ଉନ୍ନତି ଥିଲା ତାଙ୍କ ପ୍ରେସ୍ ପ୍ରତିଷ୍ଠାର ମୂଳ ଲକ୍ଷ୍ୟ । ରାଜା ବୈକୁଣ୍ଠନାଥ ଦେ' ଏସବୁ କଥା ଭଲଭାବରେ ଅନୁଭବ କରିଥିଲେ ଏବଂ ନିଜେ ଏକ ପ୍ରେସ୍ ପ୍ରତିଷ୍ଠା (୧୮୭୩) ମଧ୍ୟ କରିଥିଲେ । ଉକ୍ତ ପ୍ରେସ୍‌ରୁ 'ଉତ୍କଳଦର୍ପଣ' ପରି 'ଓଡ଼ିଆ ଓ ନବସମ୍ବାଦ' (୧୮୮୮ ଜାନୁୟାରୀ), ଧୂମକେତୁ (୧୮୮୪) ଆଦି ପତ୍ରିକା, ଫକୀରମୋହନଙ୍କ ସମ୍ପୂର୍ଣ୍ଣ ରାମାୟଣ, କବିବର ରାଧାନାଥଙ୍କ କେଦାରଗୌରୀ (୧୮୮୫), ବହୁ ପାଠ୍ୟପୁସ୍ତକ, ପ୍ରଥମ ଓଡ଼ିଆ ରିପନ୍ ମାନଚିତ୍ରାବଳୀ (Atlas) ତଥା "A Brief History of the Balasore Raj Family" ଭଳି ବହୁ ଉପାଦେୟ ପୁସ୍ତକାଦି ପ୍ରକାଶ ପାଇଥିଲା ।

ବୈକୁଣ୍ଠନାଥ ଦେ'ଙ୍କ ପ୍ରେସ୍ ପ୍ରତିଷ୍ଠା ଓ ପତ୍ରିକା ପ୍ରକାଶନ ବିଷୟରେ ବାଲେଶ୍ୱରର ତତ୍‌କାଳୀନ ମାଜିଷ୍ଟ୍ରେଟ୍ ଟି. ନର୍ମାନ ଓଡ଼ିଶାର କମିଶନର ରେଭେନ୍ସା ସାହେବଙ୍କ ପାଖକୁ ଏକ ସରକାରୀ ଚିଠିର ଉତ୍ତରରେ ଲେଖିଥିଲେ :

> ... the leading gentleman in Balasore in works of public enterprise, for example he has established an excellent press for printing in the English and Oriya characters and edits meritorious magazines and newspapers.[୧୫]

ଏଭଳି ସରକାରୀ ସ୍ୱୀକୃତି ଜମିଦାର ବୈକୁଣ୍ଠନାଥଙ୍କୁ ଊନବିଂଶ ଶତକର ଜଣେ ବିଶିଷ୍ଟ ମୁଦ୍ରାକର ଓ ପ୍ରକାଶକରେ ରୂପାନ୍ତରିତ କରିଥିଲା ।

—

(୧୫) ଉଦ୍ଧୃତ : A Brief History of Balasore Raj Family (1900); ପୃ.୫୭ ।

# ‘ଉତ୍କଳଦର୍ପଣ’ର ପ୍ରଥମ ବର୍ଷରେ ପ୍ରକାଶିତ ବିଭିନ୍ନ ପ୍ରସଙ୍ଗ ଓ ରଚନାବଳୀର ପରିଚୟ

‘ଉତ୍କଳଦର୍ପଣ’ର ଉପଲବ୍ଧ ଏଗାରଟି ସଂଖ୍ୟାକୁ ଅଧ୍ୟୟନ କଲେ ଓଡ଼ିଆ ସାହିତ୍ୟକୁ ଏହା ପ୍ରଦାନ କରିଥିବା ନୂତନ ଦିଗ୍‌ଦର୍ଶନ ସ୍ପଷ୍ଟ ହୋଇପାରିବ । ‘ଉତ୍କଳଦର୍ପଣ’ ପ୍ରକାଶ ସମୟ ଥିଲା ଆଧୁନିକ ଓଡ଼ିଆ ସାହିତ୍ୟର ଉଷାକାଳ । ସମକାଳରେ ଓଡ଼ିଆ ସାମ୍ବାଦିକତା ମଧ୍ୟ ପ୍ରାରମ୍ଭିକ ପର୍ଯ୍ୟାୟ ଅତିକ୍ରମ କରି ନଥିଲା । ଓଡ଼ିଆ ପ୍ରବନ୍ଧ, ନୂତନ ଧରଣର କବିତା, ପୁସ୍ତକ-ସମାଲୋଚନା, ଉପନ୍ୟାସ, ଗଳ୍ପ, ନୂତନ ଧରଣର ଅନୁବାଦ ଯେଉଁଳି ‘ଉତ୍କଳଦର୍ପଣ’ ପୃଷ୍ଠାରେ ପ୍ରକାଶିତ ହୋଇଥିଲା; ଏହାର ବିଭିନ୍ନ ସ୍ତମ୍ଭରେ ସମକାଳୀନ ପ୍ରସଙ୍ଗ ବିଶେଷରୂପେ ଆଲୋଚିତ ହୋଇଥିଲା । ସେହି ସମସ୍ତ ପ୍ରସଙ୍ଗ ଓ ‘ଉତ୍କଳଦର୍ପଣ’ରେ ପ୍ରକାଶିତ ବିଭିନ୍ନ ରଚନାର ସ୍ୱରୂପର ଏକ ପରିଚୟ ଦେବକୁ ଏଠାରେ ଚେଷ୍ଟା କରାଯାଇଛି ।

## ‘ଉତ୍କଳ ଦର୍ପଣ’ରେ ପ୍ରକାଶିତ ପ୍ରବନ୍ଧ ଓ କବିତାବଳୀ

ଏହି ଆଲୋଚକ ଦ୍ୱାରା ସଂଗୃହୀତ ଓ ଏହି ଆଲୋଚନା ସହ ପୁନଃମୁଦ୍ରିତ ‘ଉତ୍କଳ ଦର୍ପଣ’ (୧୮୭୩) ପ୍ରଥମ ବର୍ଷରେ ପ୍ରକାଶିତ ରଚନାଗୁଡ଼ିକ ମଧ୍ୟରେ ପ୍ରବନ୍ଧ ସର୍ବାଧିକ ସ୍ଥାନ ଅଧିକାର କରିଛି । ପ୍ରବନ୍ଧଗୁଡ଼ିକ ମଧ୍ୟରେ ରହିଛି ରାଧାନାଥ ରାୟଙ୍କ ବିବେକୀ, ଆମ୍ଭମାନଙ୍କ ଗୃହ, ମଧୁସୂଦନ ରାଓଙ୍କ ଚନ୍ଦ୍ର ଓ ତାରା, ଚନ୍ଦ୍ର ଗ୍ରହଣ, ଗ୍ରହମାନେ ପ୍ରାଣୀମାନଙ୍କ ଆବାସ ଭୂମି କି ନା ?, ଅର୍ଥ ଏବଂ ମୁଦ୍ରା, ଶାସନ ପ୍ରଣାଳୀ; ଅନ୍ୟାନ୍ୟ ପ୍ରବନ୍ଧ ଓ ଆଲୋଚନାଗୁଡ଼ିକ ହେଲା ସ୍ତ୍ରୀଶିକ୍ଷା, ମାତୃଭାଷାରେ ବିଦ୍ୟାନୁଶୀଳନ, ମାଇକେଲ ମଧୁସୂଦନ ଦତ୍ତ, ଇଚ୍ଛାର ସ୍ୱାଧୀନତା, ତଥା କାଳିଦାସ (ଆଲୋଚନା) । ଶେଷୋକ୍ତ ରଚନାଟି ରାଧାନାଥଙ୍କର ବୋଲି ମୃତ୍ୟୁଞ୍ଜୟ କହିଛନ୍ତି । ନିମ୍ନରେ କେତୋଟି ପ୍ରବନ୍ଧ ସମ୍ପର୍କରେ ସଂକ୍ଷିପ୍ତ ଆଲୋକପାତ କରାଗଲା ।

‘ବିବେକୀ’ ରାଧାନାଥଙ୍କର ଏକ ଦୀର୍ଘ ପ୍ରବନ୍ଧ । ମାନବ ଜୀବନର ନୀତି, ଆଦର୍ଶ, ଦାର୍ଶନିକ ଚିନ୍ତା ଆଦି ବିବିଧ ବିଷୟ ଏଥିରେ ଅବତାରଣା କରାଯାଇଛି । ଉକ୍ତ ପ୍ରବନ୍ଧରେ ଜଣେ ପ୍ରାବନ୍ଧିକ ଅପେକ୍ଷା ନିଜକୁ ଜଣେ ନୀତିବାଦୀ ଭାବରେ ଅଧିକ ପରିଚୟ ଦେଇଛନ୍ତି । ସାଂସାରିକ ଜୀବନଧାରାରେ ମାନବ ଅସଂଖ୍ୟ ଦୁଃଖ-କଷ୍ଟର ସମ୍ମୁଖୀନ ହୁଏ । ନୂତନ ଜୀବନର ସନ୍ଧାନଜନିତ ପ୍ରେରଣା ମାର୍ଗ, ମାନବର ସୁଭଗମ୍ମନ୍ୟତା, ମାନବର ଶାରୀରିକ, ମାନସିକ, ନୈତିକ ତଥା ରଚନାଗତ ଅପରିପକ୍ୱତା ତଥା

ସଂସାରର ବୋଝ ବୋହିବାର ମାର୍ଗ ଲେଖକ ପ୍ରଦର୍ଶନ କରିଛନ୍ତି । ଉକ୍ତ ପ୍ରବନ୍ଧରେ ପ୍ରାବନ୍ଧିକ ପାଠକମାନଙ୍କ ଉଦ୍ଦେଶ୍ୟରେ କହିଛନ୍ତି, 'କେହି ଅବା କହିବେ' ବିଳମ୍ବରେ କ'ଣ ଶିକ୍ଷା ହୁଏ ଏ ବଷୟ ଘେନି ଉପଦେଶ ଦଉଅଛନ୍ତି ମାତ୍ର ଉପଦେଶକୁ ଅତିଶୟ ଦୀର୍ଘ କଲେ ସେଥିର ଫଳ ଊଣା ହୋଇଯାଏ, ଏକଥା ଏହାଙ୍କର ଆଜିଯାଏ ଶିକ୍ଷା ହୋଇନାହିଁ । ''ମାତ୍ର ତାହା ନୁହେଁ ଏହି ପ୍ରବନ୍ଧ ପଢୁପଢୁ ନିଜ ଅବସ୍ଥା ନିଜ ଅନୁଭବ ସ୍ମରଣ କରି ତୁମ୍ଭ ମନରେ ଆହୁରି କେତେ କଥା ଉଦିତ ହୋଇଥିବ ।'' (ଉ.ଦ., ପୃ.୧୬୦) ରାଧାନାଥଙ୍କ 'ବିବେକୀ' ପ୍ରବନ୍ଧ ଉପରେ ପାଶ୍ଚାତ୍ୟ ପ୍ରାବନ୍ଧିକ ବେକନ୍ ଓ ଏମର୍ସନ୍‌ଙ୍କ ପ୍ରଭାବ ସ୍ମରଣ କରାଯାଇପାରେ । ବେକନ୍‌ଙ୍କ ମାନବବାଦୀ ଚିନ୍ତାଧାରା, ଈଶ୍ୱର, ଭାଗ୍ୟ ଓ ଧର୍ମୀୟଚେତନା ଅନୁରୂପ ରାଧାନାଥ ମଧ ମାନବ ସଂସାରର ଧର୍ମ, ନୀତି, ସ୍ନେହ, ଦୟାଦି ବିଷୟରେ ଅନେକ କଥା କହିଛନ୍ତି । ରାଧାନାଥଙ୍କ ଜ୍ଞାନଦୀପ୍ତ ଜୀବନର ଗଭୀର ଅନ୍ୱେଷା, ଅନ୍ତର୍ଦୃଷ୍ଟି, ଉଦାର ମାନବିକବୋଧ, ବିଚାରବୋଧ ତଥା ଧର୍ମଶକ୍ତିର ଜ୍ୱଳନ୍ତ ନିଦର୍ଶନ 'ବିବେକୀ' ପ୍ରବନ୍ଧ, ଯାହା ଆଧୁନିକ ଓଡ଼ିଆ ପ୍ରବନ୍ଧ ସାହିତ୍ୟଜଗତରେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ।

'ମାତୃଭାଷାରେ କାବ୍ୟାନୁଶୀଳନ' ପ୍ରବନ୍ଧରେ ବିଦ୍ୟାର ପ୍ରକୃତ ଅର୍ଥ ସୂଚିତ । ମନୁଷ୍ୟ ଜୀବନରେ ସାରବସ୍ତୁ ବିଦ୍ୟାଧ୍ୟୟନ, ବିଦ୍ୟାର ପ୍ରୟୋଜନୀୟତା, ବିଦ୍ୟାର୍ଜ୍ଜନର ଉପକାରିତା, ସ୍ୱଦେଶୀୟ ଜନସାଧାରଣଙ୍କ ମନରେ ବିଦ୍ୟାର୍ଜ୍ଜନ ବୀଜରୋପିତ ହେବାର ଉପାୟ ଆଦି ବିଷୟ ସୁଚିନ୍ତିତ ଭାବରେ ଆଲୋଚିତ । ଏହି ପ୍ରସଙ୍ଗରେ ପ୍ରାବନ୍ଧିକଙ୍କର ମନ୍ତବ୍ୟ ହେଉଛି –

> ଅସ୍ମ ଦେଶୀୟ ଲୋକମାନେ ଏହି ମହୀୟାନ ବିଷୟର ଗୌରବ ଉପଲବ୍ଧି କରିବାକୁ ନିତାନ୍ତ ପରାଙ୍ମୁଖ । ଆହୁରି ବିସ୍ମୟର ବ୍ୟାପାର ଏହି ଯେ କୃତବିଦ୍ୟ ସମ୍ପ୍ରଦାୟଙ୍କର ମଧ ଏଥିରେ ଆଦର ଓ ଶ୍ରଦ୍ଧା ଲକ୍ଷିତ ହୁଏ ନାହିଁ । ଉପର୍ଯ୍ୟୁକ୍ତ ଔଦାସିନ୍ୟର ନିରାକରଣାର୍ଥ ଆମ୍ଭେମାନେ ଲେଖନୀ ଧାରଣ କଲୁଁ । ଏହି ଉଦ୍ଦେଶ୍ୟ କଥଞ୍ଚିତ୍ ସାଧିତ ହେଲେ ଆପଣାକୁ ଚରିତାର୍ଥ ମଣିବୁଁ । (ଉ.ଦ., ପୃ.୭୩)

'ଆମ୍ଭମାନଙ୍କ ଗୃହ' ପ୍ରବନ୍ଧରେ ପ୍ରାବନ୍ଧିକ ଉତ୍କଳ ଗୃହବାସୀମାନଙ୍କ ଧର୍ମ ଓ ନୀତିବିହୀନ ଜୀବନ, ମାନସିକ ଅବସ୍ଥା, ଚରିତ୍ର, ଶିକ୍ଷା, ସଂସ୍କାର, ଆଚାର ବ୍ୟବହାର ବିଷୟରେ ଆଲୋକପାତ କରିଛନ୍ତି । ଏ ବିଷୟରେ ପ୍ରାବନ୍ଧିକ ଅତ୍ୟନ୍ତ କ୍ଷୋଭର ସହିତ କହିଛନ୍ତି :

> ତୁମ୍ଭମାନଙ୍କର ଘର କାହିଁ ଯେ ବାହାରକୁ ଶୋଭା ଦିଶିବ ? ତୁମ୍ଭମାନଙ୍କ ଗୃହରେ ଶିକ୍ଷା କାହିଁ ଯେ ବାହାରେ ପଣ୍ଡିତ ନାମ ବିକାଶିବ । ତୁମ୍ଭମାନଙ୍କ ଗୃହରେ

ସଭ୍ୟତା କାହିଁ ଯେ, ଦାଣ୍ଡରେ ସଭ୍ୟ ଦେଖାଇବ ? ତୁମ୍ଭମାନଙ୍କ ଗୃହରେ ସତ୍ୟ କାହିଁ ଯେ ଦାଣ୍ଡରେ ସାଧୁ ବୋଲାଇବ ? ତୁମ୍ଭମାନଙ୍କ ଗୃହରେ ଉନ୍ନତ ଭାବ କାହିଁ ଯେ, ଉତ୍କଳର ଉନ୍ନତି ସାଧିବ ? ଆଜି ଊନବିଂଶ ଶତାବ୍ଦି ଚାଲୁଅଛି, ପୃଥିବୀର ଉନ୍ନତ, ପ୍ରତି ସଭ୍ୟଜାତିର ଉଜ୍ଜ୍ୱଳ ପ୍ରଭା, ହିନ୍ଦୁସ୍ଥାନ ଅନ୍ୟାନ୍ୟ ଦେଶର ଆର୍ଯ୍ୟ ପୁତ୍ରମାନେ- ବୀରପୁତ୍ରମାନେ କରଭତୁଲ୍ୟ ଦେହଝାଡ଼ି ନିଦ୍ରାରୁ ଉଠୁଅଛନ୍ତି, ଏମାନଙ୍କର ମତ ହେବା ନିମନ୍ତେ ତୂରୀ ହିନ୍ଦୁସ୍ଥାନରେ ବାଜୁଅଛି, ତୂରୀ ବିଲାତରେ ବାଜୁଅଛି । ତୁମ୍ଭେମାନେ ଶୋଇ ରୁହ, କାଳ ତୁମ୍ଭମାନଙ୍କୁ ଗ୍ରାସୁ, ତୁମ୍ଭେମାନେ ଆର୍ଯ୍ୟବଂଶ-ସମ୍ଭୂତ ନୋହ । ତୂରୀ ତୁମ୍ଭମାନଙ୍କ କର୍ଣ୍ଣକୁ ଶୁଭିବ ନାହିଁ । ଏ କଟୁକଥା ଶୁଣି ଦୁଃଖିତ ହୁଅନା, ଦୁଃଖିତ ହେବାର ଅନ୍ତଃକରଣ ତୁମ୍ଭମାନଙ୍କର ଅଛି କି ନା ସନ୍ଦେହ । (ଉ.ଦ.; ପୃ.୨୩୨)

'ଗ୍ରହମାନେ ପ୍ରାଣୀମାନଙ୍କ ଆବାସ ଭୂମି କି ନା ?' ପ୍ରବନ୍ଧରେ ପ୍ରାବନ୍ଧିକ ଗ୍ରହମାନଙ୍କ ଉପଗ୍ରହ, ପ୍ରତ୍ୟେକ ପଦାର୍ଥର ସୃଷ୍ଟିଗତ ମହତ୍ତ୍ୱ, ଦୂରବୀକ୍ଷଣ ଯନ୍ତ୍ରଦ୍ୱାରା ଗହ-ଉପଗ୍ରହ ନିରୀକ୍ଷଣ, ପାର୍ଥିବ ଗ୍ରହ ଓ ଏଥିରେ ପ୍ରାଣୀଙ୍କ ଆବାସଭୂମିର କାରଣ ତଥା ଉତ୍ତାପ, ଆଲୋକ, ବାୟୁ ଓ ଜଳ ଆଦି ଉପାଦାନ ବିଷୟ ଆଲୋଚିତ । ପ୍ରାବନ୍ଧିକଙ୍କ ଲେଖନୀରେ ଏଭଳି ତାତ୍ତ୍ୱିକ ବିଷୟକୁ ସୁନ୍ଦରଭାବେ ବର୍ଣ୍ଣନା କରିଛନ୍ତି :

କୃଷ୍ଣପକ୍ଷ ରଜନୀରେ ସୁନିର୍ମଳ ଗଗନ ଆଡ଼କୁ ଥରେ ଅନାଇଲେ, କେତେ ଅସଂଖ୍ୟ ନକ୍ଷତ୍ର ନେତ୍ରଗୋଚର ହୁଅନ୍ତି । ସେମାନଙ୍କ ମଧ୍ୟରେ କେତେଗୁଡ଼ିଏ ଆମ୍ଭମାନଙ୍କ ସୌରଜଗତର ମଧ୍ୟବର୍ତ୍ତୀ, ଆଉ ସମସ୍ତେ ତାହାର ବହିର୍ଭୂତ । ଏହି ସୌରଜଗତ ମଧ୍ୟରେ କେତେଗୁଡ଼ିଏ ଗ୍ରହ, ପୁଣି କେତେଗୁଡ଼ିଏ ଉପଗ୍ରହ ଅବା ଚନ୍ଦ୍ର ଅଛନ୍ତି । ଆମ୍ଭମାନଙ୍କ ପୃଥିବୀ ତାହା ମଧ୍ୟରେ ଗୋଟିଏ ଗ୍ରହ ଅଟେ ଏବଂ ତାହାର ଯେମନ୍ତ ଗୋଟିଏ ଚନ୍ଦ୍ର ଉପଗ୍ରହ ଅଛି, ସେହିପରି ଅନ୍ୟାନ୍ୟ ଗ୍ରହମାନଙ୍କ କାହାର ଚାରୋଟି, କାହାର ବା ଆଠୋଟି ଉପଗ୍ରହ ଅଛନ୍ତି; ଆଉ କାହାରିବା ଗୋଟିଏ ସୁଦ୍ଧା ଉପଗ୍ରହ ନାହିଁ । (ଉ.ଦ., ପୃ.୨୭୫-୨୭୬)

'ଇଚ୍ଛାର ସ୍ୱାଧୀନତା' ପ୍ରବନ୍ଧରେ ପ୍ରାବନ୍ଧିକ ସମଗ୍ର ସୃଷ୍ଟି ଈଶ୍ୱରଙ୍କର ଏବଂ ଈଶ୍ୱରଙ୍କ ନିର୍ଦ୍ଦେଶିତ ନିୟମରେ ସମସ୍ତେ ପରିଚାଳିତ ବୋଲି ଦୃଢ଼ୋକ୍ତି କରିଛନ୍ତି । ପରକ୍ଷଣରେ ସେ କହିଛନ୍ତି :

ମନୁଷ୍ୟ ଚିନ୍ତାସ୍ରୋତ ସତତ ମନୋରୂପ ପ୍ରସ୍ରବଣରୁ ସ୍ୱତଃ ପ୍ରବାହିତ ହୁଏ । ଆମ୍ଭେମାନେ ଏକଥା ସ୍ୱୀକାର କରୁଁ, ମାତ୍ର ଆମ୍ଭ ମତରେ ଏହାଦ୍ୱାରା ସ୍ୱାଧୀନତାର ଅପଳାପ ହେଉନାହିଁ; କାରଣ କି ମନୁଷ୍ୟର ମନ ଜନ୍ମାବଧି ଅବସ୍ଥା ରୂପ ଛାଞ୍ଚରେ ଗଠିତ ହୋଏ, ଏଣୁ ତାହାର ଚିନ୍ତାସ୍ରୋତ ଅବସ୍ଥାର

ଅଧୀନ ହୋଇ ପ୍ରବାହିତ ହୁଏ । କିନ୍ତୁ ଏହା ମଧ୍ୟ ଆମ୍ଭେମାନେ ସାହସପୂର୍ବକ କରିପାରୁଁ ଯେ ମନୁଷ୍ୟ, ଅବସ୍ଥାର ପ୍ରଭାବକୁ ପରାଜୟ କରି ଅନେକ ସମୟରେ ଚିନ୍ତାସ୍ରୋତର ପରିବର୍ତ୍ତନ ସମ୍ପାଦନ କରିପାରେ । (ଉ.ଦ., ପୃ.୨୬୨)

'ଉତ୍କଳ ଦର୍ପଣ'ରେ ଜୀବନୀ ମଧ୍ୟ ପ୍ରକାଶ ପାଇଥିଲା । 'ମାଇକେଲ ମଧୁସୂଦନ ଦତ୍ତ' ଏହାର ଦୃଷ୍ଟାନ୍ତ । ମାଇକେଲ ମଧୁସୂଦନଙ୍କ ଜନ୍ମ, ଶିକ୍ଷା, ଅଧ୍ୟାପନା, ବିବାହ, ସାରସ୍ୱତ ସାଧନା, ପତ୍ନୀ ବିୟୋଗ ଓ ମୃତ୍ୟୁ ଉପରେ ଆଲୋଚିତ ପ୍ରବନ୍ଧରେ ଗୁରୁତ୍ୱ ଆରୋପ କରାଯାଇଛି ।

'ଉତ୍କଳ ଦୀପିକା' ଓ 'ବୋଧଦାୟିନୀ ଏବଂ ବାଲେଶ୍ୱର ସମ୍ବାଦବାହିକା' ପୃଷ୍ଠାରେ ଆଧୁନିକ ଓଡ଼ିଆ ପ୍ରବନ୍ଧ ପ୍ରଥମେ ପ୍ରକାଶିତ ହୋଇଥିଲେ ବି ପ୍ରବନ୍ଧସାହିତ୍ୟର ଯଥାର୍ଥ ଅଭିବ୍ୟକ୍ତି/ବିକାଶ ଘଟିଛି 'ଉତ୍କଳ ଦର୍ପଣ' ପୃଷ୍ଠାରେ । ଆଲୋଚିତ ପ୍ରବନ୍ଧଗୁଡ଼ିକ ଏହି ବିକାଶର ଦୃଷ୍ଟାନ୍ତ ।

କବିତା ମଧ୍ୟରେ 'ନିଶୀଥଚିନ୍ତା', 'ଶ୍ମଶାନ', 'ସଙ୍ଗୀତ' (୬ଟି) ସ୍ତୋତ୍ର, 'ରଘୁବଂଶ' (ଅନୁବାଦ), 'ମେଘଦୂତ' (ଅନୁବାଦ) ଆଦି ପ୍ରକାଶିତ ।

ଈଶ୍ୱର ଓ ସଂସାର ବିଷୟରେ ଏକ କ୍ଷୁଦ୍ର 'ସଙ୍ଗୀତ'ରେ ବର୍ଣ୍ଣିତ ହୋଇଛି –

ଯାର କୃପାବସେ ଜ୍ଞାନ, ଯାକୃପାରେ ଧନ ମାନ
ନଚିହ୍ନେ ତାହାଙ୍କୁ ଜନ କି ଆଶ୍ଚର୍ଯ୍ୟ ହାୟରେ ।।୧।।
ବାଲ୍ୟ ଯୁବାକାଳ ଶେଷ, ବୃଦ୍ଧାବସ୍ଥା ପରିବେଶ
ଯଦି ମୃତ୍ୟୁ ଧରେ କେଶ, ଅଛି କି ଉପାୟରେ ।।୨।।
ବୃଥା ଏ ସମ୍ପଦଚିନ୍ତା, ବୃଥା ଏ ପୁତ୍ରବନିତା
ପରଂବ୍ରହ୍ମ ନାମଧରି, ଯଦି ଯିବ ଯାୟରେ ।।୩।।

(ଉ.ଦ., ପୃ.୭୨)

ପ୍ରଥମ ବର୍ଷରେ ପ୍ରକାଶିତ ଏହିସବୁ କବିତା ଓ କାବ୍ୟାନୁବାଦର ନୂତନତା ବହୁ ଆଲୋଚିତ । ମଧୁସୂଦନଙ୍କ କବିଜୀବନ 'ଉତ୍କଳଦର୍ପଣ' ପୃଷ୍ଠାରେ ହିଁ ଆରମ୍ଭ ହୋଇଥିଲା ।

## ପୁସ୍ତକ ଆଲୋଚନା

ଉତ୍କଳ ଦର୍ପଣ ପ୍ରଥମ ବର୍ଷରେ କାଳିଦାସଙ୍କ ରଚିତ ସଂସ୍କୃତ 'କୁମାରସମ୍ଭବ'ର ବଳରାମ ଦାସ କୃତ ଓଡ଼ିଆ ଅନୁବାଦ ଓ 'ହଣ୍ଟର୍ସ ଉଡ଼ିଶ୍ୟା' ପୁସ୍ତକ ଦୁଇଟିର ଆଲୋଚନା ପ୍ରକାଶ ପାଇଥିଲା । ବଳରାମ ଦାସ ଅନୁବାଦ କ୍ଷେତ୍ରରେ ଭଞ୍ଜୀୟ

ଶବ୍ଦାଡ଼ମ୍ବର୍ ତଥା ଦୁର୍ବୋଧତାକୁ ସମ୍ପୂର୍ଣ୍ଣ ପରିହାର କରି ସରଳ, ପ୍ରାଞ୍ଜଳ ତଥା ଜନବୋଧ ଭାଷାରେ ଭାବପ୍ରକାଶ କରିବାରେ ସଫଳ ହୋଇଥିଲେ । ଉକ୍ତ ପୁସ୍ତକ ସମ୍ପର୍କରେ ଆଲୋଚକଙ୍କ ଉକ୍ତି ହେଉଛି –

> ଏହି ଗ୍ରନ୍ଥ ଖଣ୍ଡିକ ଆମ୍ଭମାନଙ୍କର ବିଶେଷ ଆଦରଣୀୟ ହୋଇଅଛି । ଯେଉଁମାନେ ଶବ୍ଦାଡ଼ମ୍ବରକୁ କବିତାର ସାର ମଣନ୍ତି, ଦୁର୍ବୋଧତାକୁ ଗୁଣ ମଣନ୍ତି ଏହି ଗ୍ରନ୍ଥରେ ସେମାନଙ୍କର ଆସ୍ଥା ହେବାର ଦିଶୁନାହିଁ । ବାସ୍ତବରେ ଉତ୍କଳୀୟ କବିତାର ଏପରି ଶୋଚନୀୟ ଦଶା ସେମାନଙ୍କର ଉପଦ୍ରବରୁ ଜାତ ହୋଇଅଛି ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ସେମାନେ ଯେବେ ଭଞ୍ଜବୀରବରଙ୍କୁ ଶ୍ରେଷ୍ଠ ବୋଲି ତୂନୀ ହୋଇ ରହନ୍ତେ ସେଥିରେ ବଡ଼ ଅନିଷ୍ଟର ସମ୍ଭାବନା ନଥିଲା । ମାତ୍ର ସେମାନେ ସେଥିରୁ ଅନେକ ଦୂର ବଳିଯାଆନ୍ତି । ଭଞ୍ଜୀୟ ରୀତି ଏଡ଼ି ଅନ୍ୟ ମାର୍ଗ ଆଶ୍ରୟକରି କେହି ଭଲ କବିତା ରଚିପାରିବେ ଏହା ସେମାନଙ୍କର ବୁଦ୍ଧିକୁ ଆସଇ ନାଇଁ । (ଉ.ଦ., ପୃ.୩୮)

ପୁନଶ୍ଚ ଅନୂଦିତ ପୁସ୍ତକର ଜନବୋଧ ଭାଷା ବିଷୟରେ ସମୀକ୍ଷକ ଉଲ୍ଲେଖ କରିଛନ୍ତି :

> ତାହାଙ୍କର ଭାଷା ପ୍ରାଞ୍ଜଳ, ମଧୁର ପ୍ରୟାସବିହୀନ, ଅପ୍ରତିହତ ଗଙ୍ଗାଜଳ ପରି । ଅନୁପ୍ରାସ ଲୋଡ଼ିବାର ଲବମାତ୍ର ଆୟାସ କରିନାହାନ୍ତି । ଯାହା ଲେଖିଅଛନ୍ତି ଅନର୍ଗଳ ଲେଖନୀରୁ ବାହାରିଥିବାର ବୋଧ ହେଉଅଛି । ଆମ୍ଭର ମତ ସମର୍ଥନା ନିମନ୍ତେ ନିମ୍ନରେ କେତେଗୋଡ଼ି ପଂକ୍ତି ଉଦ୍ଧୃତ କଲୁ । ମାତ୍ର ଏପରି ଉଦାହରଣ ଗ୍ରନ୍ଥର ପ୍ରତ୍ୟେକ ପତ୍ରରୁ ଥୋକାଏ ଥୋକାଏ ବାହାରିବ ।
>
> କାଳିଦାସ କୁମାରସମ୍ଭବର ତୃତୀୟ ସର୍ଗରେ ବସନ୍ତ ବର୍ଣ୍ଣନା ପ୍ରସଙ୍ଗରେ ଲେଖିଛନ୍ତି –
>
> ଅବର୍ଜିତା କିଞ୍ଚିଦିବ ସ୍ତନାଭ୍ୟାଂ ବାସୋବସାନାତରୁଣାର୍କ ରାଗମ୍<br>
> ପର୍ଯ୍ୟାପ୍ତ ପୁଷ୍ପସ୍ତବକାବନମ୍ରା ସଞ୍ଚାରିଣୀ ପଲ୍ଲବିନୀ ଲତେବ ।୫୪।
>
> ସ୍ରସ୍ତାଂନିତମ୍ବାଦବଲମ୍ବମାନା ପୁନଃ ପୁନଃ କେଶର ଦାମ କାଞ୍ଚମ୍<br>
> ନ୍ୟାସୀକୃତାଂ ସ୍ଥାନବିଦାସ୍ମରେଣ ମୌର୍ବୀଂଦ୍ୱତୀୟାମିବ କାର୍ମୁକସ୍ୟ ।୫୫।
>
> ସୁଗନ୍ଧି ନିଶ୍ୱାସ ବିବୃଦ୍ଧ ତୃଷ୍ଣଂ ବିମ୍ବାଧରାସନ୍ନଚରଂ ଦ୍ୱିରେଫମ୍<br>
> ପ୍ରତିକ୍ଷଣଂ ସମ୍ଭ୍ରମଲୋଳ ଦୃଷ୍ଟିଃ ଲୀଳାରବିନ୍ଦେନ ନିବାରୟନ୍ତୀ ।୫୬।
>
> ୨୯ ପୃଷ୍ଠାରେ ବଳରାମ ଦାସଙ୍କ ଅନୂଦିତ ଅଂଶଟି ହେଉଛି –
>
> ତରୁଣ ଅରୁଣ ବର୍ଣ୍ଣବାସ ପରିଧାନ,<br>
> ପୟୋଧର ଉରେ ନତ କୃଶତନୁ ଜାଣ ।

ପୁଷ୍ପ-ସ୍ତବକରେ ନମ୍ର ହୋଇ କି ବଲ୍ଲରୀ,
ସଞ୍ଚରଇ ଧରାତଳେ, ତେସନ ସୁନ୍ଦରୀ ।୫୪।
ନିତମ୍ବୁ ବକୁଳଦାମ ପଡୁଅଛି ଖସି,
କରେ ଧରି ଉପରକୁ ଦିଅନ୍ତି ରୂପସୀ ।
ଦେଖି ଭାବୁକ ମନକୁ ଏମନ୍ତ ଆସୁଛି,
ସ୍ଥାନ ଜାଣି ସ୍ମର ଚାପେ ଗୁଣ ଚଢ଼ାଉଛି ।୫୫।
ସୁଗନ୍ଧ ନିଶ୍ୱାସଗନ୍ଧେ ଲୁବ୍ଧ ମଧୁକରେ,
ଗୁଣୁଗୁଣୁ ଶବ୍ଦେ ଆସି ବସନ୍ତେ ଅଧରେ ।
ଦରେ ସୁଲୋଚନା ମୁହୁ ଲୋଚନ ବୁଜଇ
ଲୀଳା ଅରବିନ୍ଦ ଧରି ଭ୍ରମର ଉଡ଼ଇ ।୫୬।

୨୪ ପୃଷ୍ଠାରେ ବସନ୍ତବର୍ଣ୍ଣନାରେ ବଳରାମ ଦାସ ଯେ ଲଘୁଛନ୍ଦ ଆଶ୍ରୟ କରିଅଛନ୍ତି ତାହା ତାହାଙ୍କର ଉଦାର ରୁଚିର ପରିଚାୟକ ଅଟେ । (ଉ.ଦ., ପୃ.୩୮-୩୯)

ସମାଲୋଚକ ମହାଶୟଙ୍କର ଅନୁବାଦକଙ୍କ ପ୍ରତି ସର୍ବଶେଷ ମନ୍ତବ୍ୟ ହେଉଛି :

କାଳିଦାସଙ୍କ କବିତାର ଆସ୍ୱାଦ ଯେମାନେ ଥରେ ପାଇଛନ୍ତି ସେହି କବିତାମାନଙ୍କୁ ଭାଷାନ୍ତର କରି ଭାବ ଅବିକଳ ରଖିବାର କେଡ଼େ ଦୁଷ୍କର ଅଟେ ତାହା ସେହିମାନେ ଜାଣନ୍ତି । ବାସ୍ତବରେ କାଳିଦାସ ଯାହା ବୋଲନ୍ତି ଏପରି ଅନିର୍ବଚନୀୟ ଭଙ୍ଗୀରେ ବୋଲନ୍ତି ଯେ ସେହି ମାଧୁରୀ ହୃଦୟ ଅନୁଭବ କରେ; ମାତ୍ର ମସ୍ତିଷ୍କ ସେଥିର ହେତୁ ଲୋଡ଼ିପାରେ ନାହିଁ । ବଳରାମବାବୁ ସାଧ ପକ୍ଷରେ ସେହି ଭଙ୍ଗୀ ଆଣିବାକୁ ତ୍ରୁଟି କରିନାହାନ୍ତି ।'' (ଉ.ଦ., ପୃ.୩୯-୪୦)

ପରକ୍ଷଣରେ ଦ୍ରୁତ ମୁଦ୍ରଣ ଦୋଷଜନିତ ପୁସ୍ତକଟିରେ କେତେକ ତ୍ରୁଟି ରହିଯାଇଥିବା ସୁଦୃଷ୍ଟାନ୍ତ ଦର୍ଶାଯାଇଛି ।

'ହଣ୍ଟର୍ସ ଉଡ଼ିଶ୍ୟା' ପୁସ୍ତକ ଆଲୋଚନା ପ୍ରସଙ୍ଗରେ ଅତୀତର ଗୌର୍ବପୂର୍ଣ୍ଣ ପୁଣ୍ୟଭୂମି ଉତ୍କଳ ଦେଶ, ପଡ଼ୋଶୀ ବଙ୍ଗଦେଶର ଆଧୁନିକ ଶ୍ରୀବୃଦ୍ଧି ତୁଳନାରେ ଉତ୍କଳର ଦୀନ ଅବସ୍ଥା, ଓଡ଼ିଶାର ଗଡ଼ଜାତ ରାଜାମାନଙ୍କର ଅଜ୍ଞତା, ପ୍ରଜାପୀଡ଼କ ଅନ୍ଧାରୀ ଶାସନ, ବିଳାସପ୍ରିୟତା, ଦେଓ୍ୱାନ୍‌ମାନଙ୍କ ଅର୍ଥଶୋଷଣ ଚକ୍ରାନ୍ତକାରୀ ମନୋଭାବ ତଥା ପ୍ରଜାମାନଙ୍କ ପ୍ରତି ହେୟଜ୍ଞାନ, ଉତ୍କୃଷ୍ଟ ଇଂରେଜ ଶାସନର ପ୍ରଶଂସା ଓ ଅନୁକରଣ, ନଅଙ୍କ ଦୁର୍ଭିକ୍ଷର ସୁଫଳ (ଫୌଜଦାରୀ, କିଲଟରୀ, ଅବକାରୀ, ଶିକ୍ଷା ଓ ଚିକିତ୍ସାର ଉନ୍ନତି ପ୍ରତି ଧ୍ୟାନ), ରାଜକୀୟ ବିଜ୍ଞାପନର ଭୁଲ ଅନୁସରଣ,

ଗଡ଼ଜାତ ରାଜାମାନଙ୍କର ବିଚାରାଳୟ (ବିଚାର କାର୍ଯ୍ୟ) ପ୍ରଥା ଇତ୍ୟାଦି ବିଷୟରେ ବାସ୍ତବ ଆଲୋକପାତ କରିଛନ୍ତି । ଏ କ୍ଷେତ୍ରରେ ଗଡ଼ଜାତ ରାଜାମାନଙ୍କୁ ଲକ୍ଷ୍ୟକରି କହିଛନ୍ତି –

> ହେ ଗଡ଼ଜାତ ରାଜାମାନେ ? ଦେଖ, ତୁମ୍ଭେମାନେ ପାପିଷ୍ଠ ହୋଇ ଲକ୍ଷ ଲକ୍ଷ ପ୍ରଜାଙ୍କର ଉନ୍ନତି ମାର୍ଗରେ କଣ୍ଟକ ହୋଇଅଛ, ତୁମ୍ଭର ନିଦ୍ରା କେବେ ଭାଙ୍ଗିବ ? ପ୍ରଜାମାନଙ୍କ ସର୍ବସ୍ୱ ହରଣରୁ କେବେ ତୁମ୍ଭେମାନେ ନିବୃତ୍ତ ହେବ ? କେବଳ ଆପଣା ସୁଖ ନିମନ୍ତେ କର ଆଦାୟ କରି ଆପଣାକୁ ରାଜା ବୋଲି ପରିଚୟ ଦେବାରୁ ତୁମ୍ଭେମାନେ କେବେ କ୍ଷାନ୍ତ ହେବ ? ଏହି ଦେଖ, ଘୋର ବର୍ଷା, ତୁମ୍ଭେ ନାଟ ମନ୍ଦିରରେ ବସି ପାଲା ଶୁଣୁଅଛ, ବାଇନାଚ ଦେଖୁଅଛ, ତୁମ୍ଭର ଦରିଦ୍ର ପ୍ରଜାର ଘର-ଚାଳ ବାରେ ଉଡ଼ିଗଲାଣି; ଭିତରେ ପାଣି ପଡୁଅଛି, ରାତ୍ରିରେ ଗରିବ କେଉଁଠାରେ ରହିବ, କଅଣ ଖାଇବ ତାହାର ସଂସ୍ଥାନ ନାହିଁ । ଦରିଦ୍ର ତୁମ୍ଭଠାକୁ ଆସି ତାହାର ଦୁଃଖ ଜଣାଇବ ଏପରି ଉପାୟ ସୁଦ୍ଧା ନାହିଁ । ପାଣିରେ ଦେଶ ଭାସିଗଲାଣି ଘରୁ ବାହାରିବାର ବାଟ ନାହିଁ । ଦରିଦ୍ର ଯେବେ ପହଁରି ତୁମ୍ଭଠାକୁ ଆସିଲା ତାହା ଗୁହାରି ଶୁଣିବାକୁ ତୁମ୍ଭର ଅବକାଶ ନାହିଁ । (ଉ.ଦ., ପୃ.୧୬୪)

'ହଣ୍ଟର୍ସ ଓଡ଼ିଶ୍ୟା' ଏକ ପୁସ୍ତକ ସମାଲୋଚନାମୂଳକ ରଚନା ହେଲେ ହେଁ ଉପରୋକ୍ତ ବିଷୟ ସେଥିପ୍ରତି ବିଶେଷ ଗୁରୁତ୍ୱ ଆରୋପ କରାଯାଇଛି ।

## ସମକାଳୀନ ସମ୍ବାଦପତ୍ର ସହିତ ସମ୍ପର୍କ

'ଉତ୍କଳ ଦର୍ପଣ'ରେ 'ବାଲେଶ୍ୱର ସମ୍ବାଦବାହିକା', 'ଉତ୍କଳ ଦୀପିକା' ଓ 'ଉତ୍କଳପୁତ୍ର' ସମ୍ପର୍କରେ କେତେକ ମନ୍ତବ୍ୟ/ଆଲୋଚନା ପ୍ରକାଶିତ । ଏହି ସମସ୍ତ ମନ୍ତବ୍ୟ/ଆଲୋଚନାରୁ 'ଉତ୍କଳ ଦର୍ପଣ' ସେହି ସେହି ସମସ୍ତ ସମ୍ବାଦପତ୍ରର କିପ୍ରକାର ସମ୍ପର୍କ ଥିଲା, ତାହା ଜଣାଯାଏ ।

### ବାଲେଶ୍ୱର ସମ୍ବାଦବାହିକା ସହ ସମ୍ପର୍କ

ଫକୀରମୋହନଙ୍କ ଦ୍ୱାରା ସଂପାଦିତ 'ବାଲେଶ୍ୱର ସମ୍ବାଦବାହିକା' 'ଉତ୍କଳ-ଦର୍ପଣ' ପୂର୍ବରୁ ବାଲେଶ୍ୱରରୁ ପ୍ରକାଶିତ ହେଉଥିଲା । 'ବାଲେଶ୍ୱର ସମ୍ବାଦବାହିକା'ର ପ୍ରାପ୍ତି ସ୍ୱୀକାର କରି 'ଉତ୍କଳ ଦର୍ପଣ'ରେ କୁହାଯାଇଛି – ''ଆନନ୍ଦ ସହିତ ସ୍ୱୀକାର କରୁଅଛୁ ଯେ ଆମ୍ଭମାନଙ୍କ ପତ୍ରିକା ପରିବର୍ତ୍ତରେ ରାଜସାହୀସମ୍ବାଦ ଓ ବାଲେଶ୍ୱର ସମ୍ବାଦବାହିକାର ସମ୍ପାଦକ ଅନୁଗ୍ରହ କରି ରୀତିମତ ସେମାନଙ୍କ ପତ୍ରିକା ପଠାଉଅଛନ୍ତି ।'' (ପୃ.୯୬) ବଙ୍ଗଳାର ବ୍ରାହ୍ମଧର୍ମ ପ୍ରଚାରକ ସାଧୁ ଅଘୋରନାଥ

ଗୁପ୍ତଙ୍କ ବାଲେଶ୍ୱର ଟାଉନସ୍ଥ ଇଂରାଜୀ ସ୍କୁଲ ଗୃହରେ ବ୍ରାହ୍ମଧର୍ମ ତଥା ମନୁଷ୍ୟର ପ୍ରକୃତ ଉଦ୍ଦେଶ୍ୟ ବିଷୟକ ବକ୍ତୃତା ଉପରେ ବାଲେଶ୍ୱର ସମ୍ବାଦବାହିକାର ସମ୍ପାଦକ ଯେଉଁ ମନ୍ତବ୍ୟ ପ୍ରକାଶ କରିଥିଲେ, ତାହାର ପ୍ରତିବାଦରେ 'ଦର୍ପଣ' ଲେଖିଥିଲା ''ସମ୍ପାଦକ ବ୍ରାହ୍ମେତର ଧର୍ମାବଲମ୍ବୀମାନଙ୍କୁ ଲକ୍ଷ୍ୟ କରି ଗୁରୁମାନଙ୍କୁ ବ୍ୟଙ୍ଗ କରି ଅଛନ୍ତି ଏହା ଅତ୍ୟନ୍ତ ଅବିବେଚନାର କାର୍ଯ୍ୟ ହୋଇଅଛି କାରଣ ସମ୍ପାଦକମାନଙ୍କର କୌଣସି ଧର୍ମର ବିଦ୍ୱେଷୀ ହେବାର ଉଚିତ ନୁହେଁ ।'' (ପୃ.୨୧୬) ଏଥିରୁ ସ୍ପଷ୍ଟ ହୁଏ ଯେ ପତ୍ରିକା ସମ୍ପାଦକ ଓ ପରିଚାଳକମାନଙ୍କ ଉପରେ ନୈତିକ ମୂଲ୍ୟବୋଧ, ମାନବିକ ବିଚାରବୋଧ ତଥା ଉପଦେଶ ଆଦିର ପ୍ରଭାବ ଅଧିକ ଥିଲା ।

**'ଉତ୍କଳ ଦୀପିକା'କୁ ଉତ୍ତର**

'ଉତ୍କଳ ଦୀପିକା' ଥିଲା ଓଡ଼ିଆ ସମ୍ବାଦପତ୍ରଗୁଡ଼ିକ ମଧ୍ୟରେ ସର୍ବାଧିକ ପ୍ରଚାରିତ ଓ ସମ୍ମାନିତ । 'ଉତ୍କଳ ଦର୍ପଣ' ପ୍ରକାଶିତ ହେବା ପୂର୍ବରୁ ଏହାର ବିଜ୍ଞାପନାଦି 'ଉତ୍କଳ ଦୀପିକା'ରେ ହିଁ ପ୍ରକାଶିତ ହୋଇଥିଲା । କିନ୍ତୁ 'ଉତ୍କଳ ଦୀପିକା'ର ବଡ଼ଭାଇପଣିଆ ଜାହିର କରିବାର ମାନସିକତା ଥିଲା ଓ ସେହି ଅହଙ୍କାର ଜାହିର କରିବା ପାଇଁ ବିଭିନ୍ନ ସମୟରେ ଦୀପିକାର ସମ୍ପାଦକ ଅନ୍ୟ ସମ୍ବାଦପତ୍ର/ସାହିତ୍ୟପତ୍ରଗୁଡ଼ିକ ସମ୍ପର୍କରେ ପ୍ରତିକୂଳ ମନ୍ତବ୍ୟ ଦେଉଥିଲେ । 'ଦୀପିକା'ର ସମ୍ପାଦକ 'ଉତ୍କଳ ଦର୍ପଣ' ନ ପାଇବାଠାରୁ ଆରମ୍ଭ କରି ଏଥିରେ ପ୍ରକାଶିତ ରଚନାବଳୀ ଓ ଏହାର ଭାଷା – ଏହିଭଳି ବହୁ ବିଷୟ ଉପରେ ମନ୍ତବ୍ୟ ପ୍ରକାଶ କରିଛି । 'ଉତ୍କଳ ଦର୍ପଣ' ସମ୍ପାଦକୀୟ ସ୍ତମ୍ଭରେ ଏହିସବୁ ବିଷୟ ନେଇ ଯେଭଳି ସ୍ପଷ୍ଟୀକରଣ ଦିଆଯାଇଛି, ତାହା ସମକାଳୀନ ଓଡ଼ିଆ ବୁଦ୍ଧିଜୀବୀଙ୍କ ମଧ୍ୟରେ ଥିବା ଦ୍ୱନ୍ଦ ଓ ସମ୍ପର୍କକୁ ସ୍ପଷ୍ଟ କରେ ।

୧୮୭୩ ମସିହା ମେ ମାସ ୧୭ ତାରିଖ 'ଉତ୍କଳ ଦୀପିକା'ରେ 'ଉତ୍କଳ ଦର୍ପଣ' ନପଠାଇବା ବିଷୟ ନେଇ ସମ୍ବାଦ ପ୍ରକାଶ ପାଇଥିଲା । ଏହାର ଉତ୍ତରରେ 'ଦର୍ପଣ' ଲେଖିଥିଲା :

> ଆମ୍ଭେମାନେ କହୁଁ ପ୍ରଥମେ କୌଣସି ନୂଆ ପତ୍ରିକା ବାହାରିଲେ ତାହା ସର୍ବସାଧାରଣଠାରେ ପ୍ରକାଶ ହେବା ନିମନ୍ତେ ଓ ଦୋଷଗୁଣ ବିଚାରିବା ନିମନ୍ତେ ପତ୍ରିକା ସମ୍ପାଦକମାନଙ୍କ ପାଖକୁ ପଠା ହୋଇଥାଏ । ଆମ୍ଭେମାନେ ପ୍ରଥମେ ବିଜ୍ଞାପନ ପଠାଇଥିଲୁଁ ପରେ ୩ ମାସ କାଳ ରୀତିମତ ପତ୍ରିକା ସୁଧା ପଠାଇଲୁ କିନ୍ତୁ କୌଣସି ଉତ୍ତର ପାଇଲୁ ନାହିଁ । ପାଞ୍ଚିଲୁଁ ଅବା ଆମ୍ଭେମାନେ ଅପର୍ତ୍ତିମା ପୁଅର ଭାଇ ହୋଇଥିବାରୁ ସମ୍ପାଦକ ଅଧିକ ମୂଲ୍ୟର ଦୀପିକା ବିନିମୟ କରିବାକୁ ଅନିଚ୍ଛୁକ ଅଟନ୍ତି । ଏହା ଭାବି ଅନ୍ୟାନ୍ୟ ସମ୍ପାଦକମାନେ ଯେପରି

ଦୁଇଚାରି ପଇସା କ୍ଷତିକୁ କ୍ଷତି ମଣନ୍ତି ଆମ୍ଭେମାନେ ମଧ୍ୟ ସେହି ରୀତି ଅନୁସରି ପତ୍ରିକା ପ୍ରେରଣ କରିବାକୁ କ୍ଷାନ୍ତ ହେଲୁଁ । ଦୀପିକା ଯେବେ ବିନିମୟ କରିବେ ଆମ୍ଭେମାନେ ମଧ୍ୟ ପ୍ରସ୍ତୁତ ଅଛୁଁ । (ପୃ.୧୩୩)

## 'ଧନଞ୍ଜୟ ସିଂହ' ଓ 'ଇଟାଲୀୟ ଯୁବା' ଉପନ୍ୟାସ ପ୍ରସଙ୍ଗ ଓ ଦୀପିକା

ମାସିକ ଦର୍ପଣରେ ଧାରାବାହିକ 'ଧନଞ୍ଜୟ ସିଂହ' ଓ 'ଇଟାଲୀୟ ଯୁବା' ଉପନ୍ୟାସ ଦୁଇଟି ପ୍ରକାଶ ପାଉଥିବାର ଦେଖି ଦୀପିକା ବିରକ୍ତ ମନୋଭାବ ପୋଷଣ କରିଥିଲା । ଏଥିପାଇଁ 'ଦର୍ପଣ' 'ଦୀପିକା'କୁ ଜଣାଇଥିଲା :

ମାସିକ ପତ୍ରିକା ପ୍ରାୟ ଉପନ୍ୟାସରେ ପୂର୍ଣ୍ଣ ହୋଇଥାଏ । ଅଧିକାଂଶ ପାଠକ ଉପନ୍ୟାସ ପ୍ରିୟ, ଅଧିକାଂଶର ମନୋରଞ୍ଜନ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ । ଆମ୍ଭେମାନେ ଏହା କହୁଁ ନାହୁଁ ସେହି ଉଦ୍ଦେଶ୍ୟ ସମ୍ୟକ ସିଦ୍ଧ ହୋଇଅଛି । କେବଳ ଆମ୍ଭର ଏତିକି କହିବାର ଉଚିତ ସେହି ଉଦ୍ଦେଶ୍ୟ ସାଧନ ନିମନ୍ତେ ସାଧ୍ୟାନୁସାରେ ଚେଷ୍ଟା କରିଅଛୁଁ ଓ କରିବୁଁ । ପ୍ରତ୍ୟେକ ଖଣ୍ଡରେ ଯେ କେବଳ ଉପନ୍ୟାସ ଥିବ ତାହା ନୁହେଁ କିଅବା କେବଳ ପ୍ରସ୍ତାବ ଥିବାର ମଧ୍ୟ ଉଚିତ ନୁହେଁ । ଆମ୍ଭମାନଙ୍କର ଗତ ପତ୍ରିକା ନିରବଚ୍ଛିନ୍ନ ପ୍ରସ୍ତାବ ଶୂନ୍ୟ ନୁହଇ । (ପୃ.୧୩୩)

## ଲିଖିତ ଓ କଥିତ ଭାଷା ମଧ୍ୟରେ ସମ୍ପର୍କ

ଲିଖିତ ଓ କଥିତ ଭାଷାର ସମ୍ପର୍କ ନିର୍ଣ୍ଣୟ ପ୍ରସଙ୍ଗରେ ଦର୍ପଣ ମତବ୍ୟକ୍ତ କରିଛନ୍ତି,

ଆମ୍ଭେମାନେ ଏହିମତ ଅନୁସରି ଆମ୍ଭର ଭାଷାକୁ ଯଥାଶକ୍ତି ସାଧାରଣରେ ବୋଧଗମ୍ୟ କରିବାକୁ ଚେଷ୍ଟା କରୁଅଛୁଁ । ଅବଶ୍ୟ ଏହା ଆମ୍ଭେ ମୁକ୍ତ କଣ୍ଠରେ ସ୍ୱୀକାର କରିବୁଁ ଯେ ଆମ୍ଭପରି କ୍ଷୁଦ୍ରଲୋକ ଦ୍ୱାରା ଏଡ଼େ ବୃହତ୍ କାର୍ଯ୍ୟ ଅଂଶତଃ ସୁଦ୍ଧା ସିଦ୍ଧ ହେବାର କଠିଣ ହେଲେହେଁ ଯତ୍ନର ତୃଟି କରିବୁଁ ନାହିଁ । ସୌଭାଗ୍ୟ କ୍ରମେ କୌଣସି ମହାନ୍ ଲୋକ ଆମ୍ଭ ସଙ୍ଗେ ଏକମତ ହୋଇ ଆମ୍ଭ ପ୍ରଦର୍ଶିତ ରୀତିରେ ଲେଖିବେ । (ପୃ.୧୩୪)

## ବଙ୍ଗଳା ଓ ଓଡ଼ିଆ ଗଦ୍ୟର ଭାଷା

'ଦର୍ପଣ' ବଙ୍ଗଳା ଓ ଓଡ଼ିଆ ଗଦ୍ୟର ଭାଷା ଉପରେ ମନ୍ତବ୍ୟ ଦେଇ ତଥା ସେହି ଦୁଇ ଭାଷାର ଗଦ୍ୟରୀତିର ତୁଳନାତ୍ମକ ଆଲୋଚନା କରି ଲେଖିଛି :

ଦୁଇ ଏକ ବର୍ଷ ପୂର୍ବରେ ବଙ୍ଗଳା ଗଦ୍ୟର ରଚନା ନିତାନ୍ତ ସାଧୁଭାଷା ମିଶ୍ରିତ ଥିଲା; ବର୍ତ୍ତମାନ ସୁଦ୍ଧା ଅଧିକ ପରିମାଣରେ ଅଛି । କେବଳ ଦୁଇ ଚାରିଜଣ ଉତ୍କୃଷ୍ଟ ରୁଚିସମ୍ପନ୍ନ (ଅନ୍ତତଃ ଆମ୍ଭମାନଙ୍କ ବିବେଚନାରେ) ବ୍ୟକ୍ତି ପୂର୍ବରୀତିକୁ

ପରିହାର କରି ସରଳ ଅମିଶ୍ର ବଙ୍ଗଳା ଲେଖିବାକୁ ଯତ୍ନ ଓ ପ୍ରୟାସ ପାଉଅଛନ୍ତି ।...

ବର୍ତ୍ତମାନ ଚଳିତ ଉତ୍କଳୀୟ ଗଦ୍ୟର ସର୍ଜନା ବଙ୍ଗଳା ଗଦ୍ୟର ଅନୁକରଣରେ ହୋଇଅଛି । . . .ବଙ୍ଗଳା ଗଦ୍ୟର ଅନୁକୃତ ହେବାରୁ ଉତ୍କଳ ଗଦ୍ୟ ନିତାନ୍ତ ସାଧୁଭାଷା ପ୍ଲାବିତ ହୋଇଅଛି ଓ ହେଉଅଛି । ସୁତରାଂ ଉତ୍କଳ ଶିକ୍ଷିତ ସଂପ୍ରଦାୟର ସାଧୁଭାଷା ଲେଖିବା ଓ ସାଧୁ ଭାଷା ଶିଖିବାର ଅଭ୍ୟାସ ପଡ଼ିଯାଇଅଛି । ଏଣୁକରି ଅମିଶ୍ର ଉଡ଼ିୟା ଯେ ସେମାନଙ୍କର କାନକୁ ଗ୍ରାମ୍ୟ ଲାଗିବ ତାହା ବିଚିତ୍ର ନୁହେଁ । ଚିନ୍ତାଶୀଳ ବ୍ୟକ୍ତି ମାତ୍ରକେ ଏହା ଅବଶ୍ୟ ସ୍ୱୀକାର କରିବେ ଯେ ଭାଷା ପ୍ରକୃତ ଚଳିତ ଶବ୍ଦରେ ପରିପୂର୍ଣ୍ଣ ଅଟେ ତାହା ଅପେକ୍ଷାକୃତ ସବଳ । ଇଂରାଜୀ ଭାଷାର ଇତିହାସ ଯେଉଁମାନେ ମନୋଯୋଗ କରି ପଢ଼ି ଅଛନ୍ତି, ସେମାନେ ଏହି ବିଷୟରେ ଦୁଇମତ କରିବେ ନାହିଁ, ଆମ୍ଭମାନଙ୍କର ଏମନ୍ତ ଉଦ୍ଦେଶ୍ୟ ନୁହଇ ଯେ ଅନ୍ୟ ଭାଷାରୁ କେଭେ କୌଣସି ଶବ୍ଦ ନେବୁ ନାହିଁ, ପ୍ରୟୋଜନ ହେଲେ ନେବାର ଉଚିତ, ଅବଶ୍ୟ ନେବୁ, ମାତ୍ର ଜଳ ପରିବର୍ତ୍ତରେ ଉଦକ, ପକ୍ଷୀ ପରିବର୍ତ୍ତରେ ବିହଙ୍ଗ, ଗଛ ପରିବର୍ତ୍ତରେ ମହୀରୁହ ଓ ନାକ ପରିବର୍ତ୍ତରେ ନାସିକା ବ୍ୟବହାର କରିବୁ ନାହିଁ ଏବଂ ଶ୍ରବଣ ସେବକ ହୋଇ ଚଳିତ ଶବ୍ଦମାନଙ୍କୁ ନିର୍ବାସିତ କରି ସମାସ ଗ୍ରଥିତ ଅମରଖଣି ଗର୍ଭୋତ୍‌ଖାତ ରୁଣ୍ଟୁଝୁଣାୟମାନ ଶବ୍ଦରତ୍ନରାଜି ଦ୍ୱାରା ଉତ୍କଳ ସରସ୍ୱତୀଙ୍କର ନବନୀତ କୋମଳ କଳେବରକୁ ଭାରାବନତ କରିବୁ ନାହିଁ । (ପୃ.୧୩୪-୧୩୫)

'ଦୀପିକା' 'ଦର୍ପଣ'କୁ କେତେକ କ୍ଷେତ୍ରରେ ସମାଲୋଚନା କରୁଥିଲାବେଳେ 'ଦର୍ପଣ' ତାହାର ପ୍ରତ୍ୟେକଟି କଥାର ଉତ୍ତର ଦେଇ ମୁକାବିଲା କରୁଥିଲା । ତଥାପି କେତୋଟି ବିଷୟରେ ଏକ ପୁରାତନ ପତ୍ରିକା ହିସାବରେ 'ଦୀପିକା'ର ମନ୍ତବ୍ୟକୁ 'ଦର୍ପଣ' ଉପଦେଶତୁଲ୍ୟ ଜ୍ଞାନ କରୁଥିଲା । ଏଥିପାଇଁ 'ଦର୍ପଣ'ର ସ୍ୱୀକାରୋକ୍ତି ହେଉଛି–

ଦୀପିକା ପୁରାତନ ପତ୍ରିକା, ତାହାଙ୍କର ଉପଦେଶ ଆମ୍ଭମାନଙ୍କର ଶିରୋଧାର୍ଯ୍ୟ ଅଟେ; ମାତ୍ର ମତଭେଦ ଓ ରଚିଭେଦ ହେଲେ ଆମ୍ଭେମାନେ ଯେବେ ଆପଣା ରଚି ଓ ଆପଣା ମତର ପକ୍ଷପାତୀ ହେବୁଁ ଏମନ୍ତ ସ୍ଥଳରେ ଆମ୍ଭମାନଙ୍କୁ ଦୋଷୀ ମଣିବାକୁ କାହାରି ଅଧିକାର ନାହିଁ ।

ଏଥିରୁ ସ୍ପଷ୍ଟ ଜଣାପଡୁଛି ଯେ ପତ୍ରିକା ସମ୍ପାଦନା ଓ ବିଷୟ ନିର୍ବାଚନ କ୍ଷେତ୍ରରେ 'ଦର୍ପଣ'ର କେତେକ ସ୍ୱାଧୀନ ମତ ବା ରୁଚି ଥିଲା । କାରଣ ଏଭଳି ମନ୍ତବ୍ୟ ଆମେ ଅନେକ କ୍ଷେତ୍ରରେ ଦେଖିବାକୁ ପାଉଁ । ମୌଳିକ ସ୍ୱାଧୀନ ମତବ୍ୟକ୍ତ କ୍ଷେତ୍ରରେ 'ଦର୍ପଣ'ର ଏହା ନିଜସ୍ୱ ଦର୍ପ ବୋଲି କୁହାଯାଇପାରେ ।

## 'ଉତ୍କଳ ପୁତ୍ର'ର ଆଲୋଚନା

ଉତ୍କଳପୁତ୍ର ୧୮୭୩, ଏପ୍ରିଲ ୧୬ ତାରିଖ ବୁଧବାରଦିନ ପ୍ରଥମେ ପାକ୍ଷିକ ଭାବରେ କଟକରୁ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ସମ୍ପାଦନାରେ ପ୍ରକାଶ ପାଇଥିଲା । 'ଉତ୍କଳ ଦୀପିକା' ପରି ସମ୍ବାଦ ପରିବେଷଣ ଥିଲା ଏହାର ମୁଖ୍ୟ ଉଦ୍ଦେଶ୍ୟ ।

## ପତ୍ରିକାର ପ୍ରସାର

ଉକ୍ତ ପତ୍ରିକାର'ପ୍ରସାର ବିଷୟ ନେଇ 'ଦର୍ପଣ' ମତବ୍ୟକ୍ତ କରିଛି—

ଆମ୍ଭେମାନେ ଏହି ପତ୍ରଖଣ୍ଡି ଦେଖି ସନ୍ତୁଷ୍ଟ ହୋଇଅଛୁଁ । ଏହାର ମୂଲ୍ୟ ଅତି ଅଳ୍ପ, ସୁତରାଂ ଅନେକ ଗ୍ରାହକ ହୋଇ ପାରିବେ । ପତ୍ରିକାର ଉଦ୍ଦେଶ୍ୟ ଅତି ସତ୍ ଅଟେ, କିନ୍ତୁ ସେହି ଉଦ୍ଦେଶ୍ୟକୁ ସାଧିବାର ଅତି କଠିନ କର୍ମ । ଅର୍ଥ ବିଦ୍ୟା ଓ ହିତୈଷିତା ଏ ତିହ୍ନିଙ୍କର ସମବାୟ ନଥିଲେ ଯେ ଉଦ୍ଦେଶ୍ୟ ସହଜରେ ସଫଳ ହେବ ଏମନ୍ତ ଦିଶୁ ନାହିଁ । ସମ୍ପାଦକଙ୍କର ଯେ ନୈତିକ ସାହସ ଓ ଦେଶ ହିତୈଷିତା ଯଥେଷ୍ଟ ଅଛି ତାହା ତାହାଙ୍କର ଲେଖାହିଁ ପରିଚୟ ଦେଉଅଛି । (ପୃ.୧୩୫-୧୩୬)

## ନୂତନ ପତ୍ରିକା ପ୍ରକାଶନ ଓ ଗ୍ରାହକ

ବର୍ତ୍ତମାନ ଓଡ଼ିଆ ପତ୍ରିକାର ପାଠକ ଓ ଗ୍ରାହକଙ୍କ ସଂଖ୍ୟା ଯାହା ସେତେବେଳେ ମଧ୍ୟ ଠିକ ଏହିଭଳି ଥିଲା । 'ଉତ୍କଳପୁତ୍ର' ଭଳି ନୂତନ ସମ୍ବାଦପତ୍ରକୁ ସ୍ୱାଗତ କରିବା ଅବସରରେ ଓଡ଼ିଆ ସମ୍ବାଦପତ୍ରର ଗ୍ରାହକ ଓ ପାଠକ ସମସ୍ୟା ସମ୍ପର୍କରେ 'ଦର୍ପଣ' ଆଲୋଚନା କରିଛି । ଏ ବିଷୟରେ 'ଦର୍ପଣ' ଲେଖିଛି :

ବର୍ତ୍ତମାନ ଓଡ଼ିଶାର ଯେପରି ଅବସ୍ଥା ସେଥିରେ କେହି ଯେ ପତ୍ରିକା ବାହାର କରି କେବଳ ତାହା ଆୟ ପ୍ରତି ନିର୍ଭର କରି ଚଳିବେ ସେ ଆଶା ବୃଥା । ବର୍ତ୍ତମାନ ଓଡ଼ିଶାର ପତ୍ରିକାମାନଙ୍କର ଯେତେ ଗ୍ରାହକ ଦେଖାଯାନ୍ତି ସେମାନଙ୍କୁ ତିନିଶ୍ରେଣୀରେ ବିଭକ୍ତ କରାଯାଇ ପାରେ ।

୧ । ପତ୍ରିକା ପଢ଼ନ୍ତୁ ଅବା ନପଢ଼ନ୍ତୁ, କେବଳ ପତ୍ରିକାକୁ ଉତ୍ସାହ ଦେବା ନିମନ୍ତେ ଯେଉଁମାନେ ଗ୍ରାହକ ହୁଅନ୍ତି, ରାଜପୁରୁଷ ଓ ଅନ୍ୟାନ୍ୟ ବିଦ୍ୱାନ ଲୋକେ ଏହି ଶ୍ରେଣୀଭୁକ୍ତ ।

୨ । ଏହି ଶ୍ରେଣୀର ଲୋକମାନଙ୍କର ଉଦ୍ଦେଶ୍ୟ ମିଶ୍ର ଅଟେ । ଆପଣାର ଉପକାର ସାଧିବା ସଙ୍ଗେ ସଙ୍ଗେ ପତ୍ରିକାର ଉତ୍ସାହ ବଢ଼ାଇବାର ଏମାନଙ୍କର ଅଭିପ୍ରେତ । ଏମାନେ ଏମନ୍ତ ପଣ୍ଡିତ ନୁହନ୍ତି ଯେ ପତ୍ରିକାକୁ ତୁଚ୍ଛ ମଣିବେ ଅବା ଏମନ୍ତ ମୂର୍ଖ ନୁହନ୍ତି ଯେ ପତ୍ରିକା ବୁଝି ପାରିବେ ନାହିଁ ।

୩। ଏମାନେ ଲୋକମାନଙ୍କର ମନୋରକ୍ଷା ଅଥବା କର୍ତ୍ତୃପକ୍ଷୀୟର ଉପଦ୍ରବ ଭୟରେ ଗ୍ରାହକ ହୁଅନ୍ତି। ପତ୍ରିକା ଏମାନଙ୍କ ପାଖକୁ ଯାଏ, ମାତ୍ର ମୁତ୍‌ଫରକା କାଗଜ ପରି ଆଲିମାଲିକା ପାଛିୟାରେ ପଡ଼େ, କେହି ତାହା ପଢ଼ନ୍ତି ନାହିଁ। ଅଧିକାଂଶ ଗଡ଼ଜାତର ରାଜା ଓ ବଡ଼ ବଡ଼ ଜମିଦାର ଏହି ଶ୍ରେଣୀଭୁକ୍ତ ଅଟନ୍ତି। ଏମାନେ ପତ୍ରିକାର ମୂଲ୍ୟକୁ ଟେକ୍‌ସ ବିଶେଷ ଜାଣି ବିରକ୍ତ ଭାବରେ ଦିଅନ୍ତି। ଦ୍ୱିତୀୟ ଶ୍ରେଣୀର ଗ୍ରାହକମାନଙ୍କଠାରୁ କିଞ୍ଚିତ୍ ଲାଭ ହୁଏ ସତ୍ୟ କିନ୍ତୁ ତାହା ଦୀର୍ଘକାଳ ସ୍ଥାୟୀ ନୁହେଁ।

ପ୍ରଥମ ଶ୍ରେଣୀର ଗ୍ରାହକଠାରୁ ଯେ କିଛି ଅଧିକ ଅର୍ଥ ମିଳେ ଏମନ୍ତ ନୁହେଁ, କେବଳ ସେମାନେ ଗ୍ରାହକ ହେଲେ ସାଧାରଣକୁ ତାହା ଦ୍ୱାରା ଯେଉଁ ସୁଦୃଷ୍ଟାନ୍ତ ପ୍ରଦର୍ଶିତ ହୁଏ ତାହାର ମୂଲ୍ୟ ଅଧିକ। ଯେଉଁ ପତ୍ରିକା ଅଧିକାଂଶ ଦ୍ୱିତୀୟ ଶ୍ରେଣୀରୁ ଗ୍ରାହକ ପାଇପାରନ୍ତି, ସେହି ପତ୍ରିକା ଦୀର୍ଘାୟୁ ହେବାର ସମ୍ଭାବନା। ଆମ୍ଭେମାନେ ଈଶ୍ୱରଙ୍କଠାରେ ପ୍ରାର୍ଥନା କରୁଅଛୁଁ ଉତ୍କଳ ପୁତ୍ର ବହୁ ସଂଖ୍ୟକ ୨ୟ ଶ୍ରେଣୀ ଗ୍ରାହକ ପାଉନ୍ତୁ। (ପୃ.୧୩୫-୧୩୬)

## ପତ୍ରିକାର ରଚନା ଓ ଭାଷା ପ୍ରସଙ୍ଗ

'ଉତ୍କଳ ପୁତ୍ର'ର ରଚନା ଓ ଭାଷା ପ୍ରସଙ୍ଗରେ ଦର୍ପଣ ଲେଖିଛି :

ରଚନା ମଧ ସାଧାରଣଙ୍କର ବୋଧଗମ୍ୟ ଅଟେ ଯେବେହେଁ ଭାଷା ଆଜିଯାଏଁ ସମ୍ପୂର୍ଣ୍ଣ ବିଶଦ ହୋଇନାହିଁ ତଥାଚ ଅଭ୍ୟାସରୁ ଯେ ଶୀଘ୍ର ତାହା ହେବ ତାହାର ପରିଚୟ ମିଳୁଅଛି . . .

ପତ୍ରିକାର ଭାଷା କୌଣସି କୌଣସି ସ୍ଥଳରେ ଅତ୍ୟନ୍ତ ଉଦ୍ଧତ, ଏପରି ଉଦ୍ଧତ ଭାଷା ସାଧାରଣର ଆନୁକୂଲ୍ୟଲିପ୍‌ସୁ ନବୀନ ସମ୍ପାଦକଙ୍କୁ ଶୋଭନୀୟ ନୁହେ। ଭଦ୍ର ଗାଳିର ଭାଷା ନମ୍ର ହେବାର ଉଚିତ। ଯେତେ ଚିକ୍‌କଣ ଓ ମାର୍ଜ୍ଜିତ ହେବ ସେହି ପରିମାଣରେ ତାହାର କାଟ ବେଶି ହେବ। (ପୃ.୧୩୬-୧୩୮)

## ପତ୍ରିକାର ଦୋଷଗୁଣ ପର୍ଯ୍ୟାଲୋଚନା

ଉକ୍ତ ପତ୍ରିକାର ଦୋଷଗୁଣ ବିଚାର ପ୍ରସଙ୍ଗରେ ଦର୍ପଣ ଅନେକ ସୁଚିନ୍ତିତ ମନ୍ତବ୍ୟ ଦେଇଛି, ତାହା ହେଉଛି...

ଆମ୍ଭେମାନେ ପତ୍ରିକାର ସମାଲୋଚନା କରୁଅଛୁଁ। ଆମ୍ଭମାନଙ୍କ ଜଣିବାରେ ପତ୍ରିକାରେ ଯେଉଁଯେଉଁ ସ୍ଥାନମାନଙ୍କରେ ଦୋଷ ଅଛି ତାହା ସଂକ୍ଷେପରେ ଦେଖାଉଅଛୁଁ। ସମ୍ପାଦକ ଏଥିରେ ଯେବେ ବିରକ୍ତ ହେବେ ତେବେ ତାହାଙ୍କର

ସ୍ମରିବାର ଉଚିତ ଯେ, ତାହାଙ୍କୁ ବିରକ୍ତ କରିବାର କ୍ଷମତା ସେ ସ୍ୱୟଂ ଆମ୍ଭ ହାତକୁ ଦେଇ ଅଛନ୍ତି ।...

କୌଣସି ପଦାର୍ଥର ଦୋଷ ଅଛି କି ନାହିଁ ଏହି ଅନୁସନ୍ଧାନ ହିଁ ପ୍ରକାରାନ୍ତରେ ତାହାର ଉତ୍କର୍ଷ ପ୍ରତିପାଦକ ଅଟେ । ଆଲୋଚ୍ୟ ପତ୍ରିକାରେ ଗୁଣର ଭାଗ ଅଧିକ ଅଛି । ଯେଉଁ ଦୋଷ ଅଛି ତାହା ନବୀନତା ସୁଲଭ ଏବଂ କାଳରେ ସଂଶୋଧିତ ହେବ । ଆମ୍ଭେମାନେ ପାଠକମାନଙ୍କୁ ଅନୁରୋଧ କରୁଅଛୁଁ ସମସ୍ତେ ଖଣ୍ଡେ ଖଣ୍ଡେ ନେଇ ପତ୍ରର ଉତ୍ସାହ ବୃଦ୍ଧି କରନ୍ତୁ । (ପୃ.୧୩୭-୧୩୯)

ଉପରୋକ୍ତ ଭାବରେ 'ଉତ୍କଳ ଦର୍ପଣ' ବିଭିନ୍ନ ପତ୍ରିକା ଉପରେ ନିଜର ସ୍ୱାଧୀନ ମତବ୍ୟକ୍ତ କରିବା ଅବସରରେ ଓଡ଼ିଆ ପତ୍ରିକା ଓ ପାଠକ, ସାହିତ୍ୟ ଓ ଭାଷା, ସମ୍ପାଦକ ଓ ଗ୍ରାହକ ମାନଙ୍କ ବିଷୟରେ ଅନେକ ଉପାଦେୟ ଓ ବାସ୍ତବ କଥା ଉଲ୍ଲେଖ କରିଛି । ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ଉନ୍ମେଷ କାଳରେ 'ଉତ୍କଳ ଦର୍ପଣ' ପତ୍ରିକା ଏହି ଜାତି ଓ ଜାତୀୟ ସାହିତ୍ୟର ପ୍ରତିନିଧିତ୍ୱ କରି ଯେଉଁ ନୂତନ ଦିଗ୍‌ଦର୍ଶନ ଦେଇଥିଲା, ତାହା ଆଜି ଏକବିଂଶ ଶତକରେ ମଧ୍ୟ ପ୍ରାସଙ୍ଗିକ ।

## ପ୍ରେରିତ ପତ୍ର

'ଉତ୍କଳ ଦର୍ପଣ'ର ବିଭିନ୍ନ ସଂଖ୍ୟାରେ 'ପ୍ରେରିତ ପତ୍ର' ଶୀର୍ଷକରେ କେତେଗୁଡ଼ିଏ ରଚନା ସ୍ଥାନିତ । 'ପ୍ରେରିତ ପତ୍ର' ସ୍ତମ୍ଭରେ ଓଡ଼ିଶାର ସାହିତ୍ୟ, ସଂସ୍କୃତି, ଶିଳ୍ପ, ବାଣିଜ୍ୟ, ଶିକ୍ଷା ତଥା ସାମାଜିକ ରୀତିନୀତି, ଆଚାର ବ୍ୟବହାର ବିବିଧ ବିଷୟ ଆଲୋଚିତ । ପତ୍ରିକା ସମ୍ପାଦକଙ୍କ ସହିତ ସାହିତ୍ୟ ଅନୁରାଗୀ, ହିତାକାଂକ୍ଷୀ ବ୍ୟକ୍ତିମାନଙ୍କର ପତ୍ରବିନିମୟ ଫଳରେ ପରସ୍ପର ମଧ୍ୟରେ ସ୍ୱାଧୀନ ମନ୍ତବ୍ୟ, ଆଲୋଚନା ତଥା ଭାବବିନିମୟର ପୂର୍ଣ୍ଣ ସୁଯୋଗ ଘଟିଛି । ପତ୍ରିକା-ସମ୍ପାଦକଙ୍କୁ ପତ୍ରପ୍ରେରକ ପତ୍ରଦ୍ୱାରା ଲେଖିଛନ୍ତି :

ଆପଣ ନୂଆ ସମ୍ପାଦକ । ଆପଣଙ୍କର ଦୋଷଗୁଣ ଅବଧି ଭଲ ରୂପରେ ଜାଣିନାହୁଁ । ଅନେକ ସମ୍ପାଦକଙ୍କର ଏପରି ରୀତି ଯେ, ଯାହା ସଙ୍ଗେ ପରିଚୟ ନାହିଁ, ବନ୍ଧୁତା ନାହିଁ, ଏପରି ଲୋକର ରଚନା ନିଜ ପତ୍ରସ୍ଥ କରନ୍ତି ନାହିଁ । କେହି କେହି ସମ୍ପାଦକ ନିଜ ଗ୍ରାମବାସୀମାନଙ୍କର ପତ୍ର ବ୍ୟତୀତ ଅନ୍ୟ ପତ୍ରରେ କଟାକ୍ଷପାତ କରନ୍ତି ନାହିଁ । (ପୃ.୮୪-୮୫)

ଆଉ ଜଣେ ପତ୍ରପ୍ରେରକ ଅନ୍ୟ ପତ୍ରରେ ଲେଖିଛନ୍ତି, ''ସମ୍ପାଦକ ମହାଶୟ ! ଶିରୋନାମାଙ୍କିତ ବିଷୟଟି ମାଦୃଶ ଥିବ ଲେଖକ ପକ୍ଷରେ ଅତିଶୟ ଅସମସାହସିକ ଚେଷ୍ଟା ହେଲେ ସୁଦ୍ଧା ଏ ବିଷୟରେ ଯତ୍‌କିଞ୍ଚିତ୍ ଯାହା ଲେଖୁଅଛି, ତାହା ଆପଣଙ୍କ ପତ୍ରିକାରେ ସ୍ଥାନ ପାଇଲେ ଅତିଶୟ କୃତାର୍ଥମ୍ମନ୍ୟ ହେବୁଁ ।''(ପୃ.୨୦୯) ଏଭଳି

ଲେଖାରେ ପତ୍ରିକା-ସମ୍ପାଦକ ପତ୍ର-ପ୍ରେରକଙ୍କ ପ୍ରତି ବୈରୀଭାବ ପୋଷଣ ପରିବର୍ତ୍ତେ ବରଂ ଶୁଭେଚ୍ଛୁ ବନ୍ଧୁ ଦୃଷ୍ଟିରୁ ଖୁବ୍ ଆଗ୍ରହର ସହିତ ଏସବୁ ପତ୍ରକୁ ପତ୍ରିକାସ୍ଥ କରିଥାନ୍ତି । ମାତ୍ର ପ୍ରଥମ ପତ୍ରପ୍ରେରକଙ୍କ ଲିଖିତ ମନ୍ତବ୍ୟରେ ଅନେକ ସମ୍ପାଦକ କ୍ଷୁଣ୍ଣ ହେବା ସ୍ୱାଭାବିକ । ତଥାପି ଜଣେ ସାଧାରଣ ପତ୍ରପ୍ରେରକ ସମ୍ପାଦକଙ୍କ ସମ୍ପର୍କରେ ଏଭଳି ମନ୍ତବ୍ୟ ଦେବା ଓ ସଂପାଦକ ସେହି ପତ୍ରକୁ ପତ୍ରିକାରେ ସ୍ଥାନଦେବା ସ୍ପଷ୍ଟବାଦିତା ଓ ଉଦାରତାର ପରିଚୟ ବହନକରେ ।

ପ୍ରେରିତ ପତ୍ରର ଆଲୋଚନା ବା ବକ୍ତବ୍ୟଗୁଡ଼ିକ ନିଶ୍ଚିତ ଭାବରେ ସୁଚିନ୍ତିତ, ଯୁକ୍ତିସଙ୍ଗତ, ଯୁଗୋପଯୋଗୀ – ଯାହା ସମକାଳୀନ ସମାଜ, ସାହିତ୍ୟ, ସଂସ୍କୃତି, ଆଚାର ଆଦିର ବିଶ୍ଳେଷଣ । ଅନେକ କ୍ଷେତ୍ରରେ ସମ୍ପାଦକ ନିଜେ ପତ୍ରିକାର ପତ୍ରପ୍ରେରକ ଭୂମିକା ଗ୍ରହଣ କରି ମତ ବ୍ୟକ୍ତି କରିଥାନ୍ତି । ପତ୍ରପ୍ରେରକଙ୍କ ଉକ୍ତି – ''କେହି କେହି ସମ୍ପାଦକ ସ୍ୱୟଂ ନିଜ ପତ୍ରିକାରେ ପତ୍ର ପ୍ରେରକ ରୂପେ ଅବତୀର୍ଣ୍ଣ ହୁଅନ୍ତି । ତେଣୁ ପତ୍ରିକାରେ ଅନ୍ୟ ଲୋକ ସ୍ଥାନ ପାଇପାରନ୍ତି ନାହିଁ ।''(ପୃ.୮୫) – ସମ୍ପାଦକମାନଙ୍କ ଏଭଳି କାର୍ଯ୍ୟ ସଂପର୍କରେ ଇଙ୍ଗିତ ପ୍ରଦାନ କରେ । ସାହିତ୍ୟପତ୍ରିକାରେ ଏଭଳି ବିଷୟ ଜାଣିଶୁଣି ସମ୍ପାଦକ ପତ୍ରସ୍ଥ କରିଥାନ୍ତି । ଏହାଦ୍ୱାରା ପତ୍ରିକାର ପାଠକ ଓ ସମ୍ପାଦକଙ୍କ ମଧ୍ୟରେ ଘନିଷ୍ଠ ଯୋଗସୂତ୍ର ସ୍ଥାପିତ ହେବା ସହିତ ତଦ୍‌ବିଷୟରେ ପୂର୍ଣ୍ଣାଙ୍ଗ ଆଲୋଚନା ସମ୍ଭବ ହୋଇପାରେ । ଫଳରେ ସଚେତନ ପାଠକଗୋଷ୍ଠୀ ଆଲୋଚ୍ୟ ବିଷୟରେ ଜ୍ଞାନ ଲାଭ କରିବା ସଙ୍ଗେ ସଙ୍ଗେ ପତ୍ରିକାପାଠ ପ୍ରତି ଆଗ୍ରହ ପ୍ରକାଶ କରନ୍ତି । କୌଣସି ପତ୍ରପ୍ରେରକଙ୍କ ଏ ସମ୍ବନ୍ଧରେ ଉକ୍ତି ହେଉଛି, ''ମାତ୍ର ଏପରି ଲଘୁ ବିଷୟମାନ ପତ୍ରରେ ଥିବାର ବିହିତ । ସ୍କୁଲରେ ପଣ୍ଡିତ ମହାଶୟଙ୍କ ଘଣ୍ଟା ଯେବେ ନ ଥାଆନ୍ତା ଛାତ୍ରମାନଙ୍କର ଧୈର୍ଯ୍ୟ ଲୋପ ହୁଅନ୍ତା । ସମ୍ବାଦପତ୍ରରେ ଲଘୁ ବିଷୟ ଯେବେ ନ ଥିବ ନିରବଚ୍ଛିନ୍ନ ଗୁରୁ ପ୍ରସ୍ତାବମାନ ପଢ଼ି ପାଠକେ ବିରକ୍ତ ହେବେ ।'' (ପୃ.୮୫) ଯାତ୍ରାର ଡୁଏଟ୍, ନାଟକର ଲଘୁହାସ୍ୟ ଓ ସିନେମାର ବିଜ୍ଞାପନ ପରି ଏହାକୁ ସମ୍ପୂର୍ଣ୍ଣ ରୂପେ ବାଦ୍ ଦିଆଯାଇପାରିବ ନାହିଁ । ବରଂ ଭାତ ସହିତ ମହାଭାତ (ମହାପ୍ରସାଦ) ପରି ଗୁରୁ ସହି ଲଘୁ ମିଶାମିଶି ହୋଇ ରହିବ । ଏଭଳି ଲଘୁ ପ୍ରସଙ୍ଗକୁ ଆଲୋଚନା ନ କହି ବ୍ୟଙ୍ଗାତ୍ମକ ରଚନା କୁହାଯାଇପାରେ ।

ଏଭଳି ପ୍ରେରିତ ପତ୍ର 'ଉତ୍କଳ ଦର୍ପଣ'ର ପ୍ରଥମ ବର୍ଷରେ ତିନୋଟି ଦେଖିବାକୁ ମିଳେ । ପ୍ରଥମ ପ୍ରେରିତପତ୍ରଟି (ଭଦରକ, ତା୧୪।୩।୭୩) 'ଶ୍ରୀ' ଛଦ୍ମନାମଧାରୀ କୌଣସି ସାହିତ୍ୟାନୁରାଗୀ, ଦ୍ୱିତୀୟ ପ୍ରେରିତପତ୍ରଟି (ବାଲେଶ୍ୱର, ୧୫ ତାରିଖ, ଅଗଷ୍ଟ ୧୮୭୩ ସାଲ) କୌଣସି ସ୍ୱାଧୀନ ବକ୍ତା ଏବଂ ତୃତୀୟ ପ୍ରେରିତପତ୍ରଟି (ଭଦ୍ରଖ, ତା୧୩।୮।୧୮୭୩) 'ଶ୍ରୀ' ଛଦ୍ମ ନାମଧାରୀ କୌଣସି ଚିରହିତାକାଂକ୍ଷୀ ଲେଖିଛନ୍ତି । ଏଥିରେ ଆଲୋଚିତ ବିଷୟବସ୍ତୁ ନିମ୍ନରେ ଆଲୋଚନା କରାଗଲା ।

## ପ୍ରଥମ ପ୍ରେରିତପତ୍ର

ଉପରୋକ୍ତ ତିନୋଟି ପ୍ରେରିତ ପତ୍ର ମଧ୍ୟରୁ ପ୍ରଥମ ପ୍ରେରିତପତ୍ରଟି ଡିମାଇ ସାଇଜ୍ ପତ୍ରିକାରେ ସାଢ଼େ ନଅପୃଷ୍ଠା (ପୃ. ୮୪-୯୩) ଅଧିକାର କରିଛି । ଏହି ପତ୍ରଟି ଯେଭଳି ଦୀର୍ଘ ସେହିଭଳି ଉପାଦେୟ । ଭଦ୍ରକର ପତ୍ରପ୍ରେରକଙ୍କ କୌଣସି ନବୀନ ବନ୍ଧୁ ଲେଖକ ହେବାର ବାସନା ପୋଷଣ କରି ପତ୍ରପ୍ରେରକଙ୍କଠାରୁ ଯେଉଁ ଉପଦେଶ ଚାହିଁଥିଲେ ଏବଂ ତାହାର ଉତ୍ତର ସେ ଯାହା ଦେଇଥିଲେ, ତାହା ହିଁ ସମ୍ପାଦକଙ୍କୁ ଲେଖିଥିଲେ :

> ତୁମ୍ଭେ ଯେ ଲେଖକ ହେବାକୁ ବ୍ରତୀ ହୋଇଅଛ, ଏ ସମ୍ବାଦ ମୋହର ବଡ଼ ପ୍ରୀତିକର ଅଟେ । ମୋହର ଏକାନ୍ତ ବାଞ୍ଛା ତୁମକୁ ଶୀଘ୍ର ଲବ୍ଧପ୍ରତିଷ୍ଠ ଦେଖିବି । ମୋତେ ଉପଦେଶ ପ୍ରାର୍ଥନା କରିଅଛ । ମୁଁ ସେ ବିଷୟରେ ସ୍ୱୟଂପଟୁ ନୁହେଁ; ମାତ୍ର ଦେଶର ରୀତି ଗତି ଦେଖି ଯାହା ଜ୍ଞାତ ହୋଇଅଛି ତଦନୁଯାୟୀ ତୁମ୍ଭର ମଙ୍ଗଳ ଓ ଉତ୍କର୍ଷ ସାଧନ ନିମନ୍ତେ ନିମ୍ନ କଥାଗୁଡ଼ିକ ଲେଖୁଅଛି । ସେ କଥାଗୁଡ଼ିକ ଅନୁସରି ଚଳିଲେ ୧୦ ବର୍ଷର ଖ୍ୟାତି ବର୍ଷକରେ ମିଳିବ । (ପୃ.୮୫-୮୬)

ତା'ଛଡ଼ା ବିଭିନ୍ନ ବିଷୟରେ ସତର୍କତା ଅବଲମ୍ବନ କରିବାପାଇଁ ପତ୍ରପ୍ରେରକ ଉପଦେଶମାନ ପ୍ରଦାନ କରିଥିଲେ ।

ଆଧୁନିକ ଯୁଗର ଉଷାକାଳରେ ଓଡ଼ିଶାର ଶିକ୍ଷିତ ବିଦ୍ୱାନ ସଂଖ୍ୟାରେ ଯେଭଳି କମ୍ ଥିଲେ, ସେଭଳି ଲେଖକ ସଂଖ୍ୟାରେ ଥିଲେ ମୁଷ୍ଟିମେୟ । ଫଳରେ ମାତୃଭାଷାରେ ପାଠ୍ୟପୁସ୍ତକଠାରୁ ଆରମ୍ଭ କରି ବିବିଧ ପୁସ୍ତକର ଘୋର ଅଭାବ ଥିଲା । ଏହି ଅଭାବ ଉପଲବ୍ଧି କରି ଯେଉଁ ନବୀନ ଲେଖକଗୋଷ୍ଠୀ ଅର୍ଥ ଓ ପ୍ରତିଷ୍ଠା ଆଶାରେ ମାତୃଭାଷାରେ ପୁସ୍ତକ ରଚନାଦିରେ ପ୍ରବୃତ୍ତ ଥିଲେ, ସେଥିରେ ସେମାନଙ୍କୁ ସାମୟିକ ପ୍ରତିଷ୍ଠା ବା ଖ୍ୟାତି ମିଳୁଥିଲା । ପରନ୍ତୁ ଅନେକ ନବୀନ ଲେଖକଙ୍କର ଅପରିଣତ ହସ୍ତ ରଚନାପାଇଁ ସେମାନେ ଅନେକ ଭାବରେ ସମାଲୋଚନାର ଶରବ୍ୟ ହୋଇଥିଲେ । ଏହିସବୁ ଦୃଷ୍ଟିରୁ ପତ୍ରପ୍ରେରକ ମହାଶୟଙ୍କ ସ୍ୱୀୟ ଅନୁଭୂତିବ୍ୟଞ୍ଜକ ଉପଦେଶାବଳୀ ନବୀନ ଲେଖକ ଗୋଷ୍ଠୀଙ୍କୁ ଯଥେଷ୍ଟ ସଚେତନ କରାଇଥିଲା ତଥା ସେମାନଙ୍କ ଭବିଷ୍ୟତ ଲେଖକ ଜୀବନକୁ ବହୁ ଭାବରେ ସଂଯତ ଓ ଶୃଙ୍ଖଳିତ କରି ସେମାନଙ୍କ ହିତ ସାଧନରେ ସହାୟକ ହୋଇପାରିଥିଲା ।

ନବୀନ ଲେଖକଗୋଷ୍ଠୀ ଏକାବେଳକେ ପୁସ୍ତକରଚନାରୁ ନିବୃତ୍ତ ରହି ସମ୍ବାଦପତ୍ରରେ ବା ପତ୍ରିକାଦିରେ ପ୍ରବନ୍ଧ ଲେଖିବା; କାହାରି ପ୍ରଶଂସା ପରିବର୍ତ୍ତେ ଚରିତ୍ର ଆକ୍ରମଣଧର୍ମୀ ଗ୍ଲାନିସୂଚକ ପ୍ରବନ୍ଧ ରଚନା କରିବା; ପ୍ରବନ୍ଧରେ ଦେଶ, ଜାତି, ସଭ୍ୟତା ତଥା ମାତୃଭାଷାହିତୈଷୀ ମହାନୁଭବ ପ୍ରକରଣ କରିବା; ଲେଖକର ନାମ ଅଜ୍ଞାତ ରଖିବା; ନିଜକୁ ବହୁ କଷ୍ଟସାଧ୍ୟ ଇଂରେଜୀ ଓ ସଂସ୍କୃତ ଭାଷାରେ ଜ୍ଞାନୀର ପରିଚୟ ଦେଇ ସ୍ଥଳ

ବିଶେଷରେ ଇଂରାଜୀ କିମ୍ବା ସଂସ୍କୃତ ଶ୍ଲୋକଗୁଡ଼ିକୁ ସନ୍ନିବେଶ କରି ନିଜସ୍ୱ ଟୀକା ଦେବା ପ୍ରସଙ୍ଗତଃ ଇଂରାଜୀ କବିମାନଙ୍କର ନାମୋଲ୍ଲେଖ କରିବା ଏବଂ ସମୟକ୍ରମେ ନିଜର ଅଜ୍ଞତାଜନିତ ନିର୍ଲ୍ଲଜତା ପାଇଁ ଆତ୍ମସମର୍ଥନ ମୂଳକ ଯୁକ୍ତିବାଢ଼ିବା; ଗ୍ରନ୍ଥକାରଙ୍କ ଗ୍ରନ୍ଥର ସମାଲୋଚନା ପ୍ରଣାଳୀ, ଉତ୍କଳର ଅତୀତ ବିଭବ, ଗୌରବ ପ୍ରତି ଶ୍ରଦ୍ଧା ବା ପ୍ରଶଂସା ତଥା ବର୍ତ୍ତମାନ ପ୍ରତି ନିନ୍ଦାଭାବ ପୋଷଣ କରି ବିଜ୍ଞତାର ପରିଚୟ ଦେବା; ବଙ୍ଗୀୟ ଶିକ୍ଷକମାନଙ୍କ ପ୍ରତି ବିଦ୍ୱେଷଭାବ ଆଣିବା; ବଙ୍ଗଳା ପୁସ୍ତକକୁ ଓଡ଼ିଆ ଅନୁବାଦବେଳେ କଚେରୀ ଓଡ଼ିଆ ଶବ୍ଦର ବ୍ୟବହାର ଫଳରେ ଉକ୍ତ ପୁସ୍ତକର ଭାଷା ବିଶୁଦ୍ଧ ବା ମାର୍ଜିତ ଓଡ଼ିଆ ହୋଇପାରିବ ବୋଲି ସାଧାରଣ ଧାରଣା ସୃଷ୍ଟିକରିବା, ବିବିଧ ଓଡ଼ିଆ ଶବ୍ଦାବଳୀର ଅପଭ୍ରଂଶଗତ ବିକୃତ ବ୍ୟବହାର କରିବା; ଅନୂଦିତ ପୁସ୍ତକର ଭୂମିକାରେ ବହୁ ଆଡ଼ମ୍ବରପୂର୍ଣ୍ଣ ସ୍ୱକୀୟ ସ୍ୱାର୍ଥଶୂନ୍ୟତା ଓ ବିନମ୍ରତାର ସ୍ୱୀକାରୋକ୍ତି କରିବା ତଥା ପାଠକମାନଙ୍କଠାରୁ କ୍ଷମାପ୍ରାର୍ଥନା ମାଗିବା; ଭୂମିକାରେ ପ୍ରଚଳିତ ଶିକ୍ଷା ପ୍ରଣାଳୀ ଉପରେ ଦୋଷାରୋପ କରିବା ଏବଂ ସେହି ପ୍ରସଙ୍ଗରେ ଶିକ୍ଷକମାନଙ୍କୁ ଦୁଇ ଚାରିପଦ କଟୂକ୍ତି ତଥା ନିଜସ୍ୱ ମନ୍ତବ୍ୟ ସହିତ ନିଜର ପୂରା ଠିକଣାଦ୍ୱାରା ସ୍ୱଗ୍ରାମର ମହତ୍ତ୍ୱ ପ୍ରତିପାଦନ କରିବା; ବିବିଧ ରାଗରାଗିଣୀଯୁକ୍ତ ଛନ୍ଦବଦ୍ଧ ମିତ୍ରାକ୍ଷର କବିତା ରଚନା ପ୍ରତି ଆଗ୍ରହ ଓ ଅମିତ୍ରାକ୍ଷର କବିତା ପ୍ରତି ବିମୁଖଭାବ ପ୍ରଦର୍ଶନ କରିବା; ନବୀନ କବିମାନେ ପ୍ରଥମେ ଆଦିରସଯୁକ୍ତ ଚୌପଦୀ ରଚନାରେ ବ୍ୟାପୃତ ହୋଇ ସେହି ଜାତୀୟ ଶବ୍ଦର ସଂଯୋଜନା କରିବା; ବ୍ୟାକରଣ ନିୟମ ଲଙ୍ଘନ ସହିତ ବର୍ଣ୍ଣନୀୟ ମୁଖ୍ୟ ବିଷୟବସ୍ତୁକୁ ଗୌଣ କରି (ପର୍ବତ, ସନ୍ଧ୍ୟା, ବସନ୍ତ, ପ୍ରଭାତ, ରୂପବର୍ଣ୍ଣନା) ଅନ୍ୟାନ୍ୟ ବିଷୟକୁ ମୁଖ୍ୟ ଭାବରେ ବର୍ଣ୍ଣନା କରିବା ସହିତ ବହୁ କ୍ଲିଷ୍ଟ ଶବ୍ଦାବଳୀ ବ୍ୟବହାର କରି ପାଠକମାନଙ୍କୁ ଅର୍ଥଗତ ବୋଧଗମ୍ୟତା ପାଇଁ ଅଯଥା ଅସୁବିଧାର ସମ୍ମୁଖୀନ କରାଇବା ଆଦି ବିବିଧ ବିଷୟ ଆଲୋଚିତ । ଉପରୋକ୍ତ ବ୍ୟଙ୍ଗାତ୍ମକ ତଥା ସମାଲୋଚନାଧର୍ମୀ ମନ୍ତବ୍ୟଗୁଡ଼ିକର ଦୃଷ୍ଟାନ୍ତ ସ୍ୱରୂପ ଗ୍ରନ୍ଥକାରଙ୍କ ଗ୍ରନ୍ଥର ସମାଲୋଚନା ପ୍ରସଙ୍ଗରେ ପତ୍ରପ୍ରେରକ ମହାଶୟ ଲେଖିଛନ୍ତି :

> ଯେଉଁ ଗ୍ରନ୍ଥକାରଙ୍କ ଗ୍ରନ୍ଥର ସମାଲୋଚନା କରିବ ତାହାଙ୍କୁ ନବଲେଖକ ଶ୍ରେଣୀରେ ଅନ୍ତର୍ଭୁକ୍ତ କରି ବିଦ୍ରୂପ କରିବ । ଅନ୍ୟକୁ ନବ୍ୟ ବୋଇଲେ ତୁମ୍ଭେ ପ୍ରାଚୀନତ୍ୱର ଅତଏବ ପ୍ରବୀଣତ୍ୱର ଖ୍ୟାତିକୁ ଲଭିବ । ସେହି ସୁବିଧାରେ ବାଲେଶ୍ୱରର ଗ୍ରନ୍ଥକାରମାନଙ୍କୁ ନିନ୍ଦା କରିବ, ପୁସ୍ତକର ସମାଲୋଚନାବେଳେ ନିରବଚ୍ଛିନ୍ନ ନିନ୍ଦା ଲେଖିବ ନାହିଁ । ହେତୁକି ତେମନ୍ତ କଲେ ଲୋକେ ତୁମ୍ଭଙ୍କୁ ବିଦ୍ୱେଷୀ ବୋଲିବେ । ମାତ୍ର ନିନ୍ଦା ସହିତରେ ପ୍ରଶଂସା ମିଶାଇଲେ ଲୋକେ ତୁମ୍ଭଙ୍କୁ ନିରପେକ୍ଷ ବୋଲିବେ ।

ପ୍ରଥମରେ ପ୍ରଶଂସା କଲେ ସମସ୍ତେ ପାଞ୍ଚିବେ ଯେ, କାହାର ଅନିଷ୍ଟ ଆଚରିବା ତୁମ୍ଭର ଅଭିପ୍ରେତ ନୁହେଁ । ପଛକୁ ନିନ୍ଦା କରିବ, ଆଉ ସେହି ନିନ୍ଦା ଅନିଚ୍ଛାପୂର୍ବକ ଅଗତ୍ୟା ଏହିପରି ଛଳ କରିବ । ସମାଲୋଚନା ଏମନ୍ତ ଭଙ୍ଗୀରେ ଲେଖିବ ଯେ, ଏକା ତୁମ୍ଭେ ଲେଖନୀ ଧାରଣ କଲେ ଉତ୍କଳର ସମଗ୍ର ଅଭାବ ନିରାକୃତ ହେବ, କେବଳ ତୁମ୍ଭେ ଲେଖିଲେ ଉତ୍କଳର ପ୍ରକୃତ ଉପକାର ହେବ । (ପୃ.୮୮-୮୯)

ବିଶେଷକରି ବାଲେଶ୍ୱର ଗ୍ରନ୍ଥକାରଙ୍କୁ ନିନ୍ଦା କରିବା ଉଦ୍ଦେଶ୍ୟ, ସେତେବେଳେ ଓଡ଼ିଶାରେ ବିଶେଷକରି ବାଲେଶ୍ୱରରେ ହିଁ ଏକ ଶିକ୍ଷିତ ମଧ୍ୟବିତ୍ତ ଗୋଷ୍ଠୀର ଅଭ୍ୟୁଦୟ ଘଟିଥିଲା, ଯେଉଁମାନେ ଓଡ଼ିଆରେ ପାଠ୍ୟପୁସ୍ତକର ଘୋର ଅଭାବ ଉପଲବ୍ଧି କରି ପାଠ୍ୟପୁସ୍ତକ ରଚନା କ୍ଷେତ୍ରରେ ଲାଗିପଡ଼ିଥିଲେ । ଏକେତ ଉତ୍ତମ ପାଠ୍ୟପୁସ୍ତକ ରଚନାରେ ସାମାଜିକ ପ୍ରତିଷ୍ଠା ବୃଦ୍ଧି ପାଉଥିଲା, ତା' ସହିତ ନିଜର ଆର୍ଥିକ ଅଭିବୃଦ୍ଧି ଘଟୁଥିଲା । ଓଡ଼ିଶାର ଅନ୍ୟାନ୍ୟ ସ୍ଥାନ ଅପେକ୍ଷା ପ୍ରଥମେ ବାଲେଶ୍ୱରରେ ହିଁ ସର୍ବାଧିକ ପାଠ୍ୟପୁସ୍ତକ ଲେଖକ ସୃଷ୍ଟି ହୋଇଥିଲେ ।

ସେହିଭଳି କୌଣସି ବଙ୍ଗଳା ଗ୍ରନ୍ଥକୁ ଓଡ଼ିଆରେ ଅନୁବାଦବେଳେ କଚେରିଆ ବିଶୁଦ୍ଧ ଓଡ଼ିଆ ଭାଷାର ପ୍ରୟୋଗ ପ୍ରସଙ୍ଗରେ ପତ୍ରପ୍ରେରକ ମହାଶୟ ଲେଖିଛନ୍ତି :

ବିଶୁଦ୍ଧ ଉଡ଼ିୟା ଲେଖିବାର ତୁମ୍ଭର ଯେବେ ଇଚ୍ଛାଥିବ କଚେରିର କାଗଜାତ ପଢ଼ିଲେ ସେ ବିଷୟରେ ଶୀଘ୍ର ପଟୁତା ଲଭିବ । ସାଧାରଣ ଏହି ସଂସ୍କାର ଯେ ବଙ୍ଗଳାରୁ ଉଡ଼ିୟା ଭାଷା ଯେ ପରିମାଣରେ ବିସଦୃଶ ହେବ ସେ ଉଡ଼ିୟା ସେହି ପରିମାଣରେ ବିଶୁଦ୍ଧ ଅଟେ । ସାଧୁ ବଙ୍ଗଭାଷାକୁ ସାଧୁ ଉତ୍କଳଭାଷାରେ ଅନୁବାଦ କଲେ ଦୁହିଁଙ୍କର ଅନେକ ସାଦୃଶ୍ୟ ଥାଏ; ମାତ୍ର ଉଡ଼ିୟାରେ କଚେରି ଭାଷା ମିଶାଇଲେ ସେହି ସାଦୃଶ ହ୍ରାସକୁ ଲଭେ; ଏଥିପାଇଁ କେହି ଜଡ଼ ଲେଖକ କଚେରି ସରସ୍ୱତୀର ଆରାଧନା କରି ବିଶୁଦ୍ଧ ଉଡ଼ିୟା ଲେଖକର ପ୍ରତିଷ୍ଠା ଲଭିଅଛନ୍ତି । (ପୃ.୯୦)

## ଦ୍ୱିତୀୟ ପ୍ରେରିତପତ୍ର

ଦ୍ୱିତୀୟ ପତ୍ରପ୍ରେରକ ମହାଶୟ ବାଲେଶ୍ୱରସ୍ଥ କୌଣସି ସ୍ୱାଧୀନବକ୍ତା, "ଏ ଦେଶର ଉନ୍ନତିର ପ୍ରତିବନ୍ଧକ" (ପୃ.୨୦୯-୨୧୨) ଶିରୋନାମାରେ ଉଲ୍ଲେଖ କରିଛନ୍ତି – ବିଦ୍ୟା ଓ ଧନ ଏ ଦୁହେଁ ଉନ୍ନତିର ପ୍ରଧାନ ସହାୟ । ବିଦ୍ୟା ଓ ଧନର ଅଭାବରେ ମାନବର ଉନ୍ନତି ଅସମ୍ଭବ । ଆମ ଦେଶରେ ଏ ଦୁହିଁଙ୍କର ନିତାନ୍ତ ଅଭାବ ନ ଥିଲେ ସୁଦ୍ଧା ଉନ୍ନତିର ଅନ୍ତରାୟ କାହିଁକି ସୃଷ୍ଟି ହେଉଛି ? ଏହି ପ୍ରଶ୍ନର ଆଲୋଚନା

ପ୍ରସଙ୍ଗରେ ଏ ଦେଶର ତିନିଶ୍ରେଣୀୟ ଲୋକଙ୍କଠାରୁ ଉନ୍ନତିର ଆଶା ପୋଷଣ କରାଯାଇପାରେ ବୋଲି ପତ୍ରପ୍ରେରକ ମନେକରିଛନ୍ତି । ସେମାନେ ହେଲେ ଦୁଇ ଚାରି ଧାଡ଼ି ଇଂରାଜୀ ପଢ଼ିପାରୁଥିବା ଓ ସାମାନ୍ୟରୂପେ ଦେଶୀୟ ଭାଷା ଜାଣିଥିବା ଅଳ୍ପ ବା ଅର୍ଦ୍ଧଶିକ୍ଷିତ ଚାକିରିଆ ଗୋଷ୍ଠୀ । ଏହି ଶ୍ରେଣୀର ଲୋକମାନଙ୍କର ପରିଚୟ ଦେଇ ଲେଖକ କହନ୍ତି :

ଖଣ୍ଡିଏ କୌଣସି ପ୍ରକାର ଚାକିରି ମିଳିଲେ ଆଉ ସେମାନଙ୍କର ଲେଖାପଢ଼ା ଚଳେନାହିଁ । କାରଣ ଅନ୍ନବସ୍ତ୍ରର ଉପାୟ ତ ହୋଇଗଲା, ତେଣିକି କ୍ରମେ କ୍ରମେ ଭଦ୍ର ଧନୀ ଲୋକଙ୍କଠାରେ ଆଳାପ ବନ୍ଧୁତା ହେଲା, ତଦ୍ଦ୍ୱାରା ସାଧାରଣ ଲୋକଙ୍କଠାରେ ଏକପ୍ରକାର ପ୍ରତିପତ୍ତି ଲାଭ ହେଲା, ତତ୍‌ପରେ ଦେଶର ହିତଜନକ ଗୋଟେ ଦୁଇଟା କାର୍ଯ୍ୟ କରିବାକୁ ପ୍ରସ୍ତାବ କରି ତହିଁରୁ କିଛି କିଛି ଆରମ୍ଭ କରିଦେଇ ଦେଶର ସମସ୍ତଙ୍କଠାରୁ ଏକପ୍ରକାର ପ୍ରଶଂସା ମିଳିଲା ଓ ପ୍ରଧାନ ରାଜକର୍ମଚାରୀଙ୍କ-ଠାରେ ନାମ ପଡ଼ିବାରୁ କ୍ରମେ କ୍ରମେ ବଡ଼ ଚାକିରି ମିଳିଲା । ଏହାଠାରୁ ବଳି ଆଉ କିସ ଅଛି ? ଏଥର ଚୂଡ଼ାନ୍ତ ହେଲା । ଏବେ ଖଣ୍ଡେ ଦୁଇଖଣ୍ଡ କ୍ଷୁଦ୍ର ଗ୍ରନ୍ଥ ରଚନା ବା ଅନୁବାଦ କରି କୌଣସି ବଡ଼ ଲୋକ ନାମରେ ଉତ୍ସର୍ଗ କରିଦେଲେ ଯଶ ଓ ତାହା ସଙ୍ଗେ ସଙ୍ଗେ କିଞ୍ଚିତ୍ ଅର୍ଥଲାଭ ମଧ୍ୟ ହେଲା, ଏହି ପ୍ରକାରେ ଏମାନଙ୍କ ଜୀବନର ମୁଖ୍ୟ ଉଦ୍ଦେଶ୍ୟ ଯଶୋଲାଭ ଓ ଅର୍ଥଲାଭ ଉଭୟ ସାଧିତ ହେଲା । ଏମାନେ ଉନ୍ନତି କାହାକୁ ବୋଲନ୍ତି ତାହା ବୁଝିଲେ ନାହିଁ ବରଂ ଶୁଣିଲେ ଚମକି ପଡ଼ନ୍ତି ଓ ଅଶ୍ରଦ୍ଧା କରନ୍ତି । (ପୃ.୨୦୯-୨୧୦)

ଉତ୍ତମ ଶିକ୍ଷା ଅର୍ଜନକାରୀ (ଏଲ୍.ଏ., ବି.ଏ. ପ୍ରଭୃତି) ବିଭିନ୍ନ ଡିଗ୍ରୀଧାରୀ ଗୋଷ୍ଠୀ ଦ୍ୱିତୀୟ ଶ୍ରେଣୀର ଅନ୍ତର୍ଭୁକ୍ତ । ଏହି ଶ୍ରେଣୀର ଲୋକମନଙ୍କ ସମ୍ପର୍କରେ ଲେଖକଙ୍କର ମତ ହେଲା :

ପାଠଦ୍ଦଶାରେ ବା କୌଣସି ଚାକିରି, ବଡ଼ ଚାକିରି ପାଇବା ପୂର୍ବରୁ ସେମାନଙ୍କ ସହିତ ବାକ୍ୟାଳାପ କଲେ ଦେଶର ଉନ୍ନତ ନିମନ୍ତେ ତୁମ୍ଭର ଆଉ କୌଣସି ଚିନ୍ତା ଥିଲା ନାହିଁ । ବାବୁ ଖଣ୍ଡିୟେ ବଡ଼ ଚାକିରି ପାଇଲେ ଦେଶର ଉନ୍ନତି ପକ୍ଷରେ ବିଶେଷ ଚେଷ୍ଟିତ ହେବେ, ଏହି କଥା ମନରେ ପାଞ୍ଚୁଥିବେ । ବାବୁ ବଡ଼ ଚାକିରି ପାଇଲେ, ବାବୁଙ୍କର କ୍ଷମତା ହେଲା, ଅନେକ ଲୋକ ବାବୁଙ୍କର ଅଧୀନରେ ରହିଲେ, ସମସ୍ତେ ବାବୁଙ୍କର ଅନୁଗ୍ରହଲିପ୍ସୁ, ବାବୁଙ୍କର ନାନା ପ୍ରକାର ଅକାରଣ ପ୍ରଶଂସା ଓ ବାବୁଙ୍କ ତୁଲ୍ୟ ଅଥବା ଆପଣାର ବିଦ୍ୱେଷୀ ଲୋକମାନଙ୍କର କୁତ୍ସା ଭିନ୍ନ ବାବୁଙ୍କଠାରେ ସେମାନଙ୍କ ମୁଖରୁ ଆଉ କିଛି ଶୁଣିବେ ନାହିଁ । ବାବୁଙ୍କଠାକୁ ଗଲେ ଏଥର ସାବଧାନ ହୋଇ କଥା କହିବାକୁ

ହେବ । ପୂର୍ବେ ବାବୁଙ୍କ ସଙ୍ଗେ ତୁମ୍ଭର ଯେପରି ସ୍ୱାଧୀନ ଭାବରେ କଥାବାର୍ତ୍ତା ହେଉଥିଲା ବର୍ତ୍ତମାନ ଆଉ ତାହା ଚଳିବ ନାହିଁ । ଏତେବେଳେ ବାବୁଙ୍କ ମିଜାଜ ବୁଝି କଥା କହିବାକୁ ହେବ, ନ ହେଲେ କାଳେ ବାବୁ ରାଗିଯିବେ ବା ତୁମ୍ଭର କୌଣସି ପ୍ରକାର ଅନିଷ୍ଟ ସାଧନରେ ପ୍ରବୃତ୍ତ ହେବେ ବା ଯଦି ତୁମ୍ଭେ ତାଙ୍କର ଅଧୀନ ଥାଅ କାଳେ ତୁମ୍ଭର ଦାନା ଉପରେ ହାତ ପଡ଼ିବ । (ପୃ.୨୧୦)

ଅନ୍ୟ ଏକପ୍ରକାର ହେଲେ ଏ ଦେଶର ଧନୀ ବା ସାମନ୍ତ ଶ୍ରେଣୀୟ ଲୋକ । ଉନ୍ନତି କାହାକୁ କହନ୍ତି ସେମାନେ ତାହା ବୁଝନ୍ତି ନାହିଁ; ବରଂ ଉନ୍ନତି ପାଇଁ ବ୍ୟୟିତ ଅର୍ଥକୁ ସେମାନେ ଅପବ୍ୟୟ ବୋଲି କହନ୍ତି । ସେମାନଙ୍କ ମଧ୍ୟରୁ ଯଦିବା କେତେକ ସମାଜମଙ୍ଗଳ ଉଦ୍ଦେଶ୍ୟରେ ଅର୍ଥ ବ୍ୟୟ କରିବାକୁ ସମ୍ମତ ଥା'ନ୍ତି, କିନ୍ତୁ ସେମାନଙ୍କର ପାଖ ଲୋକ ତଥା ଚାଟୁକାରମାନଙ୍କ ବୁଝାଣ ଫଳରେ ସମାଜମଙ୍ଗଳ ଉଦ୍ଦେଶ୍ୟରେ ଅର୍ଥଦାନକୁ ଅପବ୍ୟୟ ଭାବି ସେମାନଙ୍କର ମତ ପରିବର୍ତ୍ତନ କରନ୍ତି ଓ ସେଥିରେ ଅଟଳ ରହନ୍ତି । ତେଣୁ ସେମାନଙ୍କୁ କେହି ଦେଶହିତୈଷୀ ଉତ୍ତମ ମାର୍ଗରେ ଅର୍ଥବ୍ୟୟ କରିବାକୁ ପରାମର୍ଶ ଦେଲେ, ସେମାନେ ପରାମର୍ଶଦାତାଙ୍କୁ କିଭଳି ବ୍ୟବହାର କରନ୍ତି । ତାହାର ସୂଚନା ଦେଇ ଲେଖକ ଲେଖିଛନ୍ତି :

ସେମାନେ ତୁମ୍ଭ କଥାକୁ ଅଳୀକ ଓ ସ୍ୱାର୍ଥ ସମ୍ବନ୍ଧ ବୋଲି ମଣି ତୁମ୍ଭକୁ ଉପହାସ କରିବେ, ତୁମ୍ଭେ ଲଜ୍ଜିତ ଓ ଅପମାନିତ ହୋଇ ଫେରିଆସିଲ । ଅତଏବ ଉନ୍ନତିର ସବୁ ପଥ ବନ୍ଦ ହେଲା । ଯେଉଁମାନଙ୍କଠାରୁ ଆଶା କରିଥିଲ, ସେମାନେ ତ ତୁମ୍ଭକୁ ନିରାଶ କଲେ, ତୁମ୍ଭେ ଚୁପ୍ ହୋଇ ରହିଲ, ତୁମ୍ଭ କଥା କେହି ଶୁଣିଲେ ନାହିଁ । ଉନ୍ନତି୍ ତେଣିକି ଥାଉ, ଚେଷ୍ଟା ସୁଦ୍ଧା ହେଲା ନାହିଁ । (ପୃ.୨୧୨)

ଏହିଭଳି ସମାଜର ତିନି ଶ୍ରେଣୀୟ ଲୋକଙ୍କୁ ନେଇ ସତ୍ୟ ଓ ବାସ୍ତବକଥା ସବୁ ଦ୍ୱିତୀୟ ପତ୍ରରେ ଉପସ୍ଥାପନ କରାଯାଇଛି ।

## ତୃତୀୟ ପ୍ରେରିତପତ୍ର

ତୃତୀୟ ପତ୍ରପ୍ରେରକ ମହାଶୟ ଉଦ୍ରଖର 'ଶ୍ରୀ' ଛଦ୍ମନାମଧାରୀ କୌଣସି ଚିରହିତାକାଂକ୍ଷୀ ବ୍ୟକ୍ତିବିଶେଷ । ତାଙ୍କର ପ୍ରେରିତପତ୍ରରେ ଚାକିରି କ୍ଷେତ୍ରକୁ ଆସିଥିବା ନବାଗତ ତରୁଣମାନେ ଆପଣାର ଉପରିସ୍ଥ ହାକିମମାନଙ୍କ ସହିତ କିଭଳି ସୁସମ୍ପର୍କ ରକ୍ଷାକରି ତାଙ୍କର ପ୍ରୀତିଭାଜନ ହୋଇ ଚଳିପାରିବେ – ସେ ବିଷୟରେ ଏକ ଅନୁଭୂତିପୂର୍ଣ୍ଣ ବର୍ଣ୍ଣନା ଦିଆଯାଇଛି । ବାସ୍ତବିକ ପତ୍ରପ୍ରେରକଙ୍କ ସ୍ୱୀୟ ଅଭିଜ୍ଞତାପୂର୍ଣ୍ଣ ବର୍ଣ୍ଣନାଟି ଚାକିରି କ୍ଷେତ୍ରରେ ନୂତନ ପ୍ରବେଶକାରୀ ଅଳ୍ପବୟସ୍କ ଯୁବସମାଜ ପ୍ରତି ଏକ ସତର୍କଘଣ୍ଟି ।

ଅଳ୍ପବୟସ୍କ ତରୁଣ ଯେତେ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ ବା ବହୁଶାସ୍ତ୍ରଦର୍ଶୀ ବିଦ୍ୱାନ ବୋଲି ନିଜକୁ ମନେକରନ୍ତୁ ପଛକେ ସେମାନେ ପ୍ରକୃତରେ ଅଳ୍ପଦର୍ଶୀ ବା ଅନଭିଜ୍ଞ । ଯେଉଁଥିପାଇଁ ଦୀର୍ଘ ଅନୁଭୂତିଶୀଳ ବୟସ୍କଙ୍କ ଦୃଷ୍ଟିରେ ସେମାନେ ପିଲା । ପତ୍ରପ୍ରେରକ ସେଥିପାଇଁ ଉପଦେଶ ଦେଇ ଲେଖିଛନ୍ତି :

> ବୁଦ୍ଧି ସହସ୍ର ତୀକ୍ଷ୍ଣ ହେଲେହେଁ ବହୁଦର୍ଶିତାର ପ୍ରତିଭୂ ହୋଇ ନପାରେ । ତୁମେ ପିଲା କ'ଣ ଜାଣ, ବୃଦ୍ଧ ଲୋକେ ତରୁଣ ପୁରୁଷମାନଙ୍କୁ ଏହିପରି କହନ୍ତି । ତରୁଣ ପୁରୁଷମାନେ ଏହି ଉକ୍ତିର ପ୍ରକୃତ ହେତୁ ବୁଝି ନପାରି ଅସତ୍ ହେତୁ ଲୋଡ଼ନ୍ତି ଏବଂ ବକ୍ତାକୁ ଈର୍ଷା ମଣନ୍ତି । ମାତ୍ର ଏପରି ଉକ୍ତି ସବୁବେଳେ ଈର୍ଷାମୂଳକ ନୁହଇ, ଏହା କହିବା ବାହୁଲ୍ୟ । ମୁଁ ଏହା କହୁନାହିଁ ଯେ ବୁଦ୍ଧି କୌଣସି କାର୍ଯ୍ୟରେ ଲାଗଇ ନାହିଁ । ତରୁଣ ବୟସ୍କ ଲୋକେ ବୁଦ୍ଧି ବଳରେ ଅନେକ ଭାବନା-ପ୍ରତିବନ୍ଧକ ତର୍କଣା କରିପାରନ୍ତି । ମାତ୍ର ଯୌବନସୁଲଭ ଦମ୍ଭ ସେହି ପ୍ରତିବନ୍ଧକମାନଙ୍କୁ ତୁଚ୍ଛ ମଣି ପଛକୁ ପ୍ରତାରିତ ହୁଅଇ । (ପୃ.୨୩୫-୨୩୬)

ଚାକିରିଟି ପାଇଁ ବହୁ ଭାବରେ ନିରାଶ ହୋଇଥିବା ବ୍ୟକ୍ତି ଜଣକୁ ଯଦି ଦୈବାତ୍ ଚାକିରି ଖଣ୍ଡେ ମିଳିଯାଏ, ସେଥିରେ ତା'ର ଆନନ୍ଦ କହିଲେ ନ ସରେ । କିନ୍ତୁ ଏଭଳି ଉତ୍‌ଫୁଲ୍ଲିତ ହେବା ଅନୁଚିତ । କାରଣ ନବାଗତ ପାଇଁ ନୂତନ ଚାକିରି ଯେତିକି ସୁଖଦାୟକ, ପରକ୍ଷଣରେ ସେତିକି ଦୁଃଖଦାୟକ । ପତ୍ରପ୍ରେରକଙ୍କ ଉକ୍ତିରେ "ଚାକିରିକୁ ସ୍ତ୍ରୀ ପ୍ରାୟ ଜାଣିଥିବ । ବିବାହ ପୂର୍ବରେ ସ୍ତ୍ରୀ ଅତି ମନୋହାରିଣି ଦିଶଇ, ଅତ୍ୟନ୍ତ ସୁଶୀଳା, ସରଳା ବୋଧ ହୁଅଇ, ମାତ୍ର ବିବାହ ହେଲା ଉତ୍ତାରୁ ସେ ଭ୍ରମ ଭାଙ୍ଗିଯାଏ । ଯାହାକୁ ରତ୍ନ ମଣିଥିଲ, ବର୍ତ୍ତମାନ ସେ ଅଗ୍ନିପ୍ରାୟ ବୋଧହେଲା । (ପୃ.୨୩୬)

ଉପରିସ୍ଥ ହାକିମ ବା ପ୍ରଭୁମାନେ ଭୃତ୍ୟମାନଙ୍କ ଉପରେ ସାଧାରଣତଃ ଅଯଥା ହାକିମାତି ବା ପ୍ରଭୁତ୍ୱ ଜାହିର କରିଥାନ୍ତି । ଯଦି ଭୃତ୍ୟର ତାଙ୍କ ପ୍ରତି ଅକୁଣ୍ଠିତ ସ୍ନେହଭାବ ଥିବାର ସେ ଉପଲବ୍ଧି କରନ୍ତି, ତା'ହେଲେ ନିଜର ସ୍ୱାର୍ଥ ସାଧନରେ ତତ୍ପର ହୋଇ ଉଠନ୍ତି । ତେଣୁ ଭୃତ୍ୟ ମନରେ ପ୍ରଭୁ ପ୍ରତି ପ୍ରକୃତ ସ୍ନେହ ଥାଉ ବା ନଥାଉ, କିନ୍ତୁ ପ୍ରଭୁଙ୍କ ପ୍ରତି ସ୍ନେହଭାବ ଥିବାର ବିଶ୍ୱାସ ସୃଷ୍ଟି କରି ତାଙ୍କ ମନ ଜୟ କରିପାରିବା ଭୃତ୍ୟ ପକ୍ଷରେ ହିତକର । ଅନେକ କ୍ଷେତ୍ରରେ ପ୍ରଭୁମାନେ ସ୍ତବପ୍ରିୟ । ଏପରି ସ୍ଥଳେ ସେମାନଙ୍କର ସ୍ତବ କରିବା ଭୃତ୍ୟମାନଙ୍କର ପରମକର୍ତ୍ତବ୍ୟ; ମାତ୍ର ସବୁବେଳେ ସେମାନଙ୍କର ମନ ଜାଣି ଚଳିବା ଉଚିତ । ନଚେତ୍ ନିଜର ବହୁ ଅନିଷ୍ଟ ଘଟେ । ବେଳେ ବେଳେ ପ୍ରଭୁ ଭୃତ୍ୟକୁ ନିଜର ବିଶ୍ୱାସଭାଜନ ଜାଣିଲେ ଅନେକ ବିଶ୍ୱାସପୂର୍ଣ୍ଣ ଗୁପ୍ତକଥା କହିଥାନ୍ତି;

କୌଣସି ବିଷୟରେ ଗପିଥାନ୍ତି । ଭୃତ୍ୟ ଏସବୁ କଥା ବୁଝୁ ନ ବୁଝୁ ତାଙ୍କ ମତ ପ୍ରତି ଆନୁଗତ୍ୟ ପ୍ରକାଶ କରିବା ଉଚିତ । ନିଜେ ପ୍ରଭୁଙ୍କଠାରେ କସ୍ମିନ୍‌କାଳେ ଅତି ନମ୍ର, ଅତି ଉଗ୍ର ବା ଅତି ପ୍ରଗଲ୍‌ଭ ହେବା ଠିକ୍ ନୁହେଁ; ବରଂ ନିଜ ଦୋଷ ପ୍ରକାଶ ହେବା ପୂର୍ବରୁ ସ୍ୱତଃ ପ୍ରକାଶ କରିଦେବା କର୍ତ୍ତବ୍ୟ । ପୁଣି ଦୋଷ ପ୍ରକାଶ କରି ଆତ୍ମସମର୍ଥନ ନିମିତ୍ତ ଯୁକ୍ତି କରିବା ଅନୁଚିତ । ପ୍ରଭୁଠାରୁ ନିଜର କୌଣସି ବିଷୟରେ ଅଧିକ ପଟୁତା ଥିଲେ ମଧ ନିଜକୁ ତାଙ୍କଠାରୁ କମ୍ ମଣିବ । ବିନା ଦୋଷରେ ପ୍ରଭୁ ଦୋଷୀ ସାବ୍ୟସ୍ତ କରିଥିଲେ ବରଂ ତାଙ୍କର ଭୁଲ ଧାରଣା ଦୂର ହେବାଯାଏ ନିରବ ରହିଯିବା ଏବଂ ପ୍ରଭୁଙ୍କର କୌଣସି ଦୋଷ ଦେଖିଲେ ବକ୍ର ଉପାୟ ଅବଲମ୍ବନ କରି ତାଙ୍କୁ ସଚେତନ କରାଇବା ଇତ୍ୟାଦି ବିବିଧ ଉପଦେଶାବଳୀ ପତ୍ରପ୍ରେରକ ମହାଶୟ ଚାକିରି କ୍ଷେତ୍ରକୁ ଆସିଥିବା ନବାଗତ ବ୍ୟକ୍ତିମାନଙ୍କୁ ଶୁଣାଇଛନ୍ତି ।

ପ୍ରତ୍ୟେକ ପତ୍ରପ୍ରେରକଙ୍କ ଯେପରି ଅନେକ ବକ୍ତବ୍ୟ ବିଷୟ ରହିଛି, ସମ୍ପାଦକଙ୍କୁ ପତ୍ର ମାଧ୍ୟମରେ ଆଲୋଚ୍ୟ ବିଷୟରେ ମତାମତ ଜଣାଇଥିଲେ ବି ମନ ମଧ୍ୟରେ ଆହୁରି କିଛି ଲେଖିବାର ଅଭିଳାଷ ରହିଯାଉଛି । ନିଜର କାର୍ଯ୍ୟବ୍ୟସ୍ତତା ବା ଶାରୀରିକ କ୍ଳାନ୍ତିହେତୁ ବାରାନ୍ତରରେ ଲେଖିବେ ବୋଲି ପ୍ରତିଶ୍ରୁତିବଦ୍ଧ ହୋଇଛନ୍ତି । ଯଥା, ପ୍ରଥମ ପତ୍ରପ୍ରେରକଙ୍କ ଉକ୍ତି ହେଉଛି – ''ବର୍ତ୍ତମାନ ଯାହା ମନରେ ପଡ଼ିଲା ଲେଖିଲି । ପଛକୁ ଆହୁରି ଲେଖିବି । କାର୍ଯ୍ୟାନ୍ତର ଉପସ୍ଥିତ ହେବାରୁ ଲେଖନୀକୁ ବିଶ୍ରାମ ଦେଲି । ତୁମର ଅଭୀଷ୍ଟ ସିଦ୍ଧି ହେଉ, ଏହା ମୋହର ଏକାନ୍ତ ଅଭିଳାଷ ।'' (ପୃ.୯୩) ତୃତୀୟ ପତ୍ରପ୍ରେରକ ମହାଶୟଙ୍କ ସମଧର୍ମୀ ଉକ୍ତି ହେଉଛି, ''ବର୍ତ୍ତମାନ ଆଉ ଲେଖିପାରିବି ନାହିଁ, ଅନେକ କାର୍ଯ୍ୟ ଥିବାରୁ ଏହିଠାରେ ବିଶ୍ରାମ ନେଲି । ଆଉ ଯାହା ବକ୍ତବ୍ୟ ଅଛି ବାରାନ୍ତରରେ ଜଣାଇବି ।''(ପୃ.୨୪୦)

ଆଧୁନିକ ସମ୍ବାଦ ଓ ସାହିତ୍ୟପତ୍ର ଆଧୁନିକ ମନନ ଓ ସମାଜବ୍ୟବସ୍ଥାର ଫଳଶ୍ରୁତି । ଅପରପକ୍ଷରେ ଏଗୁଡ଼ିକ ମଧ୍ୟଦେଇ ଗଣତାନ୍ତ୍ରିକ ମୂଲ୍ୟବୋଧ, ବ୍ୟକ୍ତିସ୍ୱାତନ୍ତ୍ର୍ୟ ଆଦି ପ୍ରତିଷ୍ଠିତ । ସମ୍ପାଦକଙ୍କୁ 'ପ୍ରେରିତପତ୍ର' ମଧ୍ୟଦେଇ ଏହିସବୁ ମୂଲ୍ୟବୋଧ ରୂପରେଖ ଗ୍ରହଣ କରିଛି ।

## ଜନ୍ ବୀମ୍‌ସ୍ ପ୍ରସଙ୍ଗ

'ଉତ୍କଳ ଦର୍ପଣ' ପ୍ରକାଶର ଅନେକ ପୂର୍ବରୁ ୧୮୬୯ ମସିହାରେ ଜନ୍ ବୀମ୍‌ସ୍ ବାଲେଶ୍ୱରରେ ପ୍ରଥମ ଶ୍ରେଣୀର ଜିଲ୍ଲାପାଳ ଓ ମାଜିଷ୍ଟ୍ରେଟ୍ ଭାବରେ ଅବସ୍ଥାପିତ ହୋଇଥିଲେ । ସେ ଥିଲେ ଜଣେ ନୀତିବାନ୍ ଓ ଶୃଙ୍ଖଳାପ୍ରିୟ ପଣ୍ଡିତ

ବ୍ୟକ୍ତି । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସେ ମଧ୍ୟ ଥିଲେ ପରମ ହିତୈଷୀ । ନିଜର କର୍ତ୍ତବ୍ୟ ପାଳନରେ ସେ ଯେପରି କଠୋର ଥିଲେ – ଆନ୍ତରିକ ଶୁଭେଚ୍ଛା, ସହାନୁଭୂତି ଦେଖାଇ ସେହିପରି ସେ ଅନ୍ୟର ଅଧିକ ଆପଣାର ହୋଇପାରିଥିଲେ । ବାସ୍ତବିକ୍ ସେ ଥିଲେ ଜଣେ ସୁଦକ୍ଷ ଶାସକ, ଯେ କି ଓଡ଼ିଆ ଓଡ଼ିଶାର ସର୍ବବିଧ ହିତକାମନା କରିଥିଲେ ଏବଂ ଶାସନକଳର ଅନ୍ୟାୟ ଅନୀତି ବିରୁଦ୍ଧରେ ନିଜେ ସ୍ୱର ଉତ୍ତୋଳନ କରିଥିଲେ । ଫଳରେ ସତ୍ୟାନୁସନ୍ଧିତ୍ସା, ସ୍ପଷ୍ଟବାଦିତା ହିଁ ତାଙ୍କ ଓଡ଼ିଶା ଛାଡ଼ିବାର ଅନ୍ୟତମ କାରଣ ହୋଇଥିଲା । ସେଥିପାଇଁ ଜନ୍ ବୀମ୍‌ସ୍ ସମାଜର ସାଧାରଣ ଲୋକମାନଙ୍କର ଖୁବ୍ ବିଶ୍ୱାସ ଓ ପ୍ରୀତିର ଭାଜନ ହୋଇପାରିଥିଲେ । ସେମାନଙ୍କ ମଧ୍ୟରେ ସେ 'ଭୀମ' ସାହେବ ନାମରେ ପରିଚିତ ଥିଲେ । ବାଲେଶ୍ୱରରେ ଦେଖାଦେଇଥିବା ଭାଷାବିଲୋପ ଆନ୍ଦୋଳନ ଓ ନଅଙ୍କ ଦୁର୍ଭିକ୍ଷ ପରବର୍ତ୍ତୀ ସମୟରେ ତାଙ୍କରି ବିବିଧ ଦେଶହିତୈଷୀ ଉନ୍ନତିମୂଳକ କାର୍ଯ୍ୟହିଁ ତାଙ୍କୁ 'ଉତ୍କଳହିତୈଷୀ'ର ସମ୍ମାନ ପ୍ରଦାନ କରିଥିଲା ।

ବାଲେଶ୍ୱରରୁ କଟକକୁ ବଦଳି ହୋଇଯାଇଥିଲେ ମଧ୍ୟ ବାଲେଶ୍ୱର ତଥା ବାଲେଶ୍ୱରବାସୀଙ୍କ ପ୍ରତି ତାଙ୍କର ଗଭୀର ମମତା ଥିଲା । ବାଲେଶ୍ୱର କେମ୍ପରେ ସ୍ୱଳ୍ପକାଳ ରହଣି ମଧ୍ୟରେ ବାଲେଶ୍ୱର ତଥା ବାଲେଶ୍ୱରବାସୀଙ୍କ ପ୍ରତି ନିଜର ପ୍ରାଣଖୋଲା ମନ୍ତବ୍ୟ ଦେଇ ରାଜା ଶ୍ୟାମାନନ୍ଦ ଦେଙ୍କ ପାଖକୁ ଯେଉଁ ବ୍ୟକ୍ତିଗତ ପତ୍ରଟି ଲେଖିଥିଲେ, ସେଥିରେ ଉଲ୍ଲେଖ ଥିଲା –

> It gives me great pleasure to find that after an absence of more than three years I am still remembered affectionately by the people of Balasore, and I can assure you and them that I fully reciprocate those feelings and am always ready and willing to do all that lies in my power to promote their welfare.
>
> The cordial reception accorded to me on this occasion adds one more to the many pleasant associations which bind me to a Distirict in which I spent many happy years as Magistrate and Collector."[୧୬]

ବାଲେଶ୍ୱରର ରାଜା ଶ୍ୟାମାନନ୍ଦ ଦେ, କୁମାର ବୈକୁଣ୍ଠନାଥ ଦେ, କବିବର ରାଧାନାଥ, ଫକୀରମୋହନ ସେନାପତି, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, କାବ୍ୟରତ୍ନ ଅସରଫ୍ ଅଲ୍ଲି, ଜୟକୃଷ୍ଣ ଚୌଧୁରୀ (ବାରବାଟୀ ବଙ୍ଗୋତ୍କଳ ବିଦ୍ୟାଳୟ ଦ୍ୱିତୀୟ

(୧୬) Letter to Raja Shyamananda De, Balasore from John Beames; June 18, 1877, Balasore.

ଶିକ୍ଷକ ଓ ଫକୀରମୋହନଙ୍କ ସହକର୍ମୀ), ରାଧାଚରଣ ଦାସ (ଫକବାବୁ), ବାରବାଟୀର ମଦନମୋହନ ଦାସଙ୍କ ସହିତ ତାଙ୍କର ବାଲେଶ୍ୱର ରହଣିକାଳରେ ଖୁବ୍ ଆତ୍ମୀୟଭାବ ସୃଷ୍ଟି ହୋଇଥିଲା ।

ବୀମ୍ସ୍ଙ୍କ ପରୋପକାରିତା, ଜନସେବା ବିଷୟରେ କେତେକ ସମ୍ବାଦ 'ଉତ୍କଳ ଦର୍ପଣ'ର 'ବିବିଧ ସମ୍ବାଦ' ସ୍ତମ୍ଭରେ ପ୍ରକାଶ ପାଇଥିଲା –

୧ । କାମ୍ବେଲ ସାହେବଙ୍କ କେତେଗୋଡ଼ିଏ ନୂଆ ପାଠଶାଳା ସ୍ଥାପିତ ହେଲାଣି – ଏହି ବିଷୟରେ ଆମ୍ଭମାନଙ୍କର କାଲେଟିର ଉଦାରମତି ଜନ୍ ବିମ୍ସ୍ ଅନେକ ଯତ୍ନ କରୁଅଛନ୍ତି । ଆମ୍ଭେମାନେ ଭରଷା କରୁଁ ଯେଉଁ ଉଦ୍ଦେଶ୍ୟରେ ପାଠଶାଳାଗୁଡ଼ିକ ବସୁଅଛି, ଉକ୍ତ ମହାତ୍ମାଙ୍କ ଆନ୍ତରିକ ଯତ୍ନରେ ଶୀଘ୍ର ସେହି ଉଦ୍ଦେଶ୍ୟ ଫଳୋନ୍ମୁଖ ହେବ । (ପୃ.୨୩)

୨ । ବଟେଶ୍ୱରରେ ବୀରଭଦ୍ର ନାମକ ମୂଲିଆ ଉତ୍କଟ ରୋଗଗସ୍ତ ହେବାରୁ ତାହାର ସନ୍ତାନ ଗୋଡ଼ିକ ଅନାହାରରେ ମରଣାପନ୍ନ ହୋଇଥିଲେ । ବୀମ୍ସ ମହୋଦୟ ଅଶ୍ୱାରୁଢ଼ ହୋଇ ବୁଲି ବୁଲି ଏଥିରେ ସନ୍ଧାନ ନେଲେ । ବୀରଭଦ୍ରକୁ ହସପାତାଳକୁ ପଠାଇଲେ ଏବଂ ସ୍ୱୟଂ ପିଲାମାନଙ୍କର ଭରଣପୋଷଣର ଭାର ନେଲେ । (ପୃ.୨୩)

୧୮୭୩ ମସିହା ଛାତ୍ରବୃତ୍ତି ପରୀକ୍ଷାପାଇଁ ବାଲେଶ୍ୱରରୁ ୩୩ ଜଣ ପରୀକ୍ଷାର୍ଥୀ ଥିଲେ । ଏମାନଙ୍କ ମଧ୍ୟରୁ ଅନେକ ଅଳ୍ପବୟସ୍କ ଏଗାରବର୍ଷ ପିଲାମାନଙ୍କୁ ୧୨ ମାସରେ ୧୫ ଖଣ୍ଡ ବହି ପଢ଼ିବାକୁ ପଡୁଥିଲା । ଫଳରେ ସୁକୁମାରମତି ପିଲାମାନଙ୍କ ଉପରେ ମାନସିକ ସ୍ତରରେ ପଠନ ଚାପ ପଡୁଥିଲା ଓ ତାହା ସେମାନଙ୍କ ସ୍ୱାସ୍ଥ୍ୟହାନୀର ମୁଖ୍ୟ କାରଣ ଥିଲା । ଉପରୋକ୍ତ ୧୫ ଖଣ୍ଡ ପୁସ୍ତକ ବ୍ୟତୀତ ପ୍ରତିଦିନ ହସ୍ତାକ୍ଷର, ରଚନା, ଅନୁବାଦ ଓ ପତ୍ରଲିଖନ ଆଦି ନିୟମିତ ପାଠ୍ୟ ପ୍ରସ୍ତୁତ କରିବାକୁ ପଡୁଥିଲା । ଅତଏବ ପିଲାମାନଙ୍କ ସ୍ୱାସ୍ଥ୍ୟରକ୍ଷା ଦୃଷ୍ଟିରୁ କେବଳ ସାହିତ୍ୟ, ଅଙ୍କ, କ୍ଷେତ୍ର ପରିମାଣ, ଭୂଗୋଳ, ଜମିଦାରି ମହାଜନୀ ହିସାବ, ରଚନା ଓ ହସ୍ତାକ୍ଷର ନିର୍ଦ୍ଦିଷ୍ଟ ବିଷୟରେ ଶିକ୍ଷା ଦେବା ଉଚିତ । ଏ ସମ୍ପର୍କରେ 'ବିବିଧ ସମ୍ବାଦ'ରେ କୁହାଯାଇଛି –

୩ । ସମ୍ପ୍ରତି ଶିକ୍ଷା ବିଷୟର ଭାର ସ୍ଥାନୀୟ କଲେକ୍ଟର ମହୋଦୟଙ୍କଠାରେ ପ୍ରବର୍ତ୍ତି ଅଛି, ସେ ଏ ବିଷୟରେ କଟାକ୍ଷ କଲେ ଆମ୍ଭମାନଙ୍କର ମନସ୍କାମନା କଥଞ୍ଚିତ ସିଦ୍ଧି ହୋଇପାରେ । (ପୃ.୨୪)

୪ । ଗତ ଝଟିକାରେ ବାଲେଶ୍ୱର ଜିଲ୍ଲାସ୍ଥିତ କେତେଗୁଡ଼ିଏ ସ୍କୁଲଗୃହର ବିଶେଷ କ୍ଷତି ହୋଇଥିବାରୁ ଆମ୍ଭମାନଙ୍କର ସୁଯୋଗ୍ୟ ମେଜେଷ୍ଟ୍ରେଟ୍ ବିଶେଷ ଯତ୍ନ କରି ସେମାନଙ୍କର ସଂସ୍କାର ନିମନ୍ତେ ସରକାରରୁ ଅର୍ଥ ସାହାଯ୍ୟ ମଞ୍ଜୁର କରାଇ ଅଛନ୍ତି । ପ୍ରଶଂସିତ ମହାତ୍ମା ଯତ୍ନ କରି ନ ଥିଲେ ଏ ସାହାଯ୍ୟ

କଦାପି ମିଳିନଥାଆନ୍ତା । ଶିକ୍ଷା ସଂକ୍ରାନ୍ତ ବିଷୟରେ ଭାର ସ୍ଥାନୀୟ ରାଜପୁରୁଷମାନଙ୍କଠାରେ ବର୍ତ୍ତିବାରୁ ଆମ୍ଭେମାନେ ଯେପରି ଆହ୍ଲାଦିତ ହୋଇଅଛୁଁ, ବୀମ୍‌ସ ମହୋଦୟଙ୍କ ହାତରେ ବର୍ତ୍ତିବାରୁ ତତୋଽଧିକ ଆହ୍ଲାଦିତ ହୋଇଅଛୁଁ । (ପୃ.୨୪)

ସେହିବର୍ଷ ଶେଷ ଆଡ଼କୁ ବୀମ୍‌ସ ସାହେବ କଟକ ବଦଳି ହୋଇ ଚାଲିଗଲେ । ସେ ଚାଲିଗଲା ପରେ ବାଲେଶ୍ୱରବାସୀ ଯେତେବେଳେ ବିଭିନ୍ନ ସମସ୍ୟାର ସମ୍ମୁଖୀନ ହୋଇଛନ୍ତି, ସେତେବେଳେ ବୀମ୍‌ସ୍ ସାହେବଙ୍କୁ ସ୍ମରଣ କରିଛନ୍ତି । ବାଲେଶ୍ୱର ବୁଢ଼ାବଳଙ୍ଗ ନଦୀରେ କୁମ୍ଭୀର ଦୌରାତ୍ମ୍ୟ ନେଇ କୁହାଯାଇଛି –

ବର୍ତ୍ତମାନ ଆଉ ଗୋଟିଏ କୁମ୍ଭୀର ନଦୀରେ ମନୁଷ୍ୟାଦିକୁ ଝାଁପୁ ଅଛି, ବୋଧହୁଏ ଅନିଷ୍ଟ କରିପାରେ, କାରଣ ମନୁଷ୍ୟମାନେ ପ୍ରାୟ ନଦୀରେ ସ୍ନାନ ଓ ଜାହାଜାଦିରେ କର୍ମ କରିବାପାଇଁ ସର୍ବଦା ଯାତାୟାତ କରନ୍ତି । ଯଦି ଶିକାରୀମାନଙ୍କୁ କିଛି ପୁରସ୍କାର ମିଳିଥାନ୍ତା, ତେବେ ସେମାନେ ଅବଶ୍ୟ ଏଟାକୁ ସୁଦ୍ଧା ମାରିବାର ଚେଷ୍ଟା କରନ୍ତେ । ମହାତ୍ମା ବୀମ୍‌ସ ଥିଲେ ଶିକାରୀମାନେ କଦାପି ନିରାଶ ହୋଇ ନ ଥାନ୍ତେ, ବରଂ ଉତ୍ସାହିତ ହୋଇ ଅନେକ କାର୍ଯ୍ୟ କରନ୍ତେ । (ପୃ.୨୧୫-୨୧୬)

ଜଣେ ସତ୍ୟ ଓ କର୍ମନିଷ୍ଠ ପ୍ରଶାସନିକ ମୁଖ୍ୟ ହିସାବରେ ଜନ୍ ବୀମ୍‌ସ ବାଲେଶ୍ୱର ସମେତ ଓଡ଼ିଶାବାସୀଙ୍କ ଚିର ହିତାକାଂକ୍ଷୀ ଥିଲେ । ଓଡ଼ିଶା ଛାଡ଼ିଲା ପରେ ବୀମ୍‌ସ ପ୍ରଶାସନିକ ଚାକିରୀ କ୍ଷେତ୍ରରେ ଥାଇ ବି ମାନସିକ ଶାନ୍ତି ପାଇ ନଥିଲେ । ନିଜର ଅଶାନ୍ତିପୂର୍ଣ୍ଣ ମାନସିକ ସ୍ଥିତାବାସ୍ଥା ନେଇ ଖୁବ୍ ଅନ୍ତରଙ୍ଗ ବନ୍ଧୁବିଶେଷ କବିର ରାଧାନାଥ ରାୟ ଓ ଫକୀରମୋହନ ସେନାପତିଙ୍କୁ ଏକାଧିକ ପତ୍ର ମଧ୍ୟ ଲେଖିଥିଲେ । ଜନ୍ ବୀମ୍‌ସଙ୍କ ପରେ ଏକାଧିକ ଇଂରାଜୀ ସାହେବ ବାଲେଶ୍ୱର ଓ କଟକରେ ଶାସନ ମୁଖ୍ୟ କଲେକ୍ଟର ଓ ମାଜିଷ୍ଟ୍ରେଟ ହୋଇଥିଲେ, କିନ୍ତୁ ତାଙ୍କ ପରି ଉତ୍କଳ ଭାଷା, ସାହିତ୍ୟ, ସଂସ୍କୃତିପ୍ରେମୀ, ପରୋପକାରୀ, ଗୁଣଗ୍ରାହୀ ଶାସକ ଓଡ଼ିଶାବାସୀଙ୍କ ଭାଗ୍ୟରେ ଖୁବ୍ କମ୍ ଜୁଟିଥିଲେ । ଅବଶ୍ୟ ଏ ଦିଗରେ ମହାମାନ୍ୟ କମିଶନର ରେଭେନ୍‌ସା ସାହେବ ଉତ୍କଳବାସୀଙ୍କର ଚିର ସ୍ମରଣୀୟ ।

## 'ଉତ୍କଳଦର୍ପଣ'ର 'ବିବିଧ ସମ୍ବାଦ'

'ଉତ୍କଳଦର୍ପଣ' ଥିଲା ଏକ ସାହିତ୍ୟ ପତ୍ରିକା, ତଥାପି ସାହିତ୍ୟଆଲୋଚନା ସହିତ ବିବିଧ ସମ୍ବାଦ ପରିବେଷଣ କ୍ଷେତ୍ରରେ ମଧ୍ୟ ଏହା ଅଗ୍ରଣୀ ଥିଲା । ମାସିକ 'ଉତ୍କଳଦର୍ପଣ'ର ପ୍ରତିଟି ସଂଖ୍ୟା ୨୪ ପୃଷ୍ଠା ବିଶିଷ୍ଟ ଡିମାଇ ସାଇଜର ଥିଲା । ପ୍ରତ୍ୟେକ

ସଂଖ୍ୟାର ଶେଷକୁ ପୃଷ୍ଟେ ଦୁଇ ପୃଷ୍ଠାରେ ବିଶେଷ ବିଶେଷ ସମ୍ବାଦ ପ୍ରକାଶ ପାଉଥିଲା । ସମ୍ବାଦଗୁଡ଼ିକ ସର୍ବସାଧାରଣଙ୍କ ପାଇଁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ତଥା ସମାଜର ହିତସାଧନ ପାଇଁ ଉଦ୍ଦିଷ୍ଟ ଥିଲା । 'ଉତ୍କଳ ଦର୍ପଣ' ସାହିତ୍ୟ ପତ୍ରିକାରେ ସମ୍ବାଦ ପ୍ରକାଶପାଇବା ନେଇ ଉତ୍କଳଦୀପିକା ବିରୋଧୀ ମନ୍ତବ୍ୟ ଦେବାସ୍ଥଳେ ଦର୍ପଣ ଲେଖିଥିଲା :

> ମାସିକ ପତ୍ରରେ ସମ୍ବାଦ ଦେବାର ଅନୁଚିତ ମାତ୍ର ଆମ୍ଭେମାନେ ବିଜ୍ଞାପନରେ ଲେଖିଥିଲୁ ଯେ ସାଧାରଣର ଆଗ୍ରହ ଚରିତାର୍ଥକରିବା ନିମନ୍ତେ ପ୍ରତିମାସରେ କିଛି କିଛି ସମ୍ବାଦ ଲେଖିବୁ, ସେଥିନିମନ୍ତେ ଶେଷରେ ଲେଖିଥାଉଁ ମଧ୍ଯ ଲେଖିବୁ । ଦୀପିକା ମଧ୍ୟ ଆମର ବିଜ୍ଞାପନକୁ ଅନୁଗ୍ରହପୂର୍ବକ ପତ୍ରସ୍ଥ କରିଥିଲେ । ସେହି ସମୟରେ ଏପରି ଉପଦେଶ ଦେଇଥିଲେ ଭଲ ହୋଇଥାଆନ୍ତା । (ପୃ. ୧୩୫)

ଦର୍ପଣ ପ୍ରଥମ ବର୍ଷରେ ପ୍ରକାଶିତ ମୁଖ୍ୟ ସମ୍ବାଦଗୁଡ଼ିକ ହେଲା– କାମ୍ବେଲ ସାହେବଙ୍କ ପାଠଶାଳା ପ୍ରତିଷ୍ଠା, ଜନ ବୀମସ୍‌ଙ୍କ ସମାଜସେବା, ଗୋଟିଏ ମନ୍ଦାରଗଛରେ ଧଳା ଓ ନାଲିଫୁଲ ଫୁଟିବା, ବାଲେଶ୍ୱରର ଛାତ୍ରବୃତ୍ତି ପରୀକ୍ଷା, ସ୍କୁଲ ଇନିସପେକ୍ଟର ଆର.ଏଲ. ମାର୍ଟିନଙ୍କ ବିୟୋଗ ଓ ସେଥିପାଇଁ ଶୋକ ପ୍ରକାଶ, ଭୀମପଠାର ସୌନ୍ଦର୍ଯ୍ୟ, ବାଲେଶ୍ୱର ଜିଲ୍ଲାର ସ୍କୁଲ ଗୃହ ମରାମତି ପାଇଁ ସ୍ଥାନୀୟ ରାଜପୁରୁଷ ଓ ବୀମସ୍‌ଙ୍କ ପ୍ରଚେଷ୍ଟା, କଲିକତା ନଗରୀରେ ସ୍ଥାପିତ ହିନ୍ଦୁ କଲେଜର ବିଭାଜନ ଓ ପରିଚାଳନା ଦାୟିତ୍ୱ, ବାଲେଶ୍ୱରର ମଫସଲିଆ କଚେରିଆମାନଙ୍କର ଦୁର୍ଦ୍ଦଶା, ବାଲେଶ୍ୱର ନଗରରେ ବ୍ରାହ୍ମଧର୍ମ ପ୍ରଚାର, କବି ରାଧାନାଥ ରାୟଙ୍କ ପିତା ସୁନ୍ଦରନାରାୟଣଙ୍କ ବିୟୋଗ, ବୁଢ଼ାବଳଙ୍ଗ ନଦୀରେ କୁମ୍ଭୀର ଦୌରାମ୍ଯ୍ୟ, ସମ୍ବାଦବାହିକାରେ ପ୍ରକାଶିତ ସମ୍ବାଦର ପ୍ରତିବାଦ, ବାଲେଶ୍ୱରକୁ ସପ୍ତାହେ ହେବ ଷ୍ଟିମର ନ ଆସିବାରୁ ଲୋକମାନଙ୍କର ଯାତାୟାତ ଓ ବାଣିଜ୍ୟର ଅସୁବିଧା, ଉତ୍ତମ ବୃଷ୍ଟିପାଇଁ ଚାଷୀକୁଳର ଆନନ୍ଦ, ଜଏଣ୍ଟ ଇନସ୍‌ପେକ୍ଟରଙ୍କର ସ୍କୁଲ ପରିଦର୍ଶନ ନିମିତ୍ତ ବାଲେଶ୍ୱର ନଗରକୁ ଆଗମନ, ବଙ୍ଗକବି ବାବୁ ଦୀନବନ୍ଧୁ ମିତ୍ରଙ୍କର ମୃତ୍ୟୁଜନିତ ଶୋକ ଓ ତାଙ୍କ ରଚନାବଳୀର ସୂଚନା, ବାଲେଶ୍ୱରର ରାଜା ଶ୍ୟାମାନନ୍ଦ ଦେଙ୍କ ବୈଠକଖାନାରେ ମହୀଶୂର ମୁସଲମାନ ବାଜିକରଙ୍କର ବାଜି ପ୍ରଦର୍ଶନ, ବାଲେଶ୍ୱର ମାଜିଷ୍ଟ୍ରେଟ ଓ କଲେକଟର ଶ୍ରୀଯୁକ୍ତ ଟି. ନରମନ ସାହେବଙ୍କ ବିଦେଶ ଯାତ୍ରା, ବାଲେଶ୍ୱରର ଉଇଲସନ ସାହେବଙ୍କ ବିଚାର, ମୟୂରଭଞ୍ଜ ଓ ନୀଳଗିରି ମଧ୍ୟରେ ଗଡ଼ବେଡେଇ ପଥରଖଣି ନେଇ ସୃଷ୍ଟି ହୋଇଥିବା ବିବାଦର ସମାଧାନ ପାଇଁ କମିଶନର ଟି.ଇ. ରେଭେନ୍‌ସା ସାହେବଙ୍କ ଆଗମନ, ବାବୁ ବୈକୁଣ୍ଠନାଥ

ଦେଙ୍କର ପି.ଏମ୍. ସେନାପତି ଏଣ୍ଡ୍ କମ୍ପାନୀଠାରୁ ବାଲେଶ୍ୱର ଉତ୍କଳ ପ୍ରେସ କ୍ରୟ ଇତ୍ୟାଦି ଗୁରୁତ୍ୱପୂର୍ଣ୍ଣ ସମ୍ବାଦମାନ ପ୍ରକାଶ ପାଇଥିଲା । କେତୋଟି ସଂକ୍ଷିପ୍ତ ସମ୍ବାଦର ଦୃଷ୍ଟାନ୍ତ ଦିଆଗଲା –

୧ । କାମ୍ପେଲ ସାହେବଙ୍କର କେତେଗୋଡ଼ିଏ ନୂଆ ପାଠଶାଳା ସ୍ଥାପିତ ହେଲାଣି ଏହି ବିଷୟରେ ଆମ୍ଭମାନଙ୍କର କିଲଟର ଉଦାରମତି ଜନ ବୀମସ ଅନେକ ଯତ୍ନ କରୁଅଛନ୍ତି । ଆମ୍ଭେମାନେ ଭରସାକରୁ ଯେଉଁ ଉଦ୍ଦେଶ୍ୟରେ ପାଠଶାଳା ଗୋଡ଼ିକ ବସୁଅଛି ଉକ୍ତ ମହାତ୍ମାଙ୍କ ଆନ୍ତରିକ ଯତ୍ନରେ ଶୀଘ୍ର ସେହି ଉଦ୍ଦେଶ୍ୟ ଫଳୋନ୍ମୁଖ ହେବ ।

୨ । ଆମ୍ଭମାନଙ୍କର ସ୍କୁଲ ଇନିସ୍‌ପେକ୍‌ଟର ଆର. ଏଲ. ମାର୍ଟିନ ସାହେବଙ୍କର ହଠାତ୍ ମୃତ୍ୟୁଶ୍ରବଣ କରି ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ହୋଇଅଛୁଁ, ହା ଦେବ ! ଯେଉଁମାନଙ୍କର ମୃତ୍ୟୁ ଅନେକ ଲୋକଙ୍କର ପ୍ରାର୍ଥନୀୟ ଯେଉଁମାନେ ମଲେ ମହୀର ଭାର ଊଣା ହେବ ଏମନ୍ତ କେତେ ପାପାତ୍ମା ଦୀର୍ଘାୟୁ ହୁଅନ୍ତି ମାତ୍ର ଯେଉଁ ସାଧୁମାନଙ୍କ ଜୀବନ ଉପରେ ଅନେକ ଲୋକେ ଆଶା ମନ୍ଦିର ନିର୍ମାଣ କରନ୍ତି ସେହିମାନେ ନିଷ୍ଠୁର କୃତାନ୍ତର କରାଳ କବଳରେ ଆଗେ ପଡ଼ନ୍ତି । ମାର୍ଟିନ ସାହେବଙ୍କର ଚରିତ୍ର ଅତି ଉଦାର ଥିଲା, ମାର୍ଟିନ ଯେଡ଼େ ଦୟାଳୁ, ମିଷ୍ଟ ଭାଷୀ ଓ ଉପକାରୀ ଥିଲେ । ସେପରି ସାହେବ ସହସ୍ର ଭିତରେ ଜଣେ ଦୁଇଜଣ ଦେଖିବା ଦୁଷ୍କର ।

୩ । ବାଲେଶ୍ୱର ପଶ୍ଚିମ-ଉତ୍ତର ପ୍ରାୟ ୬ କ୍ରୋଶ ଦୂରରେ ଭୀମପୀଠା ନାମକ କେତେଗୋଡ଼ିଏ ବହୁତ ପ୍ରସ୍ତର ସ୍ତୂପ ଅଛି । . . .ଏହିପରି ମନୋହର ସ୍ଥାନ ବାଲେଶ୍ୱର ଜିଲ୍ଲା ମଧ୍ୟରେ ବିରଳ ଲକ୍ଷିତ ହୁଅଇ । ମାତ୍ର ଆଶ୍ଚର୍ଯ୍ୟର ବିଷୟ ଏହିକି ବାଲେଶ୍ୱରର ଅତି ଅଳ୍ପଲୋକେ ତାହା ଦେଖିଛନ୍ତି । ଦେଖିଲାକ୍ଷଣି ବୋଧହେବ କୌଣସି ପ୍ରକାଣ୍ଡ ପର୍ବତ ଉତ୍ପାଟିତ ହୋଇ ତାହାର ମୂଳରେ ଅବଶିଷ୍ଟ ଖଣ୍ଡଶଃ ବିକୀର୍ଣ୍ଣ ହୋଇଅଛି । . . .ଭୀମପୀଠା ଉପରେ ଛିଡ଼ା ହେଲେ ଚତୁର୍ଦ୍ଦିଗସ୍ଥ ଦୃଶ୍ୟ ପରମ ରମଣୀୟ ଦିଶେ । ଆମ୍ଭେମାନେ ସେଥିଉପରେ ବସି ସୂର୍ଯ୍ୟାସ୍ତ ଦେଖିଲୁ । ପ୍ରକୃତିପ୍ରିୟ ପାଠକଙ୍କୁ ଅନୁରୋଧ କରୁଅଛୁ ଅବକାଶ ଥିଲାବେଳେ ଯାଇ ସେହି ସ୍ଥାନ ଦେଖିଆସନ୍ତୁ ।

୪ । ଆମ୍ଭମାନଙ୍କର ପରମାତ୍ମୀୟ ସ୍ୱର୍ଗତ ସୁନ୍ଦରନାରାୟଣ ରାୟ ଓଲାଓଠା ରୋଗଗ୍ରସ୍ତ ହୋଇ ଉକ୍ତ ରାତ୍ରରେ ଅକାଳେ ମୃତ୍ୟୁମୁଖରେ ପତିତ ହୋଇଅଛନ୍ତି । ସୁନ୍ଦରବାବୁ ଜଣେ ପ୍ରକୃତ ହିନ୍ଦୁ, ସ୍ପଷ୍ଟ ବକ୍ତା, ପରିଶ୍ରମୀ,

କାର୍ଯ୍ୟଦକ୍ଷ, ପରୋପକାରୀ ଓ ମତବ୍ୟୟୀ ଥିଲେ । ପାରସ୍ୟ ଭାଷାରେ ଏହାଙ୍କର ଉତ୍ତମ ପ୍ରତିପତ୍ତି ଥିଲା । . . .ସୁନ୍ଦରବାବୁ ବାଲେଶ୍ୱରର ସଦର କାନନଗୋଇ ଥିଲେ, ଅତିଶୀଘ୍ର କିଲେଟରୀ ସେରେସ୍ତାଦାର ହେବାର କଥା ହୋଇଥିଲା । କିନ୍ତୁ ପରମେଶ୍ୱରଙ୍କର କେମନ୍ତ ବିଡ଼ମ୍ବନା ଅକାଳରେ ମୃତ୍ୟୁମୁଖରେ ପତିତ ହେଲେ !!!

୫ । ପ୍ରାୟ ଦୁଇ ସପ୍ତାହ ହେବ ବ୍ରାହ୍ମଧର୍ମ ପ୍ରଚାରକ ଶ୍ରୀଯୁକ୍ତ ବାବୁ ଅଘୋରନାଥ ଗୁପ୍ତ ଏ ନଗରରେ ଉପସ୍ଥିତ ହୋଇଅଛନ୍ତି । ଏ ଜଣେ ପ୍ରକୃତ ବ୍ରାହ୍ମ, ଧାର୍ମିକ ଓ ସଦ୍‌ବକ୍ତା । ଦୁଇ ତିନିଥର ବାହ୍ମଭ୍ରାତାମାନଙ୍କୁ ଡକାଇ ଅତି ଉତ୍ତମ ରୂପରେ ଉପଦେଶ ଦେଇଥିଲେ । ଗତ ୨୩ ତାରିଖ ବୁଧବାର ରାତ୍ର-୬ ଘଣ୍ଟା ଠାରୁ ୯ ଘଣ୍ଟା ପର୍ଯ୍ୟନ୍ତ ଇଂରାଜୀ ଇସ୍କୁଲ ଗୃହରେ ମନୁଷ୍ୟ ଜୀବନର ପ୍ରକୃତ ଉଦ୍ଦେଶ୍ୟ ବିଷୟକ ଏକ ସୁଦୀର୍ଘ ବକ୍ତୃତା କରିଥିଲେ । ସେଠାରେ ପ୍ରାୟ ଦେଢ଼ଶହ ଲୋକ ଉପସ୍ଥିତ ଥିଲେ । ସମସ୍ତେ ଏକ ମନରେ ବକ୍ତୃତା ଶୁଣି ଅତିଶୟ ପ୍ରୀତ ହୋଇଅଛନ୍ତି ।

୬ । ଆମ୍ଭେମାନେ ଅତି ଦୁଃଖର ସହିତ ଅବଗତ ହେଲୁ ଯେ ବଙ୍ଗ କବି ଶ୍ରୀଯୁକ୍ତ ବାବୁ ଦୀନବନ୍ଧୁ ମିତ୍ର ରାୟବାହାଦୁର ମାନବ ଲୀଳା ସମ୍ବରଣ କରିଅଛନ୍ତି । ଏ ଜଣେ ପ୍ରକୃତ କବି ଏବଂ ନାଟକ ଲେଖକ ଥିଲେ । ବଙ୍ଗ ଭାଷାରେ ଅନେକ ଗୁଡ଼ିଏ କାବ୍ୟ ଓ ନାଟକ ରଚନା କରି ଯାଇଅଛନ୍ତି; ତନ୍ମଧ୍ୟରେ 'ସୁରଧୁନୀ କାବ୍ୟ', 'ଲୀଳାବତୀ ନାଟକ' 'ନବୀନ ତପସ୍ୱିନୀ ନାଟକ' 'ସଧବାର ଏକାଦଶୀ ପ୍ରହସନ' 'ଜାମାଇ ବାରକ ପ୍ରହସନ' 'ହେମଲତା' ଏବଂ 'ଦ୍ୱାଦଶ କବିତାବଳୀ' ସର୍ବପ୍ରଧାନ ।

୭ । ଆମ୍ଭମାନଙ୍କର କମିଶନର ଶ୍ରୀଯୁକ୍ତ ଟି.ଇ. ରାଭନ୍‌ସା ସାହେବ ୨୦ ତାରିଖ ଡିସେମ୍ବର ଏଠାରେ ଉପସ୍ଥିତ ହେବେ । ମୟୂରଭଞ୍ଜ ଓ ନୀଳଗିରି ମଧ୍ୟରେ ଗଡ଼ବେଡେଇ ପଥର ଖଣି ନେଇ ଯେଉଁ ବିବାଦ ଚଳୁଅଛି ତାହା ଭଞ୍ଜନ କରାହିଁ ଆସିବାର ପ୍ରଧାନ ଉଦ୍ଦେଶ୍ୟ ।

ସମ୍ବାଦଗୁଡ଼ିକର ଭାଷା ସରଳ, ଭାବପ୍ରକାଶ ସହଜ ଓ ଜନବୋଧ୍ୟ, ବର୍ଣ୍ଣନା ଶୈଳୀ ସାବଲୀଳ ଓ ହୃଦୟସ୍ପର୍ଶୀ ।

## 'ଉତ୍କଳଦର୍ପଣ'ର 'ରହସ୍ୟ'

'ଉତ୍କଳ ଦର୍ପଣ' ପ୍ରଥମ ବର୍ଷ ପ୍ରଥମ ସଂଖ୍ୟାରୁ 'ରହସ୍ୟ' ଶୀର୍ଷକରେ କେତେକ ଚୂର୍ଣ୍ଣକ (anecdote) ପ୍ରକାଶିତ । ସପ୍ତମ ସଂଖ୍ୟାଠାରୁ ଏହି 'ରହସ୍ୟ' 'ଦର୍ପଣ'ରେ

ଆଉ ପ୍ରକାଶିତ ହୋଇନାହିଁ । 'ଦର୍ପଣ'ର ପଞ୍ଚମ ସଂଖ୍ୟା ଉପଲବ୍ଧ ହୋଇ ନ ଥିବାରୁ ସେଥିରେ 'ରହସ୍ୟ' ପ୍ରକାଶିତ ହୋଇଥିଲା କି ନାହିଁ, କହିହେବ ନାହିଁ । ପ୍ରଥମ ସଂଖ୍ୟାଠାରୁ ଷଷ୍ଠ ସଂଖ୍ୟା ପର୍ଯ୍ୟନ୍ତ, ପାଞ୍ଚଟି କିସ୍ତିରେ ମୋଟ ୨୧ଟି ଚୂର୍ଣ୍ଣକ 'ରହସ୍ୟ' ଶିରୋନାମାରେ ପ୍ରକାଶିତ ।

ଏହି ଚୂର୍ଣ୍ଣକଗୁଡ଼ିକରେ ବାସ୍ତବ ଜୀବନରୁ ଗୃହୀତ ଘଟଣାବଳୀ ଚୁମ୍ବକରେ ଉପସ୍ଥାପିତ । ସଂକ୍ଷିପ୍ତ ହେଲେହେଁ ଏଗୁଡ଼ିକ ଭାବବ୍ୟଞ୍ଜକ – ବ୍ୟକ୍ତିର ନିର୍ବୋଧତା, ଅହଂକାର ଓ ମିଥ୍ୟାବାଦିତା ଆଦି ଏହି ସମସ୍ତ ଚୂର୍ଣ୍ଣକରେ ଅଭିବ୍ୟକ୍ତ । ଦୃଷ୍ଟାନ୍ତ ସ୍ୱରୂପ, ପ୍ରଥମ ସଂଖ୍ୟାରେ ପ୍ରକାଶିତ ଦେଶୀ ବୈଦ୍ୟମାନଙ୍କର ରୋଗ ନିରୂପଣକୁ ବ୍ୟଙ୍ଗ କରାଯାଇ ବର୍ଣ୍ଣନା କରାଯାଇଛି :

> ଶୀତକାଳ ଅନ୍ଧାର ରାତ୍ରୀରେ ଜଣେ ବୈଦ୍ୟ ଜଣକ ଦୁଆରରେ ଆସି ଉପସ୍ଥିତ ହେଲେ । ଗୃହସ୍ଥ ବୈଦ୍ୟ ଦେଖି କହିଲେ ଆପଣ ମୋହ ହାତ ଦେଖନ୍ତୁ । ବୈଦ୍ୟ ଦେଖି କହିଲେ ଆପଣଙ୍କର ପୀତ୍ତ ବୃଦ୍ଧି ହୋଇଅଛି । ସେଠାରେ ଆଉ ଜଣେ ବସିଥିଲେ ସେ କହିଲେ ମୋହର ହାତ ଦେଖନ୍ତୁ ଭଲା ? ବୈଦ୍ୟ କହିଲେ ଦେଖାଓ । ସେ ନ ଦେଖାଇ ଗୃହସ୍ଥ ପୁଣି ଆପଣା ହାତ ତାହାଙ୍କ କାଖତଳ ଦେଇ ଦେଖାଇଲେ । ସେଠାରୁ ବୈଦ୍ୟ ଦେଖି କହିଲେ ତୁମ୍ଭର ବାତ ବୃଦ୍ଧି ହୋଇଅଛି । ଗୃହସ୍ଥ ହସିଲେ, ବୈଦ୍ୟ ଅପ୍ରସ୍ତୁତ ହୋଇ ପ୍ରସ୍ଥାନ କଲେ !!! (ପୃ.୨୩)

ଉପରବର୍ଣ୍ଣିତ ଚୂର୍ଣ୍ଣକରେ ବୈଦ୍ୟଙ୍କର ବିଦ୍‌ବତ୍ତାକୁ କେବଳ ପରିହାସ କରାଯାଇ ନାହିଁ, ଆମର ଚିକିତ୍ସାପଦ୍ଧତିର ଅନ୍ତଃସାରଶୂନ୍ୟତା ବ୍ୟଞ୍ଜନାତ୍ମକ ଭାବରେ ଉପସ୍ଥାପିତ । ତେଣୁ ଏହି ରହସ୍ୟଗୁଡ଼ିକ ଥିଲା ଦର୍ପଣର ସବୁଠାରୁ ରସାଳ ବସ୍ତୁ । ହାସ୍ୟରସଧର୍ମୀ ଏହି ରଚନାଗୁଡ଼ିକ ଯେଭଳି ସୁଖପାଠ୍ୟ; ସେହିପରି ଶିକ୍ଷାପ୍ରଦ ମଧ୍ୟ । କିନ୍ତୁ ସପ୍ତମ ସଂଖ୍ୟାଠାରୁ ଏଭଳି 'ରହସ୍ୟ' ପ୍ରକାଶିତ ନ ହେବା ଓଡ଼ିଆ ସାହିତ୍ୟ ପାଇଁ ଦୁର୍ଭାଗ୍ୟର ବିଷୟ । ସମ୍ଭବତଃ, ପତ୍ରିକା ସମ୍ପାଦକଙ୍କ ନିର୍ଦ୍ଦେଶ ହେତୁ ବା ରୁଚି ଦୃଷ୍ଟିରୁ 'ରହସ୍ୟ' ସପ୍ତମ ସଂଖ୍ୟାରେ ସ୍ଥାନ ପାଇନାହିଁ ।

## 'ଉତ୍କଳଦର୍ପଣ'ର ଦୋଷତ୍ରୁଟି

'ଉତ୍କଳଦର୍ପଣ' ଓଡ଼ିଆ ସାହିତ୍ୟର ପ୍ରଥମ ନିରୋଳା ସାହିତ୍ୟ ପତ୍ରିକା । 'ପ୍ରବୋଧ ଚନ୍ଦ୍ରିକା' ପତ୍ରିକା ଓ 'ବୋଧଦାୟିନୀ' ଅଂଶକୁ ଏହାର ଅଗ୍ରଜ କୁହାଯାଇଥାଏ । 'ପ୍ରବୋଧଚନ୍ଦ୍ରିକା'କୁ କୌଣସି ଗୁଣରେ 'ଉତ୍କଳ ଦର୍ପଣ' ସହିତ ତୁଳନା

କରାଯାଇପାରିବ ନାହିଁ । କାରଣ ମିଶନାରୀମାନଙ୍କ ଦ୍ୱାରା ପ୍ରକାଶିତ ଏହି ପତ୍ରିକା ଅନୁବାଦ ଓ ସମ୍ବାଦଭିତ୍ତିକ । ଆଧୁନିକ ସାହିତ୍ୟର କୌଣସି ରୂପର ମୌଳିକ ରଚନା ଏଥିରେ ମୁଦ୍ରିତ ହୋଇନାହିଁ । 'ବୋଧଦାୟିନୀ ଓ ବାଲେଶ୍ୱର ସମ୍ବାଦବାହିକା' ଏପର୍ଯ୍ୟନ୍ତ ଆବିଷ୍କୃତ/ସଂଗୃହୀତ ହୋଇ ନଥିଲାବେଳେ ଏହା ସଂପର୍କରେ ମତବ୍ୟକ୍ତ କରିବା ନିରାପଦ ନୁହେଁ । ତେଣୁ 'ଉତ୍କଳଦର୍ପଣ' ଯଥାର୍ଥରେ ଓଡ଼ିଶାର ପ୍ରଥମ ମାସିକ ସାହିତ୍ୟପତ୍ରିକା । ଏହାର ଆଦର୍ଶ ଥିଲା ବଙ୍ଗଳା ମାସିକ ପତ୍ରିକା ବଙ୍କିମଚନ୍ଦ୍ର-ସମ୍ପାଦିତ 'ବଙ୍ଗଦର୍ଶନ', ଯାହା 'ଉତ୍କଳଦର୍ପଣ'ର ଠିକ୍ ବର୍ଷେ ପୂର୍ବରୁ ପ୍ରକାଶିତ । ପୁଣି ଉଭୟ ପତ୍ରିକା ମଧ୍ୟରେ ଯୋଗାଯୋଗ ଥିଲା – 'ଉତ୍କଳଦର୍ପଣ'ର ଏକ ସଂକ୍ଷିପ୍ତ ସମୀକ୍ଷା 'ବଙ୍ଗଦର୍ଶନ'ରେ ପ୍ରକାଶିତ । ସେହି ଦୃଷ୍ଟିରୁ ଉଭୟ ପତ୍ରିକା ମଧ୍ୟରେ ଏକ ତୁଳନାତ୍ମକ ଆଲୋଚନା କରାଯାଇ 'ଉତ୍କଳ ଦର୍ପଣ'ର ଆପେକ୍ଷିକ ମୌଳିକତା ଓ ଦୁର୍ବଳତା ବିଶ୍ଳେଷଣ କରାଯାଇପାରେ । ମାତ୍ର ସେସବୁ ପାଇଁ ଏଠାରେ ସ୍ଥାନ ଓ ଅବସରର ଅଭାବ ।

ସମକାଳର ସମ୍ବାଦପତ୍ରଗୁଡ଼ିକରେ, ବିଶେଷତଃ 'ଉତ୍କଳ ଦୀପିକା'ରେ 'ଉତ୍କଳ ଦର୍ପଣ'ର ଦୋଷ ପ୍ରଦର୍ଶନ କରି ଅନେକ ଲେଖା ପ୍ରକାଶିତ । 'ଉତ୍କଳ ଦୀପିକା'ରେ ଦର୍ପଣର ରଚନା ନିର୍ବାଚନ, ଭାଷା ଓ ରଚନାନୀତି ଆଦି ସମ୍ପର୍କରେ ବିରୂପ ମନ୍ତବ୍ୟ ଦିଆଯାଇଥିଲା ଓ 'ଦର୍ପଣ'ର ସଂପାଦକ ସେସବୁକୁ ଖଣ୍ଡନ କରିବାକୁ ଯଥାସାଧ୍ୟ ଉଦ୍ୟମ ମଧ୍ୟ କରିଥିଲେ । ଶହେ ଚାଳିଶ ବର୍ଷ ଅତିକ୍ରାନ୍ତ ହେଲା ପରେ ବର୍ତ୍ତମାନର ମାନଦଣ୍ଡରେ ସେ ସମୟର ରଚନାକୁ ବିଚାର କଲେ, ସେଥିରେ ଅନେକ ଦୋଷ; ଯଥା – ଶବ୍ଦାଡ଼ମ୍ବର ପ୍ରିୟତା, କୃତ୍ରିମତା, ଅଳଙ୍କାର ବାହୁଲ୍ୟ, ବଙ୍ଗଳା ପ୍ରୟୋଗ ଆଦି ଆଖିରେ ପଡ଼ିବା ସ୍ୱାଭାବିକ । କିନ୍ତୁ ସ୍ମରଣ ରଖିବାକୁ ହେବ – ଆଧୁନିକ ସାହିତ୍ୟର ଆଦି ପର୍ଯ୍ୟାୟରେ 'ଉତ୍କଳ ଦର୍ପଣ'ର ଆବିର୍ଭାବ । ଆଧୁନିକ ସାହିତ୍ୟର ଭାଷା, ରଚନାରୀତ, ରୂପସମୂହ 'ଉତ୍କଳ ଦର୍ପଣ' ପୃଷ୍ଠାରେ ହିଁ ଗଢ଼ିଉଠିଛି ।

## ଉପସଂହାର

ମୃତ୍ୟୁଞ୍ଜୟ ରଥ ଓ ଦୁର୍ଗାଚରଣ ରାୟଙ୍କୁ ବାଦ୍ ଦେଲେ ଅନ୍ୟ ଯେଉଁମାନେ 'ଉତ୍କଳ ଦର୍ପଣ' ସମ୍ପର୍କରେ ଅଧ୍ୟୟନ କରିଛନ୍ତି, ସେହି ସମସ୍ତଙ୍କ ଅଧ୍ୟୟନ ପରୋକ୍ଷ ତଥ୍ୟ ଉପରେ ଆଧାରିତ । ତେଣୁ ଓଡ଼ିଆ ସାହିତ୍ୟର ପ୍ରଥମ ଉପନ୍ୟାସ 'ଧନଞ୍ଜୟ ସିଂହ' ୧୮୭୩ ମସିହାରେ ପ୍ରକାଶିତ ହୋଇଥିଲେ ବି ଆମର କୌଣସି ଆଲୋଚକ/ଗବେଷକ ତାହାକୁ ସ୍ପର୍ଶ କରିନାହାନ୍ତି । ଏହ ଦୃଷ୍ଟିରୁ ଉପରେ

କରାଯାଇଥିବା ଆଲୋଚନା 'ଉତ୍କଳ ଦର୍ପଣ' ସମ୍ପର୍କରେ ପ୍ରଥମ ମୌଳିକ ଉପାଦାନଭିତ୍ତିକ ଆଲୋଚନା । 'ଉତ୍କଳ ଦର୍ପଣ'ରେ ପ୍ରକାଶିତ ବିଷୟସମୂହର ପରିଚୟ ଉପସ୍ଥାପନ ତାହାର ଅଭୀଷ୍ଟ । 'ଉତ୍କଳ ଦର୍ପଣ' ଦେଖିବାର ସୁଯୋଗ ପାଇ ନଥିଲେ ମଧ୍ୟ ସାମ୍ପ୍ରତିକ କାଳରେ ଜଣେ ବିଶିଷ୍ଟ ଗବେଷକ ପ୍ରଫେସର ବାଉରୀବନ୍ଧୁ କର 'ଉତ୍କଳ ଦର୍ପଣ' ସମ୍ପର୍କରେ ଲେଖିଥିଲେ :

> ଊନବିଂଶ ଶତକର ଉଚ୍ଚକୋଟୀର ସାହିତ୍ୟ ପତ୍ରିକା ଭାବରେ 'ଉତ୍କଳ ଦର୍ପଣ'ର ଗୁରୁତ୍ୱ ଊଣା ନୁହେଁ । ସେ କାଳର ପତ୍ରପତ୍ରିକାମାନଙ୍କ ମଧ୍ୟରେ ଏହି ପତ୍ରିକାର ଏକ ସ୍ୱତନ୍ତ୍ର ସାହିତ୍ୟିକ ମର୍ଯ୍ୟାଦା ରହିଛି । ବୋଧହୁଏ ସାହିତ୍ୟିକ ଗୌରବଦୀପ୍ତ ଓଡ଼ିଆ ପତ୍ରିକା ଭାବରେ 'ଉତ୍କଳ ଦର୍ପଣ' ହେଉଛି, ଏ ଜାତିର ପ୍ରଥମ ସାହିତ୍ୟପତ୍ରିକା । ପୁଣି ଆଧୁନିକ ଓଡ଼ିଆ ଗଦ୍ୟସାହିତ୍ୟର ବିକାଶରେ ଏହି ପତ୍ରିକାଟିର ଦାନ ଅବିସ୍ମରଣୀୟ । ଯଥାର୍ଥରେ ତଦାନୀନ୍ତନ ସମୟରେ 'ଉତ୍କଳ ଦର୍ପଣ' ଥିଲା ଓଡ଼ିଆ ସାହିତ୍ୟରେ ନବଚେତନାର ବାହକ । ଏ ସକାଶେ ଓଡ଼ିଆ ସାହିତ୍ୟ ଆଲୋଚନାରେ ଏହ ସାହିତ୍ୟ ପତ୍ରିକାଟି ବାରମ୍ବାର ସ୍ମରଣକୁ ଆସେ । (ଅନ୍ୱେଷା – ୧/୩; ଅକ୍ଟୋବର, ୧୯୮୬)

'ଗୌରବଦୀପ୍ତ ଓଡ଼ିଆ ପତ୍ରିକା', 'ଉତ୍କଳ ଦର୍ପଣ'ର ଯଥାର୍ଥ ଗୌରବର ପ୍ରଖ୍ୟାପନ ପାଇଁ ଏହା ସମ୍ପର୍କରେ ଅଧିକ ଚର୍ଚ୍ଚାର ଆବଶ୍ୟକତା ରହିଛି । ଏଭଳି ଚର୍ଚ୍ଚାପାଇଁ ପଥ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ଏହି ପରିଚୟଧର୍ମୀ ଆଲୋଚନା ପ୍ରସ୍ତୁତ ।

**ସମ୍ପାଦକ**

—

# ସୂଚନା

ଏଠାରେ ପୁନଃମୁଦ୍ରିତ 'ଉତ୍କଳ-ଦର୍ପଣ'ର ପ୍ରଥମ ବର୍ଷ ଏଗାରଟି ସଂଖ୍ୟାବିଶିଷ୍ଟ; କାରଣ ଏହି ସଂଗ୍ରାହକ ପାଇଥିବା 'ଉତ୍କଳ-ଦର୍ପଣ' ଭିତରେ ପଞ୍ଚମ ସଂଖ୍ୟାଟି ନ ଥିଲା । ପତ୍ରିକାରେ କୌଣସି ଲେଖା ସହ ଲେଖକଙ୍କ ନାମ ମୁଦ୍ରିତ ହେଉନଥିଲା । ସମ୍ଭବତଃ, ଲେଖକଙ୍କ ନାମ ପ୍ରତି ସଂଖ୍ୟାର ମଲାଟରେ ଥିବା ସୂଚୀପତ୍ରରେ ମୁଦ୍ରିତ ହେଉଥିଲା । ଦୁର୍ଭାଗ୍ୟକ୍ରମେ ସଂଗୃହୀତ 'ଉତ୍କଳ-ଦର୍ପଣ'ରେ କୌଣସି ସଂଖ୍ୟାର ମଲାଟ ନଥିଲା । ତେଣୁ ଲେଖାଗୁଡ଼ିକର ଲେଖକ କିଏ ଆଜି ଜାଣିବା ସମ୍ଭବ ନୁହେଁ । ମୃତ୍ୟୁଞ୍ଜୟଙ୍କ ଉଲ୍ଲେଖ ଓ ପରେ ମୁଦ୍ରିତ 'ରାଧାନାଥ ଗ୍ରନ୍ଥାବଳୀ' ଓ 'ମଧୁସୂଦନ ଗ୍ରନ୍ଥାବଳୀ'କୁ ଆଶ୍ରୟ କରି କେତେକ ଲେଖକଙ୍କୁ ନିର୍ଦ୍ଦିଷ୍ଟ କରିହୁଏ ।

ଠିକ୍ ସେହିଭଳି ପ୍ରଥମ ସଂଖ୍ୟାର ପ୍ରଥମ ଚାରି ପୃଷ୍ଠା ଓ ସପ୍ତମ ସଂଖ୍ୟାର ପ୍ରଥମ ଆଠ ପୃଷ୍ଠା ନାହିଁ । ତେଣୁ ସେହି ପୃଷ୍ଠାଗୁଡ଼ିକରେ ଥିବା ରଚନା ବା ରଚନାର ଅଂଶବିଶେଷକୁ ସଂଗ୍ରହ କରାଯାଇପାରି ନାହିଁ ।

ଷଷ୍ଠ ସଂଖ୍ୟାରେ 'ବିବେକୀ' ପ୍ରବନ୍ଧ ଆରମ୍ଭ ହୋଇ ବାକ୍ୟର ଅଧାରେ ବନ୍ଦ ହୋଇଛି । ପରବର୍ତ୍ତୀ ସଂଖ୍ୟାରେ ଅନ୍ୟ ଏକ ବାକ୍ୟରୁ ଆରମ୍ଭ ହୋଇଛି । ଶଶିଭୂଷଣ ରାୟ 'ରାଧାନାଥ ଗ୍ରନ୍ଥାବଳୀ'ର ଦ୍ୱିତୀୟ ସଂରକ୍ଷଣରେ 'ବିବେକୀ' ପ୍ରବନ୍ଧକୁ ସେଥିରେ ସ୍ଥାନିତ କରିଛନ୍ତି ଓ 'ଉତ୍କଳ-ଦର୍ପଣ'ରେ ଥିବା ଅସଂଗତିକୁ ଦୂର କରିଛନ୍ତି । ସେହିପରି ଷଷ୍ଠ ସଂଖ୍ୟାରେ 'ବିବେକୀ' ପ୍ରବନ୍ଧର ଖଣ୍ଡିଆ ଅଂଶ ସହ ଯୋଡ଼ିହୋଇ 'ଧନଞ୍ଜୟ ସିଂହ' ଉପନ୍ୟାସର ଦ୍ୱିତୀୟ ପରିଚ୍ଛେଦର ଶେଷାଂଶ ସ୍ଥାନିତ । ମୂଳ 'ଉତ୍କଳ-ଦର୍ପଣ'ରେ 'ଧନଞ୍ଜୟ ସିଂହ' 'ବିବେକୀ'ରେ ଯୋଡ଼ି ହୋଇଯିବାରୁ 'ଧନଞ୍ଜୟ ସିଂହ' ଆରମ୍ଭ ହେବା ସ୍ଥାନରେ ତାହାର ଉଲ୍ଲେଖ ମଧ ନାହିଁ ।

ପୁନଃମୁଦ୍ରଣ ବେଳେ ପ୍ରତ୍ୟେକ ଲେଖାର ବନାନକୁ ଅପରିବର୍ତ୍ତିତ ରଖାଯିବାକୁ ଚେଷ୍ଟା କରାଯାଇଛି । ବେଳେ ବେଳେ ଅର୍ଥବୋଧ ପାଇଁ ଯତି ଚିହ୍ନରେ ସାମାନ୍ୟ ପରିବର୍ତ୍ତନ କରାଯାଇଛି ।

**ସଂପାଦକ**

ପ୍ରଥମ ବର୍ଷ ପ୍ରଥମ ସଂଖ୍ୟା
ଜାନୁୟାରୀ, ୧୮୭୩

# ବିବେକୀ (ପ୍ରବନ୍ଧ)

## ମାନବ ଜୀବନରେ ଦୁଃଖର କାରଣ

ମନୁଷ୍ୟକୁ କେତେ କଷ୍ଟ, ଶୋକ ଅଭାବ ସହ୍ୟ କରିବାକୁ ହୁଏ, ତାହାର କଳନା କିଏ କରିବ ? ମନୁଷ୍ୟକୁ କେତେ ଦୁର୍ଦ୍ଦୈବର ଅଧୀନ ହେବାକୁ ହୁଏ, କିଏ କହିବ ? ଏଣୁ ଯେ ପ୍ରବନ୍ଧ ତାହାର ମନର ଆର୍ତ୍ତି ଫେଡ଼ିପାରେ ଏପରି ପ୍ରବନ୍ଧରେ ସମସ୍ତଙ୍କର ଆସ୍ଥା ହେବାର ଦିଶୁଅଛି । ଘୋର ବର୍ଷା, ଘରକାନ୍ଥ ପାଣି ଛାଟରେ ଖସି ପଡୁଅଛି, ବାୟୁ ବେଗରେ ବହୁଅଛି । ସେପରି ପ୍ରବନ୍ଧ ଲେଖିବା ପାଇଁ ଏ ଅନୁକୂଳ ଦିନ ଅଟେ । କେତେଗୁଡ଼ିଏ ଗୃହସୁଲଭ ସୁଖ ଥିଲେ ଏପରି ଝଟିକା କଷ୍ଟଦାୟକ ବୋଲି ପ୍ରତୀୟମାନ ହୁଏ ନାହିଁ । ବରଂ ସୁଖକର ବୋଧହୁଏ । ଆମ୍ଭାକୁ ମଧ ଅନେକ ଝଟିକା ସହିବାକୁ ହୁଏ । ଝଟିକା କେବଳ ଭୌତିକ ସଂସାରରେ ଅଛି, ଏମନ୍ତ ନୁହେଁ । ଆଧାତ୍ମିକ ସଂସାରରେ ଏପରି ଝଟିକା, ଏପରି ପ୍ରବନ୍ଧ ଝଟିକା ଥରକୁଥର ଘଟିଅଛି ଓ ଘଟୁଅଛି । କେତେଗୁଡ଼ିଏ ପୋଥି ଆମ୍ଭ ପାଖରେ ସହଚର ପ୍ରାୟ ଥାନ୍ତି । ଏମାନଙ୍କ ପ୍ରାୟ ବିପତ୍‌ବନ୍ଧୁ ମିଳିବାର ଦୁଷ୍କର ଅଟେ । ଏମାନେ ଭୌତିକ ଝଟିକାର କଷ୍ଟ ନିବାରଣ କରନ୍ତି । ଆଧାତ୍ମିକ ଝଟିକାର କଷ୍ଟ ନିବାରଣ କରନ୍ତି । ଝଡ଼ି ବର୍ଷାବେଳେ ବାହାରି ନ ପାରିଲେ ଏମାନଙ୍କ ସଙ୍ଗେ ଆଳାପ କରି ଚିତ୍ତର ସୁଖ ଉପୁଜେ । ଅଶ୍ରୁ ବର୍ଷା ବେଳେ ମଧ ଉଣା ସାନ୍ତ୍ୱନା ମିଳେ ନାହିଁ । ପାଠକ ! ମୁଁ ଯେଉଁ ସୁଖ ଲଭୁଅଛି, ତୁମ୍ଭେ ସେଥିରେ ଅଂଶୀ ହେବ ? ଏହାକୁ ଯେବେ ସୁଖ ମଣ, ଅଂଶୀ ହେଲେ ମୋ ସୁଖ ବଢ଼ିବ ।

ପୋଥିଗୁଡ଼ିକ ଉପରେ ଆଖି ପଡ଼ିଲାକ୍ଷଣି କେତେ ଇଷ୍ଟବ୍ୟକ୍ତି ଏକାବେଳକେ ସ୍ମୃତି ଅଗଣାରେ ଆବିର୍ଭୂତ ହୁଅନ୍ତି । ଏମାନେ ମନୁଷ୍ୟର ପରମ ମିତ୍ର ଅଟନ୍ତି । ବିପନ୍ନ ବ୍ୟକ୍ତିର ନିର୍ବେଦ ଉଣା କରିବା ପାଇଁ ଏମାନେ କେମନ୍ତେ ତେଜସ୍କର, କେମନ୍ତେ ସାରବାନ୍ କଥାଗୁଡ଼ିଏ କହିଅଛନ୍ତି, ପଢ଼ିଲାକ୍ଷଣି ତୁମ୍ଭେ ଭାଳିବ, ''ଏମାନେ କିଛି ଛାଡ଼ି ନାହାନ୍ତି ।'' ମାତ୍ର ତାହା ନୁହେଁ ; ଯେତେ ଚଷା ହେଉ ପଛକେ ମନୁଷ୍ୟ ହୃଦୟରେ ପଡ଼ିଆ ଭୂମିର କେବେହେଁ ଅଭାବ ନାହିଁ ।

କେତେକ ଲୋକ ଅଛନ୍ତି, ସେମାନେ ମଣନ୍ତି ଯେ, ସହସ୍ର କଷ୍ଟ, ସହସ୍ର ଦୁର୍ଦ୍ଦୈବ ଘଟିଲେ ସୁଦ୍ଧା ସେମାନେ କାତର ହେବେ ନାହିଁ, ସେମାନଙ୍କର ଧୈର୍ଯ୍ୟ ସେମାନଙ୍କୁ ସମ୍ଭାଳି ନେବ । କେତେକ ଲୋକ ଅଛନ୍ତି, ସେମାନେ ମଣନ୍ତି ଯେଡ଼େ ପ୍ରଲୋଭନ

ହେଉ ପଛକେ କାହିଁରେ ହିଁ ସେମାନଙ୍କର ମନ ବିଚଳିତ ହେବ ନାହିଁ । ପରୀକ୍ଷା ଆଗେ ଏପରି ଦମ୍ଭ, ଏପରି ଆତ୍ମପ୍ରତ୍ୟୟ ଭଲ ନୁହେଁ । ଏହି ଦମ୍ଭ, ଏହି ଆତ୍ମପ୍ରତ୍ୟୟର ହେତୁ କଣ ? ସମସ୍ତେ ମନେ ବିଚାରନ୍ତି, "ମୋର କଣ ବୁଦ୍ଧି ନାହିଁ ? ସେମାନଙ୍କର କଣ ବୁଦ୍ଧି ନାହିଁ ? ବୁଦ୍ଧି ଘେନି କାର୍ଯ୍ୟ କଲେ ଏପରି କିପାଇଁ ଘଟିବ । ସେମାନେ କାହିଁକି ବିରକ୍ତ ହେବେ ?" ନୂଆ ଲୋକେ କୌଣସି କାର୍ଯ୍ୟରେ ହସ୍ତ ଦେଲାମାତ୍ରକେ ଭାଳନ୍ତି, "ଏହା କରିବା ଅବଶ୍ୟ ଉଚିତ, ମୁଁ ଏହା ଅବଶ୍ୟ କରିବି, ଯେ ଯାହା କହୁ ପଛକେ ପ୍ରକୃତ ମାର୍ଗ ଅନୁସରି ଅବଶ୍ୟ ଚଳିବି", କେତେଦିନ କାର୍ଯ୍ୟ କଲା ଉତ୍ତାରେ ମନରେ ଆନ ଭାବର ସଞ୍ଚାର ହୁଏ । କୌଣସି ନୂଆ ଲୋକକୁ କୌଣସି କାର୍ଯ୍ୟର ଔଚିତ୍ୟ ହୃଦୟଙ୍ଗମ କରି ଦିଅ ସେ ସେହିକ୍ଷଣି ଉତ୍ତର ଦେବ "ହଁ ପ୍ରମାଣ ମୁଁ ଏପରି କରିବି" । ମହାନ୍ ଲୋକମାନେ ଯେବେ କୌଣସି ଅଭ୍ୟାସ ଛାଡ଼ି ନ ପାରନ୍ତି ନୂଆଲୋକେ ତାହା ଦେଖିଲାକ୍ଷଣି ଅଧୀର ହୁଅନ୍ତି, କହନ୍ତି "ଏହି ସାମାନ୍ୟ ବିଷୟ ଏହାଙ୍କ ଦେଇ ହେଉ ନାହିଁ" । କଳ୍ପନା ସଂସାରରେ ବିପତ୍-ମୂର୍ତ୍ତି ଅବଲୋକନ କରି ନୂଆ ଲୋକେ ପାଞ୍ଚନ୍ତି "ଏହି ସିନା, ଏ କଣ ମୋ ଦେଇ ହେବ ନାହିଁ, ଏ ଅନର୍ଥ କାହିଁକି ଘଟିବ ଘଟିଲେ ସୁଦ୍ଧା ଏହାକୁ ଅତିକ୍ରମ କରିବାର କଠିନ ନୁହେଁ" । ନୂଆ ଲୋକେ ପିଲାପରି ବସ୍ତୁତଃ କାର୍ଯ୍ୟରେ ପିଲା ସିନା । ପିଲାମାନେ ଯେପରି ପାଞ୍ଚନ୍ତି ନୂଆ ଲୋକେ ସେହିପରି ପାଞ୍ଚନ୍ତି କାଦୁଅରେ ଆଠଦଶଥର କଚାଡ଼ି ନ ପଡ଼ିଲେ ସେମାନେ ଚେତନ୍ତି ନାହିଁ । ଚେତିଲା ଉତ୍ତାରୁ ଦେଖନ୍ତି ବିଷୟ, ପରିବାର, ସଂସାର ସମ୍ଭାଳିବାଠାରୁ ଆପଣା ଚିତ୍ତକୁ ସମ୍ଭାଳିବାର ଆହୁରି ଦୁଷ୍କର ଅଟେ ।

ମନୁଷ୍ୟର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ସ୍ୱାସ୍ଥ୍ୟରକ୍ଷାର ନିୟମ ଶିକ୍ଷା ମଧ୍ୟ ହେଉଥାଏ । ଏଣୁ କୌଣସି କୌଣସି ଦେଶରେ ଏହି ପ୍ରବାଦ ପ୍ରଚଳିତ ଅଛି, ୪୦ ବର୍ଷରେ କେହି ବୈଦ୍ୟ ହୁଅନ୍ତି, ୪୦ ବର୍ଷରେ କାହାକୁ ଅବା ଦୈବ ଛାଡ଼େ । ଶରୀର ସମ୍ବନ୍ଧରେ ଯେଉଁ ନିୟମ ମନ ସମ୍ବନ୍ଧରେ ମଧ୍ୟ ସେହି ନିୟମ ଚଳୁଅଛି । ମନ ମଧ୍ୟ ଅନେକ ନୂଆ ଅବସ୍ଥାରେ ପଡ଼ି ଆପଣାର ଗତି ପ୍ରବୃତ୍ତି ଓ ନିୟମମାନ ବୁଝିପାରେ । ଏହି ବିବେକ ଅମୂଲ୍ୟ ବିବେକ ଅଟେ । "ଏ ଅନିଷ୍ଟ ମୁଁ ନିରାକରଣ କରିପାରିବି ନାହିଁ । ଏହାକୁ ପାସୋରିବାର ଭଲ । ମୁଁ ଏକା ଥିଲେ ସେହି ଚିନ୍ତା ପୁଣି ଆସି ମୋତେ ଆଗଳିବ, ବିଷୟାନ୍ତରେ ମନ ଲଗାଇବି ଏ ସୁଖ ମୋହର ଭୋଗରେ ଆସିବ ନାହିଁ, ଆସିଲେ ସୁଦ୍ଧା ଦୂରରୁ ଯେପରି ମନୋହର ଦିଶୁଅଛି ସେପରି ମନୋହର ଦିଶିବ ନାହିଁ, ପୂର୍ବରେ ମୋହର ଯେଉଁ ସୁଖ ଜଣା ନ ଥିଲା, ଜଣା ନ ଥିବା ଯୋଗୁଁ ଏଡ଼େ ଭଲ ଦିଶୁଥିଲା, ସେହି ସୁଖତ ବର୍ତ୍ତମାନ ଅନୁଭବ କରୁଅଛି । ମାତ୍ର ସେ ମୋହିନୀ ଶକ୍ତି କାହିଁ । ଏ ସୁଖ ମଧ୍ୟ ସେହିପରି । ଏହାର ଓଜନ ମଧ୍ୟ

ସେହିପରି । ଏମନ୍ତ ସୁଖ ମିଳିଲେ କେତେ ନ ମିଳିଲେ ଅବା କେତେ'' ଏହିପରି ପ୍ରବୋଧ ଦେଇ ନିତାନ୍ତ କୋମଳ ମନସ୍କ ବ୍ୟକ୍ତି ମଧ୍ୟ ମନର ଉଦ୍‌ବେଗ ଶାନ୍ତି କରେ । ମାନସିକ ବୃତ୍ତିମାନ ମୁଡ଼ିଯାନ୍ତି ଏମନ୍ତ ନ ମଣ । ବହୁ ଦର୍ଶିତା ବଢ଼ିଲେ ଲୋକେ ଚିତ୍ତକୁ ସମ୍ଭାଳି ପାରନ୍ତି ।

ଅନର୍ଥର ପ୍ରକୃତ ପରିମାଣ ଜଣାଥିଲେ ମନର ଯଥେଷ୍ଟ ସାନ୍ତ୍ୱନା ହୁଏ, ହେତୁକି ଏମନ୍ତ ସ୍ଥଳରେ କଷ୍ଟ ସହିତ ବିସ୍ମୟ ମିଶେ ନାହିଁ । ଅନେକ ଉପନ୍ୟାସ ପ୍ରିୟ ଅଭ୍ୟୁଦୋଦର୍ଶୀ ଯୁବକ ମହାନ୍ ମହାନ୍ କଷ୍ଟକୁ କ୍ଷୁଦ୍ର ମଣନ୍ତି । ମାତ୍ର ପ୍ରକୃତି ସବୁଦିନେ ଅଟଳ ଥାଏ । ଉପନ୍ୟାସର ଶିକ୍ଷା ଭିନ୍ନେ ପ୍ରକୃତିର ଶିକ୍ଷା ଭିନ୍ନେ । କେହି କେହି କହନ୍ତି ଦୁର୍ବିପାକ କେଭେ ବହୁକାଳ ବ୍ୟାପେ ନାହିଁ, ଆସେ, ଯାଏ, ଚଞ୍ଚଳ ଚାଲିଯାଏ । ମାତ୍ର ଅନୁଭବୀ ଲୋକେ ଆନ ପ୍ରକାର କହିବେ । କୌଣସି କୌଣସି ଦୁର୍ବିପାକ ଅନେକ କାଳ ସ୍ଥାୟୀ ହୁଏ । ଅନେକ ଦିନ କଷ୍ଟ ଦିଏ । ମନୁଷ୍ୟ ଗିରିଶୃଙ୍ଗରୁ ଏକାବେଳକେ ତଳେ ଖସି ପଡ଼େ ଏମନ୍ତ ନୁହେ । ଧୀରେ ଧୀରେ ପଡ଼େ, ଏ ପଥରରୁ ସେ ପଥରକୁ ଆସେ, ଇତସ୍ତତଃ ଲତା ଗଛ ପଡୁଁ ପଡୁଁ ଯା ପାଏ ତାହାକୁ ଧରେ, ହାତ ଖସରି ଯାଏ । କୌଣସି କୌଣସି ସ୍ଥାନରେ ଛିଡ଼ା ହୋଇ ପାଞ୍ଚେ ଆଉ ପଡ଼ିବି ନାହିଁ, ସେଠାରୁ ମଧ ଗୋଡ଼ ଖସରିଯାଏ । ଏହିପରି ପଡୁଁ ପଡୁଁ ପର୍ବତର ପାଦଦେଶକୁ ଲଭେ । ଏ ଉପମାନ କିଞ୍ଚିତ୍ କର୍କଶ ଅଟେ । ମାତ୍ର ଉପମେୟର ଯୋଗ୍ୟ ଉପମାନ ।

ଲକ୍ଷ ଭିତରେ ୨।୪ ଜଣ ସ୍ଥାୟୀ ସୌଭାଗ୍ୟ ସ୍ଥାୟୀ ସୁଖ ଲଭନ୍ତି । ଅବଶିଷ୍ଟ ଲୋକମାନଙ୍କ ମଧରୁ ସମସ୍ତେ ଦୁଇଟା ଗୋଟାଏ ସ୍ଥାୟୀ ଅନର୍ଥ ଭୋଗିଅଛନ୍ତି, ଭୋଗୁ ଅଛନ୍ତି । ଦୀର୍ଘକାଳ ବ୍ୟାପୀ ମୋକଦ୍ଦମା କାହାର ଅର୍ଥ ଶୋଷଣ କରୁଅଛି । କେହି ଅବା କୌଣସି ଅଧ୍ୟବସାୟରେ ଭଗ୍ନ ମନୋରଥ ହୋଇ ଅଛନ୍ତି ସେହି ଅଧ୍ୟବସାୟ ବିଫଳତା ତାହାଙ୍କୁ ଦାରୁଣ ଯାତନା ଦେଉଅଛି । କେହି ଦୁଷ୍ଟ ସନ୍ତାନର ଅବାଧ୍ୟତା ଯୋଗୁଁ ରାତିଦିନ ଦୀର୍ଘ ନିଶ୍ୱାସ ପକାଉ ଅଛନ୍ତି । ଦୁଷ୍ଟ ଖଳ କୁଟୁମ୍ବର ଉପଦ୍ରବରେ କାହାରି ଅବା ଧୈର୍ଯ୍ୟ ଲୋପ ହେଉଅଛି, କେହି ଅବା ଅପରିଣାମଦର୍ଶୀ ଇନ୍ଦ୍ରିୟର ପରତନ୍ତ୍ର ହୋଇ କୌଣସି ଲଜ୍ଜାକର ବ୍ୟାପାରରେ ଲିପ୍ତ ଥିଲେ ଏବେ ସେହି ଲଜ୍ଜାକର ବ୍ୟାପାର ସବୁବେଳେ ସ୍ମୃତି ମାର୍ଗରେ ଆବିର୍ଭୂତ ହୋଇ ଥରକୁ ଥର ମୁଖ ବିବର୍ଣ୍ଣ କରୁଅଛି । ଏହିପରି କେତେ ଲୋକ ଦିନ ମଧ୍ୟରେ ଶଏ ଥର ଆତ୍ମଧିକ୍କାର ଦେଇ ଦୈବର ଅପରିହାର୍ଯ୍ୟ ବିଡ଼ମ୍ବନା ସ୍ମରଣ କରି, ମହୀରେ ଯେଉଁ ସମୟରେ ପ୍ରଥମେ ପଦାର୍ପଣ କରିଥିଲେ ସେହି ସମୟକୁ କୁସମୟ ମଣୁଅଛନ୍ତି ।

ଜଣେ ଉକିଲ ଆଉ ଜଣେ ମନ୍ତ୍ରୀ ଦୁହିଁଙ୍କୁ ପ୍ରାୟ ସମାନ ପରିଶ୍ରମ କରିବାକୁ ହୁଏ । ମାତ୍ର ମନ୍ତ୍ରୀକୁ ଯେପରି ପ୍ରଗାଢ଼ ଚିନ୍ତା କରିବାକୁ ହୁଏ ଉକିଲର ସେପରି

ନୁହେ । ଉକିଲର ଚିନ୍ତା ସୂର୍ଯ୍ୟଙ୍କ ସଙ୍ଗେ ଉଦୟ ହୁଏ ସୂର୍ଯ୍ୟଙ୍କ ସଙ୍ଗେ ଅସ୍ତ ହୁଏ । ମନ ଦେଇ ଦେଖ ଦାୟୀ ମନ୍ତ୍ରୀର ମାନସିକ କଷ୍ଟ କେଡ଼େ କଷ୍ଟ । ଗୋଟିଏ ପ୍ରଣାଳୀ ଘେନି କାର୍ଯ୍ୟ କରିବାକୁ ହେଲା, ପ୍ରଣାଳୀ ପ୍ରଶସ୍ତ ଅଥବା ଅପ୍ରଶସ୍ତ ଦିନ ଓଳିକରେ ଜଣାଯିବ ନାହିଁ, ପ୍ରଣାଳୀଗତ ଦୋଷମାନ ଧୀରେ ଧୀରେ ଅତର୍କିତ ରୂପରେ ଉପଲବ୍ଧ ହୁଏ । ଏମନ୍ତ ଅବସ୍ଥାରେ ଏହିପରି ସାନ୍ତ୍ୱନା ଅବଲମ୍ବନ କରିବାର ବିହିତ ଅଟେ । ତୁମ୍ଭର ଅବଲମ୍ବିତ ପ୍ରଣାଳୀରୁ ମନ୍ଦଫଳ ଜାତ ହେଲା ଜାଣି ଜ୍ଞାନୀ, ହୃଦୟଜ୍ଞ ଲୋକଙ୍କର ଏମନ୍ତ ସ୍ଥଳରେ କଣ କରିବା ଉଚିତ । ଅନେକ ଗଞ୍ଜନାତ ସହିଲଣି । ଏଥିରୁ ଯାହା ଶିଖିବାର ଶିଖିଲଣି । ଥରକୁ ଥର ଆଉ ସେହି ବିଷୟର ମାର୍ଜନା କର ନାହିଁ । ପାସୋରି ପକାଅ । ମନକୁ ଆନ ବିଷୟରେ ଆମୋଦରେ ନିବିଷ୍ଟ କର । ନେପୋଲିୟନ ବୋନାପାର୍ଟ କେଡ଼େ ଲୋକ ଥିଲେ । ରୁସ ପରାଭବ ମନେ ପଡ଼ିଲା କ୍ଷଣି ତାସ ଓ ନ୍ୟାୟ ବଳର ଶରଣ ପଶୁଥିଲେ ।

ମନ ଶାନ୍ତିର ଆହୁରି ଏକ ଉପାୟ ଏହି ଆମ୍ଭର ବିପଦ୍ ଜାଲ ଆମ୍ଭକୁ କଷ୍ଟ ଦେଇ ଅଛି ଏହା ପ୍ରମାଣ ଅଟେ । ମାତ୍ର ଅମିଶ୍ର କଷ୍ଟ ଦେଇ ନାହିଁ କଷ୍ଟ ସଙ୍ଗେ ସଙ୍ଗେ ଅମୂଲ୍ୟ ଜ୍ଞାନ ଦେଇ ଅଛି । ଯେଉଁ ଅନ୍ଧକାର ସୂର୍ଯ୍ୟ ଗ୍ରାସ କରେ ସେହି ଅନ୍ଧକାର କେତେ ମଞ୍ଜୁଳ ପଦାର୍ଥମାନ ନୟନ ଗୋଚର କରାଏ । ଦିନରେ ଗଗନଯାକ ଉଜ୍ଜ୍ୱଳ ଥିଲା, ଅନ୍ଧକାରରେ ଯାହାର ସ୍ୱତଃ ଔଜ୍ଜଲ୍ୟ ଅଛି ସେହି ଉଜ୍ଜ୍ୱଳ ଥାଏ । ଯାହାର ସ୍ୱତଃ ଔଜ୍ଜଲ୍ୟ ନାହିଁ ସେ ଆଲୁଅରେ ଧଳା ଥିଲା, ଅନ୍ଧକାରରେ କଳାହେଲା ।

ଏହି ଦେଖ ପାଠକ ଉପମା ଅଳଙ୍କାର ଲୋଡ଼ୁଁ ଲୋଡ଼ୁଁ ବାଟବଣା ହୋଇଥିଲି । ହଁ ! ଆମ୍ଭର ଆପଦ ଆମ୍ଭକୁ ବିସ୍ତାର ଜ୍ଞାନ ଶିଖାଏ । ଏଣୁ ଆପଦ ଆମ୍ଭର ଉପକାରକ । ଏଡ଼େ ଉପକାରକ, ଏଡ଼େ ସ୍ପଷ୍ଟବାଦୀ ଉପକାରକ ଆଉ ନାହିଁ । ବିପଦରୁ ଯେଉଁ ଜ୍ଞାନ ମିଳେ ଅନେକ ବ୍ୟୟରେ ମିଳେ । ଏମନ୍ତ ଜ୍ଞାନକୁ ଆମ୍ଭର ବିତ୍ତର ଅଂଶ ମଣିବାର ଉଚିତ ।

ଜ୍ଞାନୀଲୋକ ସର୍ବଦା ନମ୍ର ହୋଇ ଅବସର ପ୍ରତୀକ୍ଷା କରିବ । ସବୁ ବିଷୟରେ ନମ୍ର ଥିବାର ଭଲ, ଆପଣାର ଲଘିମା ସବୁବେଳେ ସ୍ମରଣ କରିବାର ଭଲ । ପ୍ରବୀଣ ସେନାପତି ପ୍ରାୟ ଉଚ୍ଚ ଭୂମି ଅନ୍ୱେଷଣ କରିବ ।

କେବଳ ମନରେ ନୁହେଁ କାର୍ଯ୍ୟରେ ମଧ୍ୟ ଏହିପରି ସାବଧାନ ହୋଇ ଚଳିବାର ବିଧେୟ ଅଟେ । ଜଣେ ବିଜ୍ଞଲୋକ କହିଅଛନ୍ତି "ସେ ପ୍ରତିଦିନ କଚେରିକୁ ଯାଉ ଥିଲେ, ଯେଉଁ ଦିନ ବାଟରେ ଘୋଡ଼ା ଚଞ୍ଚଳ ଓ ଅବାଧ୍ୟ ହେଉ ଥିଲା ସେଦିନ ସେ ମଧ କଚେରିରେ ବିରକ୍ତ ରୁଷ୍ଟ ହେଉଥିଲେ । ଯେଉଁଦିନ ଭଲରେ ଆସୁଥିଲେ ସେଦିନ କଚେରିରେ ଉଗ୍ର ମୂର୍ତ୍ତି ଧରୁ ନ ଥିଲେ । ଏଥିରେ ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ ।

ଘୋଡ଼ା ଦୁର୍ଦ୍ଦାନ୍ତ ହେଲାରୁ ତାହାକୁ ଆୟତ୍ତ କରିବାକୁ ହେଉଥିଲା ତେଣୁ କିଞ୍ଚିତ୍ ଦୁର୍ବଳ ଓ ବିରକ୍ତ ହେଉଥିଲେ ସୁତରାଂ ମନର ଶାନ୍ତି ଭଗ୍ନ ହେବାର ଚିତ୍ର ନୁହେଁ । ଏ ସାନ କଥା, ମାତ୍ର ଏପରି ସାନ କଥାରେ ସୁଦ୍ଧା ନିକ୍ତି ଟଳିଯାଏ । ଯେଉଁ ଲୋକମାନେ ହୃଦୟଜ୍ଞ ନୁହନ୍ତି ସେମାନେଂ ଏହି କଥା ଶୁଣି ହସିବେ । ହସିବେତ ହସନ୍ତୁ; ମାତ୍ର ବିଡ଼ିଲେ ଜାଣିବେ । ସାନ ବିଷୟ ଅନେକ ଅଛି । ମାତ୍ର ବଡ଼ ସାଙ୍ଗରେ ସେମାନଙ୍କ ସମ୍ପର୍କ ଥିଲେ ସେମାନଙ୍କ ଅଭାବରେ ବଡ଼ କଥା ମଧ ଅଟକିଯାଏ ।

ସଂସାରରେ ଗଞ୍ଜନା ସମସ୍ତଙ୍କୁ ଥରେ ଦୁଇଥର ସହିବାକୁ ହୁଏ । କୋମଳମନସ୍କ ବ୍ୟକ୍ତିମାନେ ଟିକିଏ ନିନ୍ଦାରେ ଭଗ୍ନମନା ହୁଅନ୍ତି । ଯେତେବେଳେ ତୁମ୍ଭର ଗଞ୍ଜନା ହେବ ମନସମ୍ଭାଳି ଧୈର୍ଯ୍ୟଧରି ଏହା ପାଞ୍ଚିବ ଯେ ସଂସାରର ମତ ଦିନକୁ ଦିନ ସଂଶୋଧିତ ହେଉଅଛି । ଯେଉଁମାନେ ତୁମ୍ଭର ଆତ୍ମୀୟ ଅଟନ୍ତି ସେମାନେ ତୁମ୍ଭର ଆଚରଣ ବିଷୟରେ ଯେଉଁ ମତ ସ୍ଥିର କରିଅଛନ୍ତି ତାହା ସହଜରେ ପରିବର୍ତ୍ତିତ ହେବାର ଦୁଷ୍କର ଅଟେ । ହେତୁକି ସେମାନେ ଏହା ପାଞ୍ଚନ୍ତି ଯେ, ସେମାନେ ତୁମ୍ଭର ଚରିତ୍ର ଭଲରୂପରେ ଜାଣନ୍ତି; ଏଣୁ ସେମାନଙ୍କର ମତ ଅଭ୍ରାନ୍ତ ଅଟେ । ସାଧାରଣ ଲୋକଙ୍କର ମତ ଭ୍ରାନ୍ତ ଥିଲେ ସମୟରେ ଅବଶ୍ୟ ବିଶୋଧିତ ହେବ ।

ମତ ସଂଶୋଧନ କେଉଁ ଯୁଗରେ ହେବ, ସେତେଦିନ ଯାଏ ଅନାଇ ଥିବାର ସହଜ ନୁହେଁ; ମାତ୍ର ହେଲେହେଁ ସବୁଦିନ ତୁମ୍ଭର କଳଙ୍କ ଥିବ ନାହିଁ । ମଳା ଆଗେ ହେଉ ବା ପଛେ ହେଉ ଅବଶ୍ୟ ଦିନେ ଅପନୀତ ହେବ ଏହି ଚିନ୍ତା ମନକୁ କଥଞ୍ଚିତ୍ ସୁସ୍ଥ କରିପାରେ ।

କୁତ୍ସା ସମ୍ବନ୍ଧେ ଏହା ମଧ୍ୟ ଭାଳିବାର ଉଚିତ କି ଯେ, ଲୋକେ କୁତ୍ସାକୁ ଯେଉଁ କାରଣରୁ ଜାତ ହୋଇଥିବାର ମଣନ୍ତି କୁତ୍ସା ସେଥିରୁ ଜାତ ହୁଏ ନାହିଁ । ସ୍ଥାୟି ହିଂସାର ପ୍ରବର୍ତ୍ତନାରେ କେହି ତୁମ୍ଭର ଅମଙ୍ଗଳ ପାଞ୍ଚୁ ଅଛନ୍ତି, ତୁମ୍ଭର ଅନିଷ୍ଟ ସାଧନ ଛଡ଼ା ସେମାନଙ୍କର ଆନ ବ୍ୟବସା ନାହିଁ । ତୁମ୍ଭେ ତାହାଙ୍କର କ୍ରୂର କୁତ୍ସାର ଗୋଟିଏ ମାତ୍ର ଲକ୍ଷ୍ୟ ସ୍ଥଳ ଅଟ କେଭେ ଏମନ୍ତ ଭାଳିବ ନାହିଁ । ନିଶ୍ଚେ ଜାଣିଥିବ, ସ୍ଥାୟିହିଂସା ସବୁବେଳେ କୁତ୍ସାର ପ୍ରସୂତୀ ନୁହଇ । ସରଳ ଅଜ୍ଞତା, ସଙ୍କୀର୍ଣ୍ଣମନସ୍କତା ଅଥବା ଅପରିହାର୍ଯ୍ୟଭ୍ରମ ଏହି ତିନି କାରଣର ଅନ୍ୟତରରୁ କୁତ୍ସା ଜାତ ହେଉଥିବାର ଜଣାଯାଏ । ଏଣୁ କୁତ୍ସାକୁ ଅନ୍ୟାୟ ଉପଦ୍ରବ ନ ମଣି ଦୁର୍ଭାଗ୍ୟ ମଣିବାର ବିହିତ ଅଟେ ।

ଯେଉଁମାନଙ୍କୁ ଅନେକଭାର ସମ୍ଭାଳିବାକୁ ହୁଏ ସେମାନେ ଦୁଇ ଚାରିଥର ଗଞ୍ଜନା ନ ଲଭି ଯେ ଜୀବନ ଗମିବେ ଏପରି ଆଶା କରିବାର ଭଲ ନୁହେ । ହେତୁକି ଏପରି ଆଶା କେବେ ଫଳିବ ନାହିଁ । ଯେଉଁ ଲୋକମାନଙ୍କ ସଙ୍ଗେ ତୁମ୍ଭର କାରବାର ଚଳୁଅଛି

ସେମାନଙ୍କ ମଧ୍ୟରେ ବିଜ୍ଞମ୍ମନ୍ୟ ଅଜ୍ଞ ଏବଂ ଈର୍ଷାଲୋକ ଅନେକ ଅଛନ୍ତି । ଏହା ଯେବେ ଜାଣ ସେମାନଙ୍କ ସଙ୍ଗେ କାରବାର କଲେ ଅବଶ୍ୟ ଥରେ ଦୁଇ ଥର ଦୁର୍ନାମ ରଟିବ ଏହା ମଧ୍ୟ ଜାଣିବାର ଉଚିତ । ଗଞ୍ଜନାନଳ ଏକ ସ୍ଥାନରେ ପ୍ରଜ୍ୱଳିତ ହୁଏ । ଏମନ୍ତ କେତେଗୁଡ଼ିଏ ଲୋକ ଅଛନ୍ତି ପରନିନ୍ଦା ସେମାନଙ୍କୁ ଯେଡ଼େ ସୁସ୍ୱାଦୁ ଲାଗେ କୌଣସି ମିଷ୍ଟାନ୍ନ ସେପରି ଲାଗେ ନାହିଁ । ଏମାନେ ତୁମ୍ଭର ଗଞ୍ଜନାନଳରେ ଫୁତ୍କାର ଦିଅନ୍ତି ତୁମ୍ଭଠାରେ ସେମାନଙ୍କର କୌଣସି ଶତ୍ରୁତା ଥିବା ଯୋଗୁଁ ଫୁତ୍କାର ଦିଅନ୍ତି ଏମନ୍ତ ନୁହେ । ପରଗଞ୍ଜନା ସେମାନଙ୍କୁ ସ୍ୱାଦୁ ଲାଗେ ସେଥିପାଇଁ ଫୁତ୍କାର ଦିଅନ୍ତି । ଅଜ୍ଞତା ପୁଣି କଳ୍ପିତକୁ ପ୍ରକୃତ ମଣି ତୁମ୍ଭଠାରେ ଦ୍ୱେଷୀ ହୁଅଇ । ଏଣୁ ତୁମ୍ଭର ମହାନ୍ ଅନିଷ୍ଟ ହେଲା । କଣ କରିବ ଏଥିରେ ତୁମ୍ଭର ଚାରା ନାହିଁ । ଯେଡ଼େ ସାବଧାନ ହୋଇ ଚଳ, ଯେଡ଼େ ପରିଣାମଦର୍ଶୀ ହୁଅ-ପଛକେ ବହୁ ବ୍ୟାପାରୀ ହେଲେ ନିଶ୍ଚେ ଥରେ ଦୁଇଥର କଳଙ୍କ ରଟିବ । ଏଣୁ ଏପରି ଦୁର୍ଘଟନାକୁ ଦୁର୍ଦୈବକୃତ ମଣିବାର ବିହିତ ଅଟେ । ଯେଉଁ ବିବେକର ସାହାଯ୍ୟ ଘେନି ଆନ ଦୈବ ବିପାକ ସହୁଅଛ, ଏହି ଦୁର୍ଘଟନାରେ ମଧ୍ୟ ସେହି ବିବେକର ସାହାଯ୍ୟ ନିଅ । ଧୈର୍ଯ୍ୟ ଧରି ପ୍ରତୀକ୍ଷା କର । ଯାହା ସମୟରେ ଜାତ ହୋଇ ଅଛି ସମୟରେ ତାହାର ଖଣ୍ଡନ ହେବ । କାଦୁଅ ଯେତେବେଳେ ଶୁଷ୍କ ହେବ ଆପେ ଝଡ଼ି ପଡ଼ିବ । ଶୁଷ୍କ ହେବା ଆଗେ ଝଡ଼ିବ ନାହିଁ । ପୋଛିବା ତୁମ୍ଭର ସାଧ୍ୟ ନୁହେ । ଶୁଷ୍କ ହେବା ଯାଏ ପ୍ରତୀକ୍ଷା କର । ତୁମ୍ଭ ଜୀବ ଥାଉଁ ଥାଉଁ ଶୁଷ୍କ ହେବ କି ନାହିଁ ଏହା ଅବା କିଏ କହିବ ? ସେ ଯାହା ହେଉ, ଆତ୍ମ ସମର୍ଥନ ନିମନ୍ତେ ନିତାନ୍ତ ବ୍ୟଗ୍ର ହେବାର ଭଲ ନୁହେଁ । କର୍ମଠ ଲୋକ ଗଞ୍ଜନାକୁ ଘେନି ଯେବେ ଅହର୍ନିଶ କଚାଳିବ, କର୍ମ କିପରି ଚଳିବ ? କର୍ମିଷ୍ଠ ବ୍ୟକ୍ତିର ଏହା ମନରେ ରଖିବାର ଉଚିତ କି ସେମାନେ ଯାହା କରନ୍ତି ଅନ୍ୟକୁ ସେଥିର କାରଣମାନ ଜଣାଇବା ସେମାନଙ୍କର କର୍ମର ଅଙ୍ଗ ନୁହଇ । ଏତିକି ମାତ୍ର ସେ ସଦ୍‌ସତ୍ ବିବେଚନାର ଉପଦେଶ ଅନୁସରି ଚଳିବେ ।

ରାଜକର୍ମଚାରିମାନଙ୍କୁ ଦେଖ । ଏମାନେ କେତେ ଗଞ୍ଜନା ଲଭନ୍ତି । ମାତ୍ର ତୁନୀ ହୋଇ ସବୁ ସହନ୍ତି । ସେମାନଙ୍କର ଅବଲମ୍ବିତ କାର୍ଯ୍ୟ ପ୍ରଣାଳୀ ଘେନି ଅନେକ ଲୋକ ଅନେକ କଥା କହନ୍ତି । ସମସ୍ତଙ୍କୁ ପ୍ରବୋଧ ଦେବା ପାଇଁ ସେମାନଙ୍କର ଅବକାଶ ନାହିଁ । କେବଳ ଉଚ୍ଚତର କର୍ମଚାରିଠାରେ ସେମାନେ ଦାୟୀ ଅଟନ୍ତି । ଏଥିପାଇଁ ଉଚ୍ଚତର କର୍ମଚାରିଙ୍କୁ ଅବଲମ୍ବିତ ପ୍ରଣାଳୀର କାରଣମାନ ଜଣାନ୍ତି । ସଂସାରର ଅନ୍ୟାନ୍ୟ କାର୍ଯ୍ୟରେ ସୁଦ୍ଧା ସେହିପରି ନ କଲେ ଚଳି ହେବ ନାହିଁ । ଲୋକର ଆଚରଣ ଉପରେ କେହି ଯେବେ ଅନ୍ୟାୟ ଟିକା କରନ୍ତି ସେହି ଟିକା ଅଶେଷ ମନସ୍ତାପର ହେତୁ ହୁଏ । ବାସ୍ତବରେ କାହାରି ଆଚରଣ ଭଲ ଅବା ମନ୍ଦ

ଏ ବିଷୟରେ ମତ ଦେବାକୁ ଲୋକେ କେଡ଼େ ଅନୁପଯୁକ୍ତ ଅଟନ୍ତି କହ ଯେବେ ସମସ୍ତଙ୍କର ଜଣାଥାନ୍ତା ତେବେ କେହି ସହସା କୌଣସି ବିଷୟରେ ମତ ଦିଅନ୍ତେ ନାହିଁ, କାହାକୁ ଅନ୍ୟାୟ ମତଜନିତ କ୍ଳେଶ ସୁଦ୍ଧା ଭୋଗ କରିବାକୁ ହୁଅନ୍ତା ନାହିଁ । ଆଗେ ଭାଳି ଦେଖ ଅନ୍ୟର ପ୍ରକୃତ ଅବସ୍ଥା ବିଷୟରେ ଆମ୍ଭେମାନେ କେଡ଼େ ଅଜ୍ଞ ଅଟୁଁ । ଜଣକୁ ତୁମ୍ଭେ ଧନୀ ମଣ ସେ ନିଃସ୍ୱ ଅଟେ, ଅଥବା ସେ ଧନୀ ଅଟେ; ମାତ୍ର ସେହି ଧନର ସଙ୍ଗେ ସଙ୍ଗେ ତାହାକୁ କେତେ ଆପଦ ସହିବାକୁ ହୁଏ, କେତେ ଲୋକର ମନରଖି, କେତେ ଲୋକକୁ ଡରି, ଚଳିବାକୁ ହୁଏ, ତାହା ତୁମ୍ଭେ ଜାଣ ନାହିଁ । ଜଣକୁ ତୁମ୍ଭେ ସୁସ୍ଥ ଶରୀର ମଣ, ବାସ୍ତବରେ ସେ ମାନସିକ ରୋଗର ଅଧୀନ ହୋଇ ଅହର୍ନିଶ ଯନ୍ତ୍ରଣା ଭୋଗ କରୁଅଛି । ତୁମ୍ଭେ କହ "ଅମୁକେଇ ଲୋକ କେଡ଼େ ଅସୁଖୀ, ଏପରି ମୁଖରା ଭାର୍ଯ୍ୟାଘେନି ମୁଁ ଚଳିପାରନ୍ତି ନାହିଁ ।" ମାତ୍ର ପ୍ରକୃତରେ ତାହାର ଭାର୍ଯ୍ୟା ମୁଖରା ହେଲେ ହେଁ ସେ ତାହାଠାରେ ଯଥେଷ୍ଟ ସ୍ନେହ କରେ ଏବଂ ଆପଣାକୁ ସୁଭଗ ମଣେ । ତୁମ୍ଭେ କହ "ଅମୁକେଇ ଲୋକ ପରି କପାଳିୟା ମହିରେ ନାହିଁ ଏଡ଼େ ସ୍ନେହବତୀ ଭାର୍ଯ୍ୟା କାହାରି ନାହିଁ ।" ପ୍ରକୃତରେ ତାହା ଘର କଳି ମନ୍ଦିର ଅଟେ । ତୁମ୍ଭେ କହ "ଅମୁକେଇ ଲୋକକୁ କୌଣସି କାର୍ଯ୍ୟ କରିବାକୁ ହୁଏ ନାହିଁ ତାହାର ଦିନଯାକ ଅବକାଶ" । ବାସ୍ତବରେ ତାହାକୁ କେଡ଼େ ଚିନ୍ତା, କେତେ ପରିଶ୍ରମ, କେତେ ଉଦ୍ୟୋଗ କରିବାକୁ ହୁଅଇ ସେଥିର ଲବମାତ୍ର ତୁମ୍ଭକୁ ଜଣା ନାହିଁ । ଏଥକୁ ଅନ୍ୟର ଆଚରଣ ଉପରେ ତୁମ୍ଭେ ଯେଉଁ ଟିକା କର ସେଥିରେ ଲଭ୍ୟ କଣ ? ଲୋକଗୋଟିକୁ ପ୍ରକୃତି ଗୋଟିଏ, ପୁଣି ଅନେକ ଲୋକ ଅଛନ୍ତି ସେମାନେ ଆପଣା ସମପ୍ରକୃତିକ ଲୋକ ଛାଡ଼ି ଅନ୍ୟ ଲୋକକୁ ଅଧମ ମଣନ୍ତି । ଦେଖ ! ଅନ୍ୟର ଆଚରଣ ଉପରେ ଟିକା କରିବା ପାଇଁ କେତେ ଜ୍ଞାନର ପ୍ରୟୋଜନ ରଖେ, ପ୍ରାୟ ସର୍ବଜ୍ଞତାର ପ୍ରୟୋଜନ ରଖେ । ଭିନ୍ନ ଜାତୀୟ ପ୍ରାଣୀମାନଙ୍କ ପ୍ରକୃତିରେ ଯେତେ ଅନ୍ତର, ଭିନ୍ନ ଭିନ୍ନ ଲୋକମାନଙ୍କର ପ୍ରକୃତିରେ ସେହିପରି ଅନ୍ତର ଥିବାର ଦିଶୁଅଛି । ବଳଦ ଭଲ ଅବା ମନ୍ଦ, ଶିଷ୍ଟ ଅବା ଦୁଷ୍ଟ, ଠେକୁଆ ଏ ବିଷୟର ବିଚାର କରି ନ ପାରେ ।

ଗଞ୍ଜନା ତଳେ ଉପେକ୍ଷା । ଉପେକ୍ଷିତ ବ୍ୟକ୍ତିମାନଙ୍କର ମଧ୍ୟ ସାନ୍ତ୍ୱନାର ଅନେକ ଉପାୟ ଅଛି । ଯେଉଁଲୋକ ଆପଣାକୁ ଉପେକ୍ଷାର ଅନର୍ହମଣେ ତାହାକୁ ଉପେକ୍ଷା ଦୁଃସହ କଷ୍ଟ ଦିଏ । ମାତ୍ର ବାସ୍ତବରେ ବିଜ୍ଞ, ଅବହେଳାର ଅନର୍ହ ବ୍ୟକ୍ତି ସୁଦ୍ଧା ଅବହେଳିତ ହୁଅନ୍ତି, ଏପରି ସ୍ଥଳରେ ଉପେକ୍ଷାର ପ୍ରକୃତ ହେତୁ ସ୍ମରଣ କଲେ ଉପେକ୍ଷା ଜନିତ କ୍ଳେଶ ନିଶ୍ଚେ ଊଣା ହେବ । ହେତୁ କି ଉପେକ୍ଷା ସ୍ୱୟଂ କଷ୍ଟକରୀ ହେଲେ ମଧ୍ୟ ସେଥିର ହେତୁ ସବୁବେଳେ ସେପରି କଷ୍ଟକର ହୁଏ ନାହିଁ ।

ଅମୁକେଇ ଉପାୟରେ ଅମୁକେଇ ବସ୍ତୁ ମିଳେ, ତୁମ୍ଭେ ସେ ଉପାୟ ଅବଲମ୍ଭି ପାରିବ ନାହିଁ, ଅଥଚ ସେହି ବସ୍ତୁଲିପ୍ସା ତୁମ୍ଭମନରେ ସବୁବେଳେ ଜାଗରୂକ ଅଛି । ଏପରି ଅନ୍ୟାୟ ଲିପ୍ସା ତୁମ୍ଭର ବିଜ୍ଞତାର ସଦୃଶ ନୁହେଁ । ତୁମ୍ଭଠାରେ ଗୁଣର ଅଭାବ ନାହିଁ । ମାତ୍ର ଯାହା ଲଭିବା ପାଇଁ ତୁମ୍ଭର ଏଡ଼େ ଆଗ୍ରହ ତାହା କେବଳ ଗୁଣଦ୍ୱାରା ଲବ୍ଧ ହୁଅଇ ନାହିଁ । କେତେଗୋଡ଼ିଏ ସୁବିଧାର ପ୍ରୟୋଜନ ରଖେ । ତୁମ୍ଭ ଭାଗ୍ୟରେ ସେପରି ସୁବିଧା ଘଟୁ ନାହିଁ । ଏଥିପାଇଁ ଲୋକେ ଉତ୍ତର ସାଧକଙ୍କୁ ବହୁ ମଣନ୍ତି । କେତେଗୋଡ଼ିଏ କଥା ଅଛି ଆପଣା ପାଇଁ କେହି କହି ପାରେ ନାହିଁ । ଯେବେ କେହି କହେ ଲୋକେ ତାହାକୁ ଅହଂକାରୀ, ଧୃଷ୍ଟ ଏବଂ ନିର୍ଲ୍ଲଜ୍ଜ ମଣନ୍ତି । ଉତ୍ତର ସାଧକ ଥିଲେ, ଏପରି ଅନର୍ଥ ଜାତ ହୁଏ ନାହିଁ । ସେ ତୁମ୍ଭ ପାଇଁ ସେହି ସେହି କଥାମାନ ମୁକ୍ତ କଣ୍ଠରେ ନିର୍ଭିକ ମନରେ କହିପାରିବେ । ତୁମ୍ଭର ଯେବେ ଏପରି ଉତ୍ତର ସାଧକ ନାହାନ୍ତି ତୂନୀ ହୋଇଥାଅ । ତୁମ୍ଭଠାରୁ ଅଧିକ ଅଭାବଗ୍ରସ୍ତ ଲୋକର ଅବସ୍ଥା ସଙ୍ଗେ ଆପଣା ଅବସ୍ଥା ତୁଳନା କରି ମନକୁ ପ୍ରବୋଧ ଦିଅ ।

ନ୍ୟାୟ ଅପେକ୍ଷା ଅନ୍ୟାୟର ମୂର୍ତ୍ତୀ ବିଶେଷ । ଅନ୍ୟାୟ ସହି ହୁଏ ନାହିଁ ମାତ୍ର ନ ସହି ଗତି ନାହିଁ । ଅନେକ ଲୋକ କହନ୍ତି ‘‘ମୋର ଆଉ କିଛି ମାଗୁଣି ନାହିଁ, ନ୍ୟାୟ ହେଲେ ସବୁ ହେଲା, ମୁଁ କେବଳ ନ୍ୟାୟ ପ୍ରାର୍ଥନା କରୁଅଛି’’ । ‘‘କେବଳ ନ୍ୟାୟ’’ ପ୍ରାର୍ଥନା କରୁଅଛ ? ନ୍ୟାୟ ଭିତରେ କେତେ ଗଲା ଭାଳି ଦେଖିଛଟିକି ? ନ୍ୟାୟ ସମୟସାପେକ୍ଷ, ସୂକ୍ଷ୍ମଦର୍ଶିତା ସାପେକ୍ଷ, ଶିଷ୍ଟତା ସାପେକ୍ଷ । ତୁମ୍ଭେ ଦିନ-ଭିତରେ ଶଏ କାରବାର କରୁଅଛ । ଯେବେ ପ୍ରତି କାରବାରରେ ନ୍ୟାୟ ପ୍ରାର୍ଥନା କରିବ ପ୍ରତି କାରବାରରେ ତିନୋଟି ଲେଖାଏଁ ଦିନ ମଧ୍ୟରେ ୩୦୦ ପଦାର୍ଥ ତୁମ୍ଭର ମାଗୁଣି ହେଲା । ତୁମ୍ଭଠାରେ ଯେବେ କେହି ଏହି ମାଗୁଣି କରିବ ତୁମ୍ଭେ ଦେଇ ପାରିବ ? ଯେତେଦିନ ଯାଏ ତୁମ୍ଭର ଏହି କ୍ଷମତାର ଅଭାବ ଅଛି ସେତେଦିନ ଯାଏ ଆନ ଲୋକଠାରେ ଏପରି ଅସଙ୍ଗତ ପ୍ରାର୍ଥନା କରିବାର ଅନୁଚିତ । ସଂସାର ଭ୍ରମ, ଆଳସ୍ୟ ଓ ଚଳଚ୍ଛିତତା, ରିପୁପରତନ୍ତ୍ରତା, ସ୍ୱାର୍ଥପରତା ପ୍ରଭୃତି ଅପରିହାର୍ଯ୍ୟ ଅନିଷ୍ଟମାନଙ୍କରେ ବୁଡ଼ି ରହିଅଛି । ଏଥକୁ ଅନ୍ୟାୟ ନ ହେବାର ବିଚିତ୍ର ଅଟେ । ତୁମ୍ଭେ ମହିରେ ଅଛ, ଲୋକେ ତୁମ୍ଭପ୍ରତି ଅନ୍ୟାୟ କରନ୍ତି । ଏମନ୍ତ ଅସଙ୍ଗତ ଗୋହାରୀ କରିବ ନାହିଁ ।

ନ୍ୟାୟଦେବଙ୍କର ପ୍ରକୃତ ମୂର୍ତ୍ତୀ ଯେପରି, ଲୋକେ ସେପରି ନଭାବି ଆନ ପ୍ରକାର ଭାବନ୍ତି । କବିମାନେ ନ୍ୟାୟଦେବଙ୍କ ଏକ ହାତରେ ନିକ୍ତି ଆନ ହାତରେ ଖଡ୍‌ଗ ଥିବାର କହନ୍ତି । ମାତ୍ର ପ୍ରକୃତରେ ସେହି ଆୟୁଧ ଭାଗ୍ୟଦେବଙ୍କଠାରେ ଶୋଭାପାଏ । ନ୍ୟାୟଦେବଙ୍କ ମୂର୍ତ୍ତି ଏପରି କଳ୍ପନା କରିବାର ଭଲ । ନ୍ୟାୟଦେବ ପୃଥିବୀ ଚାରିଆଡ଼େ ଭ୍ରମଣ କରୁ ଅଛନ୍ତି । ତାଙ୍କ ମୁଖମଣ୍ଡଳରୁ କୋମଳ ପ୍ରଭା

ନିଃସୃତ ହେଉ ଅଛି । ହିଂସା, କୁସଂସ୍କାର, ଆଳସ୍ୟ, ସାର୍ଥପରତା ଯେଉଁମାନେ ତାହାଙ୍କର ପ୍ରକୃତ ସହଚର ନୁହନ୍ତି ସେମାନେ ସେହି ଆଲୋକର ବ୍ୟବଧାନ ହୋଇ ଅଛନ୍ତି । ଭାଗ୍ୟବାନ୍ ଲୋକ ଆଗରେ ଏମାନଙ୍କର ଛିଡ଼ା ହେବାକୁ ବଳ ନାହିଁ । ମାତ୍ର ଅଧିକାଂଶ ଲୋକେ ବୃକ୍ଷଛାୟାରେ ଛିଡ଼ା ହୋଇ ଶାଖାନ୍ତରାଳ ଦେଇ ଆସୁଥିବାର ଚନ୍ଦ୍ରକିରଣ ପ୍ରାୟ ନ୍ୟାୟ ଦେବଙ୍କର କିରଣ କଣା ଲଭନ୍ତି । କେହି ଏପରି ଦୁର୍ଭାଗ୍ୟ ଅଟନ୍ତି ଯେ ଛାୟା ବ୍ୟତୀତ ସେମାନଙ୍କ ଉପରେ ଆଉ କିଛି ପଡ଼େ ନାହିଁ । ଯେଉଁ ସ୍ଥାନରେ ଭୀଷଣ ଛାୟାମାନ ପରସ୍ପର ଭଲରୂପେ ସଂଲଗ୍ନ ହୋଇ ନ ପାରନ୍ତି କେବଳ ସେହି ସେହି ମାର୍ଗରେ ଲବମାତ୍ର କିରଣ ଆସୁଥାଏ । ମାତ୍ର ଏହା ମନରେ ରଖିଥିବ ସେହି ଛାୟାମାନ ସଂସାରର ଆନ ପଦାର୍ଥ ପ୍ରାୟ ନଶ୍ୱର ଅଟନ୍ତି ।

ସାନସାନ ଦୁର୍ବିପାକମାନ ସହିବାର ଦୁଷ୍କର ଅଟେ । ହେତୁ କି ବଡ଼, ବଡ଼ ଆପଦମାନଙ୍କର ସଙ୍ଗେ ଅନୁରୂପ ବିବେକ ଆସେ । ମାତ୍ର ସାନ ସାନ କଷ୍ଟ ସଙ୍ଗେ ସେହିପରି ସାନ ସାନ ବିବେକ ଆସେ ନାହିଁ । ଏହି ହେତୁରୁ ଯାହାକୁ ସାନସାନ କଷ୍ଟ ସବୁବେଳେ ଭୋଗ କରିବାକୁ ହୁଏ ତାହାର ଚିତ୍ତର ପ୍ରସାଦ ଥାଏ ନାହିଁ । ମୁଁ କିପାଁଇ ଆଗୁ ସାବଧାନ ନହେଲି ଏହି ଅନୁତାପ ମଧ୍ୟ ସେହି କଷ୍ଟମାନଙ୍କୁ ଦ୍ୱିଗୁଣିତ କରେ । ଦୁର୍ଭାଗ୍ୟର ରୀତି ଏହିକି ସେ ଅଳ୍ପ ଅନବଧାନ ଲବ୍ଧ ଛିଦ୍ରଦେଇ ପୁରୁଷର ସୁଖ କଳସରେ ପ୍ରବିଷ୍ଟ ହୁଏ । ପ୍ରବିଷ୍ଟ ହୋଇ ଘଟିଯାଇ [ଘଟଯାକ] ବିଷାକ୍ତ କରେ । ଏଡ଼େ ସାନଛିଦ୍ର ଦେଇ ଏପରି ଅନର୍ଥ ଆସିବ ଏହା ଆଗରୁ ଜଣା ନଥାଏ । ଏଣୁ ଦୁର୍ଭାଗ୍ୟଗ୍ରସ୍ତ ଲୋକକୁ କ୍ଷୁବ୍ଧ ଓ ବିସ୍ମିତ ହେବାକୁ ହୁଏ ।

କେତେଗୋଡ଼ିଏ ଉଚ୍ଚମନସ୍କ ଲୋକ ଅଛନ୍ତି ଯେ ସେମାନେ ଯାହା କରନ୍ତି ସେଥିରେ ସେମାନଙ୍କର ସନ୍ତୋଷ ଉପୁଜେ ନାହିଁ । ହିତାହିତ ଜ୍ଞାନର ଅନନୁମୋଦିତ କାର୍ଯ୍ୟକୁ ପ୍ରଶ୍ରୟ ଦେବା ଆମ୍ଭର ଏ ଉକ୍ତିର ଉଦ୍ଦେଶ୍ୟ ନୁହଇ । ଆମ୍ଭର ଉଦ୍ଦେଶ୍ୟ ଏତିକି କେତେଗୋଡ଼ିଏ ନିତାନ୍ତ ଧର୍ମଭୀରୁ ସତ୍ୟପ୍ରିୟ ଲୋକ ଅଛନ୍ତି ''ମୋ ମନରେ ଯେପରି ଥିଲା, କାର୍ଯ୍ୟରେ ସେପରି ପାରିଲି ନାହିଁ'' ସବୁବେଳେ ଏହିପରି ଭାଳି ଆପଣାକୁ ଧିକ୍କାର ଦିଅନ୍ତି । ସେମାନଙ୍କର ଏହା ଜାଣିବାର ଉଚିତ କି ଆମ୍ଭେମାନେ କଳ୍ପନାକୁ ଯେବେ କାର୍ଯ୍ୟରେ ପରିଣତ କରିପାରନ୍ତୁ ତେବେ ମର୍ତ୍ତ୍ୟ ସ୍ୱର୍ଗ, ନର ଅମର ହୁଅନ୍ତା । ତୁମ୍ଭେ କେଉଁ ଛାର ଲୋକ, ତୁମ୍ଭ ଆଗେ କେତେ ମହାନ୍ ଲୋକ ଚାଲି ଯାଇଅଛନ୍ତି ସେମାନେ ଯାହା ଯାହା ସମ୍ପାଦି ଥିଲେ ସେଥିରେ ସେମାନଙ୍କୁ ଅପରିସୀମ ପ୍ରତିଷ୍ଠା ମିଳି ଥିଲା । ମାତ୍ର ସେମାନେ ସୁଦ୍ଧା ତୁମ୍ଭପରି ବୃଥା ବିଳାପ କରିଥିଲେ; ସେମାନଙ୍କ ମନରେ ଯାହା ଥିଲା ସେଥିର ପାଦେ ମଧ କାର୍ଯ୍ୟରେ ପରିଣତ କରି ପାରି ନାହାନ୍ତି ।

ସଙ୍ଗତ ପ୍ରଭୃତି କଳାମାନ ମଧ୍ୟ ସାନ ସାନ କଷ୍ଟ ନିବାରଣର ପ୍ରଧାନ ଉପାୟ ଅଟେ । ଦାରୁଣ ବିପଦରେ ବିବେକ ଆଉ ଧର୍ମ ଏ ଦୁହିଁଙ୍କର ସାହାଯ୍ୟ ବ୍ୟତୀତ ଆଉ କାହିଁରେ କିଛି ଲଭ୍ୟ ହୁଏ ନାହିଁ । ମାତ୍ର ସାନ ସାନ କଷ୍ଟ ଶଂସିତ କଳାମାନଙ୍କରେ ଅଂଶତଃ ନିବାରିତ ହୋଇପାରେ ।

ଆଉ ଏକ ବିଷମ ଦୁର୍ବିପାକ ଅଛି ସେଥିରେ ଚିତ୍ତର ସାନ୍ତ୍ୱନା ହେବାର କଠିନ ଅଟେ । କେହିକେହି କଳ୍ପନା ପରତନ୍ତ୍ର ହୋଇ ଭାଳନ୍ତି ଆମ୍ଭର ଏହି ଅଭିଳାଷ ଚରିତାର୍ଥ ହେଲେ ଚିର ସୁଖୀ, ନୋହିଲେ ଚିର ଦୁଃଖୀ ହେବୁଁ । ଦୁର୍ଦ୍ଦୈବ ଯୋଗୁଁ ସେହି ଚିର ପୋଷିତ ଆଶା ଫଳବତୀ ହୁଏ ନାହିଁ । ଭଗ୍ନାଶ ବ୍ୟକ୍ତି ମନ ସେହି ଦିନଠାରୁ ଭଗ୍ନ ହୋଇଯାଏ । ସେହି ଅଲବ୍ଧ ସୁଖର ଉଜ୍ଜ୍ୱଳ ଓ ମନୋହର ମୂର୍ତ୍ତିକୁ ଉଚ୍ଛୃଙ୍ଖଳ କଳ୍ପନା ଉଜ୍ଜ୍ୱଳରେ ମନୋହରତର କରି ହୃଦୟ ପ୍ରାଙ୍ଗଣେ ନର୍ତ୍ତନ କରାଉ ଥାଏ । ସଂସାର କାରାଗାର ପ୍ରାୟ ଦିଶେ । ଏଥିପରେ ଯେବେ ଅନ୍ୟାନ୍ୟ ବିଷୟରେ ସେହି ବ୍ୟକ୍ତିର ସମୃଦ୍ଧି ଥାଏ ତେବେ ତାହାକୁ ଆନ୍ତରିକ ନିର୍ବେଦର ପରାକାଷ୍ଠା ଭୋଗ କରିବାକୁ ହୁଏ । ସମୃଦ୍ଧି ବିଡ଼ମ୍ବନାବତ୍ ପ୍ରତିଭାତ ହୁଏ ।

ଏପରି ନିର୍ବେଦର ଶାନ୍ତି ସହଜରେ ହୁଏ ନାହିଁ । ତଥାଚ ଏହାର ସୁଦ୍ଧା ପ୍ରତିକାର ଅଛି । ମନେ କର ସେହି ଚିର ଅଭିଳଷିତ ପଦାର୍ଥର ଅଧିକାରୀ ହେଲା ଜାଣି ସେଥିରୁ ଯେତେ ସୁଖ ଲଭିବାର ଆଶା ଥିଲା ଏବେ ଅଧିକାରୀ ହୋଇ ସେହି ସୁଖ ସମ୍ପୂର୍ଣ୍ଣ ରୂପେ ପାଉ ଅଛଟିକି ? ଯେବେ ତୁମ୍ଭର କଳ୍ପନା ନିତାନ୍ତ ବିକୃତ ହୋଇ ନ ଥାଏ । ଏହି ପ୍ରଶ୍ନର ନିଷେଧ ମୁଖ ଉତ୍ତର ଦେବ । ଆଉ ତୁମ୍ଭର ଏହା ଭାଳିବାର ଉଚିତ ଅଟେ ଯେ ସେହି ସୁଖ ଲବ୍‌ଧ ହେଲେ ତୁମକୁ ସବୁବେଳେ ଶଙ୍କାଯୁକ୍ତ କରାଉଥିବ । ସ୍ନେହ ଥିଲେ ଅନିଷ୍ଟାଶଙ୍କା ହୁଏ । ଧନ ଜନ ପରିବାରାଦି ସ୍ୱାତନ୍ତ୍ର୍ୟ ବିରୋଧୀ ଅଟନ୍ତି ।

ପରିଶେଷରେ ଏହା ବକ୍ତବ୍ୟ ଯେ ଯେତେ ପ୍ରକାର ଦୁଃଖ ଅଛି ପ୍ରତ୍ୟେକରୁ ଗୋଟିଏ ଗୋଟିଏ ଅଭ୍ରାନ୍ତ ଉପଦେଶ ଲାଭ ହୁଏ । ବାସ୍ତବରେ ଦୁଃଖ ବହୁଦର୍ଶୀତାର ପରିମାପକ ଅଟଇ । ଜଣେ ମହାନ୍ ବ୍ୟକ୍ତି ଇଚ୍ଛାପୂର୍ବକ ଆପଣକୁ ବିପଦରେ ପକାଉଥିଲେ । ତାହାଙ୍କର ଅବଲମ୍ବିତ ଉପାୟ ଗ୍ରହଣୀୟ ହେଲେହେଁ ଉଦ୍ଦେଶ୍ୟ କେଡ଼େ ଉଦାର ଥିଲା ଭାବୁକ ପାଠକେ ବୁଝିପାରିବେ । ବିପଦ ଲୋଡ଼ି ଜ୍ଞାନ ଲଭିବାର ଚେଷ୍ଟା ସଦ୍‌ଯୁକ୍ତିର ଅନୁମୋଦିତ ନୁହଇ । ଚିକିତ୍ସକ ପ୍ରାୟ ଘରେ ବସିଥାଅ । କେତେ ପ୍ରକାର ନୂଆ ରୋଗୀ ଦେଖି ଦିନକୁ ଦିନ ନୂଆ ରୋଗରୁ ନୂଆ ଜ୍ଞାନ ଲଭୁଥାଅ ।

ଆମ୍ଭର ଏହା ସ୍ମରଣ କରିବାର ବିହିତ ଅଟେକି, କେଡ଼େ କେଡ଼େ ଲୋକ ଚିର ଜୀବନ ଯାତନା ଭୋଗ କରିଅଛନ୍ତି । କେତେ ସୁଖାର୍ହ ଲୋକ କାରାଗାରରେ, ଚିର-

ରୋଗରେ ଅନ୍ୟାୟ ଉପଦ୍ରବରେ ଚିରଦିନ ଯାପନ କରିଅଛନ୍ତି । ସେଥିପାଇଁ ଲବମାତ୍ର ବିଳାପ କରି ନାହାନ୍ତି । ଆମ୍ଭେ କେଉଛାର ଅଟୁଁ । ମନୁଷ୍ୟର ମନ ନଦୀ ପ୍ରବାହ ପରି କୌଣସି କୌଣସି ସ୍ଥଳରେ ଆବିଳ ହେଉଅଛି । ନଦୀପ୍ରବାହ ପ୍ରାୟ କିଛି ଦୂର ଯାଇ ପୁଣି ତାହାର ପ୍ରାକୃତିକ ନିର୍ମଳତାକୁ ଲଭୁ ଅଛି ।

ମୁଁ ଏହି ଚିନ୍ତାରେ ମଗ୍ନ ଥିଲି । ମେଘ ଛାଡ଼ିବ ନାହିଁ । ଦିନଯାକ ବର୍ଷା ହେବ, ଏହା ଭାଳିଥିଲି । ମାତ୍ର ମେଘ କଟିଗଲା । ସୂର୍ଯ୍ୟ ବାହାରିଲେ । ବୃକ୍ଷପତ୍ରାର୍ଗରେ, ଲମ୍ବିତ ଜଳବିନ୍ଦୁରେ ରବି କିରଣ ପତିତ ହୋଇ ଇନ୍ଦ୍ରଧନୁ ପ୍ରଭାପୁଞ୍ଜ ପ୍ରାୟ ଦିଶିଲା । ଆର୍ଦ୍ରି ଏବଂ ଉକ୍ତିର ଏକତ୍ର ସମାବେଶ ପ୍ରାୟ ମନୋହର ଦିଶିଲା । ପ୍ରକୃତିଙ୍କର ତାତ୍‌କାଳିକ ଶୋଭା ସନ୍ଦର୍ଶନ ନିମନ୍ତେ ମୁଁ ଘରୁ ବାହାରିଲି ।

## କାଳିଦାସ

ଏହି ଶିରୋନାମା ଦେଖିଲାମାତ୍ରକେ ପାଠକେ ମଣିବେ ଆମ୍ଭେମାନେ କାଳିଦାସଙ୍କର ଜୀବନ ବୃତ୍ତାନ୍ତ ଲେଖିବାକୁ ପ୍ରବୃତ୍ତ ହୋଇଅଛୁଁ । ବାସ୍ତବରେ ଏପରି ଆଶା ଅସଂଗତ ନୁହେଁ । ମାତ୍ର ଏହା ମହତ୍ ଦୁଃଖର କଥା ଆମ୍ଭେମାନେ ଏ ବିଷୟରେ ସହୃଦୟ ପାଠକବୃନ୍ଦର ଅନୁସନ୍ଧିତ୍ସା ତୃପ୍ତି କରିବାକୁ ପ୍ରସ୍ତୁତ ନହୁଁ । କେହି ଏ ବିଷୟରେ ପ୍ରସ୍ତୁତ ହୋଇପାରିବେ, କାଳିଦାସଙ୍କର ଆଚାର୍ଯ୍ୟ କିଏ ଥିଲେ ? କିଏ ତାଙ୍କର ସହାଧ୍ୟାୟୀ ଥିଲେ ? କେଉଁ ଅରଣ୍ୟ ପ୍ରଥମେ ତାହାଙ୍କର ଚର୍ମ ଚକ୍ଷୁର ପୁରୋବର୍ତ୍ତୀ ହୋଇ ପଛକୁ କାବ୍ୟ ରଚନା ବେଳେ ମନୋନୟନର ପୁରୋବର୍ତ୍ତୀ ହୋଇଥିଲା ? କେଉଁ ବିଳାସିନୀ ତାହାଙ୍କର ଋତୁ ସଂହାର ଶୋଭା ସନ୍ଦର୍ଶନ ସହଚରୀ ଥିଲେ ? କେଉଁ ସାଗରର ଉପକୂଳେ ବିଚରି ସେ

''ତମାଳତାଳୀ ବନରାଜୀ ନୀଳା''

ବେଳାର ବର୍ଣ୍ଣନା କରିଥିଲେ ? କେତେ ଥର ଅବା ''ଅବାଟକୁ ବାଟ'' କରିଥିଲେ, କେହି, ଭାବୁକ ପାଠକଙ୍କର ଏହି ଉଦାର କୌତୁହଳ ପରିତୃପ୍ତ କରି ପାରିବେ ଆମ୍ଭମାନଙ୍କୁ ସେଥିର ସ୍ତୋକମାତ୍ର ସମ୍ଭାବନା ଦିଶୁ ନାହିଁ । ହିନ୍ଦୁମାନଙ୍କର ଔଦାସୀନ୍ୟରୁ ଯେଉଁ ଅନିଷ୍ଟ ପରମ୍ପରା ଯାତ ହୋଇ ଅଛି ସାହିତ୍ୟ ସଂସାରକୁ ସେଥିର ଉଣା ସହିବାକୁ ହୋଇ ନାହିଁ ।

ହିନ୍ଦୁମାନେ ସ୍ୱଭାବତଃ ଅଦ୍ଭୂତ ରସପ୍ରିୟ ଅଟନ୍ତି । ପ୍ରକୃତିରେ ଯାହା କିଛି ଅଦ୍ଭୂତ ଅଛି ପ୍ରକୃତି ସେସବୁ ଗୋଡ଼ିକ ନେଇ ହିନ୍ଦୁମାନଙ୍କର ନୟନ ଆଗେ ଥୋଇ ଦେଇ ଅଛି । ହିନ୍ଦୁ ଘରେ ବସି ଯେପରି ଅଦ୍ଭୂତ ପଦାର୍ଥମାନ ଦେଖେ ଅନ୍ୟ ଜାତି ଭ୍ରମଣ

କରି ତାହା ଦେଖନ୍ତି ନାହିଁ । ଏପରି ଅଦ୍ଭୂତ ପର୍ବତ, ଅଦ୍ଭୂତ ନଦୀ, ଅଦ୍ଭୂତ ଜନ୍ତୁ, ଅଦ୍ଭୂତ ଘଟନା ଆନ ଦେଶରେ ହୁଏ ନାହିଁ; ଆନ ଜାତି ଦେଖନ୍ତି ନାହିଁ । ଏଣୁ ହିନ୍ଦୁ ହୃଦୟ ଅଦ୍ଭୂତ ରସପ୍ରିୟ ହୋଇଅଛି । ଏଥିରେ ହିନ୍ଦୁର ଚାରା ନାହିଁ । ସ୍ୱାଭାବିକ ଘଟନା ଘଟିତ ପୁସ୍ତକ ପାଠରେ ଯେଉଁ ଆନନ୍ଦ ଉପୁଜେ ହିନ୍ଦୁ ମନ ସେଥିରେ ଅଂଶୀ ହେବାକୁ ସ୍ୱଭାବତଃ ପରାଙ୍ମୁଖ ହେଉଥିଲା । ଆମ୍ଭମାନଙ୍କର ପୁରାଣ ରଚୟିତାମାନେ, ଏହା ନିଷ୍ଠା ଜାଣି ପାଠକ ମନ ଘେନି ଥୋକାଏ ଥୋକାଏ ପୁସ୍ତକ ରଚି ଅଛନ୍ତି । ଉଲ୍ଲିଖିତ କାରଣମାନଙ୍କରୁ ଇତିହାସ, ଜୀବନଚରିତ୍ରର ଏପରି ଶୋଚନୀୟ ଅସଦ୍ଭାବ ଜନ୍ମିଅଛି । ଉଲ୍ଲିଖିତ କାରଣମାନଙ୍କରୁ ଆମ୍ଭମାନଙ୍କର ବିଶ୍ୱପ୍ରସିଦ୍ଧ ବାଲ୍ମିକୀ, ବିଶ୍ୱପ୍ରସିଦ୍ଧ ବ୍ୟାସର ପ୍ରାମାଣିକ ଜୀବନ ବୃତ୍ତାନ୍ତ ନାହିଁ । କାଳିଦାସଙ୍କୁ ଅବା କିଏ ପଚାରୁ ଅଛି ।

କାଳିଦାସଙ୍କ ଜୀବନଚରିତ ସମ୍ବନ୍ଧେ ଯେଉଁ ପ୍ରବାଦମାନ ପ୍ରଚଳିତ ଅଛି ପୁରାଣପାଠ ଓ ପୁରାଣ ବିଶ୍ୱାସଦ୍ୱାରା ବିକୃତ ମନସ୍କ ବ୍ୟକ୍ତି ବ୍ୟତୀତ ଆଉ କେହି ସେହି ପ୍ରବାଦମାନଙ୍କୁ ସତ୍ୟ ଅଥବା ସମ୍ଭବପର ମଣିବେ ନାହିଁ । ସେହି ପ୍ରବାଦମାନ କାଳିଦାସଙ୍କ ଜୀବନକାଳରେ ରଚିତ ହୋଇଥିବାର ଦିଶୁ ନାହିଁ । ପ୍ରତିବାଦର ସମ୍ଭାବନା କଳ୍ପନାର ପୁରୋବର୍ତ୍ତୀ ଥିଲେ କଳ୍ପନା ପାଦେ ଅଗ୍ରସର ହୋଇପାରନ୍ତି ନାହିଁ । କାଳିଦାସ ଏବଂ ତତ୍‌ଘଟିତ ପ୍ରବାଦମାନ ଏ ଦୁହିଁଙ୍କ ମଧ୍ୟରେ ଅନେକ ଶତ ବର୍ଷ ବ୍ୟବହିତ ଥିବାର ଦିଶୁଅଛି । ଭୂତ କାଳାର୍ଣ୍ଣବର ଗଭୀର ନୀର ମଧ୍ୟରେ ନ ବୁଡ଼ିଲେ କେହି ପ୍ରବାଦର ବିଷୟୀଭୂତ ହୋଇପାରନ୍ତି ନାହିଁ । ଦିଶିଲା ବେଳେ ତୃଣ ଥାଆନ୍ତି ବୁଡ଼ିଲେ ରତ୍ନ ହୁଅନ୍ତି । କାଳିଦାସ ଯେପରି ବିଦ୍ୟା ସାଧିଥିଲେ କେହି ସେପରି ପାରି ନାହାନ୍ତି, କାଳିଦାସ ପ୍ରାୟ ନିବିଡ଼ ମୂର୍ଖତାପନ୍ନ ଆଉ କେହି ନ ଥିଲା, ତୁମ୍ଭେ ସେପରି ନୁହ, ତୁମ୍ଭେ ଚେଷ୍ଟାକଲେ କାଳେ ଅବଶ୍ୟ ସେପରି ବିଦ୍ୟା ସାଧିପାରିବ ଶିଷ୍ୟମାନଙ୍କୁ ଆଚାର୍ଯ୍ୟମାନେ ଏହି ଉପଦେଶ ଦେବା ନିମନ୍ତେ ସ୍ୱକୀୟ କଳ୍ପନା ଭଣ୍ଡାରରୁ ଶଂସିତ ପ୍ରବାଦ ରତ୍ନମାନ ଲୋଡ଼ି ନେଇଥିବେ ।

କେହି ଏପରି ଆପତ୍ତି କରିପାରନ୍ତି ଯେ ବାହ୍ୟ ପ୍ରମାଣ ଅଭାବରେ ରଚନାଗତ ଆଭ୍ୟନ୍ତରିକ ପ୍ରମାଣରୁ ମଧ୍ୟ ପ୍ରସ୍ତାବର ବିଷୟୀଭୂତ ମହାକବିଙ୍କ ଜୀବନ ଚରିତ୍ର ଘଟିତ ବିଷୟମାନ ସଂକଳିତ ହୋଇପାରେ । ଯେ ଯାହା କହନ୍ତୁ ପଛକେ ଆମ୍ଭେମାନେ ଏପରି କାହାଣୀର ଅନୁମୋଦନ କରିପାରିବୁଁ ନାହିଁ । ଅନ୍ତତଃ କାଳିଦାସର ଗ୍ରନ୍ଥ ସେପରି ନୁହେ । ବାହ୍ୟ ପ୍ରମାଣ ଥିଲେ ଲୋକେ ସେଥିର ଦୃଢ଼ୀକରଣ ନିମନ୍ତେ ଆଭ୍ୟନ୍ତରିକ ପ୍ରମାଣ ଲୋଡ଼ନ୍ତି । ଦୀନକୃଷ୍ଣଦାସେ ପୁରୀ ନିବାସୀ ଥିଲେ । ଜନ ପ୍ରବାଦରୁ ହେଉ ଅବା ପ୍ରାମାଣିକ ଇତିହାସରୁ ହେଉ ଆମ୍ଭେମାନେ ଏହା ନିଷ୍ଠା

ଜାଣିଅଛୁଁ । ମାତ୍ର ଏଥିର ଅନ୍ୟ କୌଣସି ପ୍ରମାଣ ମିଳିଲେ ଆମ୍ଭର ପ୍ରତ୍ୟୟ ଦୃଢ଼ୀଭୂତ ହେବ । ଏହି ଉଦ୍ଦେଶ୍ୟ ସାଧିବା ନିମନ୍ତେ ତଦ୍ରଚିତ ରସକଲ୍ଲୋଳ ଉଦ୍ଘାଟନ କରି ଶରଦ୍ବର୍ଣ୍ଣନା ପଢୁଁ ପଢୁଁ ସେଥିରେ ଏହି ପଙ୍‌କ୍ତି ଦ୍ୱୟ ଦେଖିଲୁଁ

"କୋରକିତ ହେଲେ ଅଗସ୍ତି ଦ୍ରୁମ
କଳାକର ଖଣ୍ଡେ ପ୍ରାୟେ କୁସୁମ ।" (କ୍ରମଶଃ)

# ରହସ୍ୟ

ଜଣେ ଗଉଡ଼ ଗ୍ରାମକୁ ଆସି ତାହା ପ୍ରତିବାସିମାନଙ୍କଠାରେ ବଡ଼ାଇ କରି କହିଲା ଯେ ସାହେବ ମୋ ସାଙ୍ଗରେ କଥା କହିଲେ, ସେମାନେ ପଚାରିଲେ କଣ କହିଲେ ? "ନା ତଫାତ ଯାଓ" ।

ଜଣେ ମିଆଁ ପାଲକିରେ ଯାଉଥିଲେ ବାଟରେ ଠାକରେ ପାଲକି ରଖିଲେ । ସେଠାରେ ଗୋଟିଏ ତୁଳସୀଗଛ ଥିଲା । ବେହେରାମାନେ ତାହା ଦେଖି ଜୁହାର ହେଲେ । ମିଆଁ ପଚାରିଲେ କାହାକୁ ଜୁହାର ହେଲ ? ବେହେରାମାନେ କହିଲେ "ତୁଳସୀଗଛକୁ" । ମିଆଁ କହିଲେ "ସେ ତୁମ୍ଭର କିଏ" ? ବେହେରା "ଦେବୀ ବୃନ୍ଦାବତୀ" । ସାହେବ "ହଁ ଅଅ" । ଏହା କହି ମିଆଁ ବୃନ୍ଦାବତୀକୁ ଛିଣ୍ଡାଇ ଚୁବାଇଲେ, ବେହେରାମାନେ କ୍ରୋଧସହିତ ତୂନୀ ହେଲେ । କେତେକ ଘଣ୍ଟା ପରେ ପୁଣି ଆଉ ଏକଠାରେ ଗୋଟାଏ ବିଛୁଆତି ଗଛ ଦେଖି ସେଠାରେ ମଧ୍ୟ ପାଲକି ରଖି ବେହେରାମାନେ ଜୁହାର ହେଲେ । ମିଆଁ ପୂର୍ବପରି ତାକୁ ସୁଦ୍ଧା ଆଣି ଚୁବାଉଁ ଚୁବାଉଁ ନାଚିଲେ !!!

ଶୀତକାଳ ଅନ୍ଧାର ରାତ୍ରୀରେ ଜଣେ ବୈଦ୍ୟ ଜଣକ ଦୁଆରରେ ଆସି ଉପସ୍ଥିତ ହେଲେ । ଗୃହସ୍ଥ ବୈଦ୍ୟ ଦେଖି କହିଲେ ଆପଣ ମୋହ ହାତ ଦେଖନ୍ତୁ । ବୈଦ୍ୟ ଦେଖି କହିଲେ ଆପଣଙ୍କର ପୀତ୍ତ ବୃଦ୍ଧି ହୋଇଅଛି । ସେଠାରେ ଆଉ ଜଣେ ବସିଥିଲେ ସେ କହିଲେ ବେଳେ ମୋହ ହାତ ଦେଖନ୍ତୁ ଭଲା ? ବୈଦ୍ୟ କହିଲେ ଦେଖାଓ । ସେ ନ ଦେଖାଇ ଗୃହସ୍ଥ ପୁଣି ଆପଣା ହାତ ତାହାଙ୍କ କାଖତଳ ଦେଇ ଦେଖାଇଲେ । ସେଠାରୁ ବୈଦ୍ୟ ଦେଖି କହିଲେ ତୁମ୍ଭର ବାତ ବୃଦ୍ଧି ହୋଇଅଛି । ଗୃହସ୍ଥ ହସିଲେ, ବୈଦ୍ୟ ଅପ୍ରସ୍ତୁତ ହୋଇ ପ୍ରସ୍ଥାନ କଲେ !!!

# ବିବିଧ ସଂବାଦ

ବାଲେଶ୍ୱର-ଜେଲାର ଅନ୍ତର୍ଗତ ଦେହୁଡ଼ଦା ଗ୍ରାମନିବାସୀ ଶ୍ରୀଯୁକ୍ତ ବାବୁ କୈଳାସଚନ୍ଦ୍ର ରାୟ ମହାଶୟଙ୍କ ବଗିଚାରେ ଗୋଟାଏ ଧଳାମନ୍ଦାର ଗଛ ଅଛି । ସେହି ଗଛର ଆନଶାଖା ଗୋଡ଼ିକରେ ଧଳାଫୁଲ ଫୁଟେ କେବଳ ଗୋଟିଏ ଡାଳରେ ଆଜକୁ ପ୍ରାୟ ବର୍ଷେ ହେଲା ନାଲଫୁଲ ଫୁଟୁଅଛି !

କାମ୍ବେଲ ସାହେବଙ୍କର କେତେ ଗୋଡ଼ିଏ ନୂଆ ପାଠଶାଳା ସ୍ଥାପିତ ହେଲାଣି । ଏହି ବିଷୟରେ ଆମ୍ଭମାନଙ୍କର କୀଲେଟର ଉଦାରମତି ଜନ୍‌ବିମ୍‌ସ ଅନେକ ଯତ୍ନ କରୁଅଛନ୍ତି । ଆମ୍ଭେମାନେ ଭରସା କରୁଁ ଯେଉଁ ଉଦ୍ଦେଶ୍ୟରେ ପାଠଶାଳା ଗୋଡ଼ିକ ବସୁଅଛି ଉକ୍ତ ମହାତ୍ମାଙ୍କ ଆନ୍ତରିକ ଯତ୍ନରେ ଶୀଘ୍ର ସେହି ଉଦ୍ଦେଶ୍ୟ ଫଳୋନ୍ମୁଖ ହେବ । ବିମ୍‌ସ ମହାତ୍ମାଙ୍କଠାରେ ଆମ୍ଭମାନଙ୍କର ମାଗୁଣି ଏହିକି ଯେଉଁ ଉପାୟରେ ଅବଧାନମାନେ "ଅସ୍ତତିରିୟ, ଅଳତା ଅଳତ" ଛାଡ଼ିବେ ସେଥିପାଇଁ ଯତ୍ନଶୀଳ ହେଉନ୍ତୁ ।

ବଟେଶ୍ୱରରେ ବୀରଭଦ୍ରନାମକ ଜଣେ ମୂଲିୟା ଉତ୍‌କଟ ରୋଗଗ୍ରସ୍ତ ହେବାରୁ ତାହାର ସନ୍ତାନ ଗୋଡ଼ିକ ଅନାହାରରେ ମରଣାପନ୍ନ ହୋଇଥିଲେ । ବିମ୍‌ସ ମହୋଦୟ ଅଶ୍ୱାରୂଢ଼ ହୋଇ ବୁଲୁଁବୁଲୁଁ ଏଥିର ସନ୍ଧାନ ନେଲେ । ବୀରଭଦ୍ରକୁ ହସପାତାଲକୁ ପଠାଇଲେ ଏବଂ ସ୍ୱୟଂ ପିଲାମାନଙ୍କର ଭରଣ ପୋଷଣର ଭାର ନେଲେ ।

ଏ ବର୍ଷ ବାଲେଶ୍ୱରରେ ଛାତ୍ରବୃତ୍ତି ପରୀକ୍ଷାରେ ୩୩ଜଣ ପରୀକ୍ଷାର୍ଥୀ ହୋଇଥିଲେ ପରୀକ୍ଷାର୍ଥୀମାନେ କିପରି ଉତ୍ତର ଦେଇଅଛନ୍ତି ସେବିଷୟର ଆଲୋଚନା କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେଁ । ଏମାନଙ୍କ ମଧ୍ୟରେ କେହି କେହି ନିତାନ୍ତ ଅଳ୍ପ ବୟସ୍କ ଥିଲେ, ଏମାନଙ୍କୁ ବାରମାସ ମଧ୍ୟରେ ପନ୍ଦରଖଣ୍ଡି ବହି ପଢ଼ିବାକୁ ହୋଇଥିଲା, ସ୍ୱାସ୍ଥ୍ୟରକ୍ଷା ମଧ୍ୟ ଏହି ପୋଥିମାନଙ୍କ ମଧ୍ୟରୁ ଖଣ୍ଡିଏ । ୧୧ବର୍ଷ ପିଲାକୁ ୧୨ମାସ ମଧ୍ୟରେ ୧୫ଖଣ୍ଡି ପୋଥି ପଢ଼ାଇବାରେ ଏମାନଙ୍କର ସ୍ୱାସ୍ଥ୍ୟର ଯେପରି ହାନୀ ହୁଏ କୌଣସି ସ୍ୱାସ୍ଥ୍ୟରକ୍ଷା ପଠନ ସେହି କ୍ଷତି ପୂର୍ଣ୍ଣ କରି ପାରିବ ନାହିଁ । ଫଳରେ ଏମାନେ ସ୍ୱାସ୍ଥ୍ୟରକ୍ଷାର ପୋଥିରୁ ଯେଉଁ ଉପଦେଶ ଲଭନ୍ତି କାର୍ଯ୍ୟରେ ସେଥିର ସମ୍ପୂର୍ଣ୍ଣ ବିପରୀତ ହୁଏ । ଏହା କଣ ଉପରିସ୍ଥ କର୍ମଚାରିମାନଙ୍କର ଆଖିରେ ପଡୁ ନାହିଁ ? ଏମାନେ କାହିଁକି ଆପଣା ଆପଣା ମତର ପକ୍ଷପାତୀ ହୋଇ ସୁକୁମାର ମତୀ ବାଳକମାନଙ୍କର ନବାଙ୍କୁରିତ ମନବୃତ୍ତି ଗୋଡ଼ିକୁ ଝାଉଁଳି ଦେଉଅଛନ୍ତି ।

ଆମ୍ଭେମାନେ ହାରାହାରି ହିସାବ କରି ଦେଖିଅଛୁ ବାଳକମାନଙ୍କୁ ପ୍ରାୟ ପ୍ରତିଦିନ ଛ ପୃଷ୍ଠା ଲେଖାଏଁ ପଢ଼ିବାକୁ ହୁଏ, ଏହା ଉପରେ ଆହୁରି ହସ୍ତାକ୍ଷର, ରଚନା, ଅନୁବାଦ ଓ ପତ୍ର ଲେଖିବାର ଶିରୋନାମାଦି ଶିଖିବାକୁ ହେଉଅଛି; ଏହାର କି ଆଉ ପ୍ରତିକାର ହୋଇପାରିବ ନାହିଁ ? ଆମ୍ଭମାନଙ୍କ ବିବେଚନାରେ କେବଳ ସାହିତ୍ୟ, ଅଙ୍କ, କ୍ଷେତ୍ରପରିମାଣ, ଭୂଗୋଳ, ଜମୀଦାରି ମହାଜନୀ ହିସାବ, ରଚନା ଓ ହସ୍ତାକ୍ଷର ଏହି କେତେଗୋଟି ବିଷୟରେ ଯେବେ ପରୀକ୍ଷା ଗୃହୀତ ହୁଅନ୍ତା ତେବେ ପିଲାମାନେ ସ୍ୱାସ୍ଥ୍ୟରକ୍ଷା ନିୟମ ଅବିରୋଧରେ ଭଲ ବ୍ୟୁତ୍ପତ୍ତି ଲାଭ କରନ୍ତେ । ସମ୍ପ୍ରତି ଶିକ୍ଷା ବିଷୟର ଭାର ସ୍ଥାନୀୟ କିଲେଟର ମହୋଦୟଙ୍କଠାରେ ପ୍ରବର୍ତ୍ତି ଅଛି, ସେ ଏ ବିଷୟରେ କଟାକ୍ଷ କଲେ ଆମ୍ଭମାନଙ୍କର ମନସ୍କାମନା କଥଞ୍ଚିତ୍ ସିଦ୍ଧ ହୋଇପାରେ ।

ଆମ୍ଭମାନଙ୍କର ସ୍କୁଲ ଇନିସପେକ୍ଟର ଆର. ଏଲ. ମାର୍ଟିନ ସାହେବଙ୍କର ହଠାତ୍ ମୃତ୍ୟୁ ଶ୍ରବଣ କରି ଆମ୍ଭେମାନେ ଅତ୍ୟନ୍ତ ଦୁଃଖିତ ହୋଇଅଛୁଁ, ହା ଦୈବ ! ଯେଉଁମାନଙ୍କର ମୃତ୍ୟୁ ଅନେକ ଲୋକଙ୍କର ପ୍ରାର୍ଥନୀୟ ଯେଉଁମାନେ ମଲେ ମହୀର ଭାର ଊଣା ହେବ ଏମନ୍ତ କେତେ ପାପାତ୍ମା ଦୀର୍ଘାୟୁ ହୁଅନ୍ତି ମାତ୍ର ଯେଉଁ ସାଧୁମାନଙ୍କ ଜୀବନ ଉପରେ ଅନେକ ଲୋକେ ଆଶା ମନ୍ଦିର ନିର୍ମାଣ କରନ୍ତି ସେହିମାନେ ନିଷ୍ଠୁର କୃତାନ୍ତର କରାଳ କବଳରେ ଆଗେ ପଡ଼ନ୍ତି । ମାର୍ଟିନସାହେବଙ୍କ ଚରିତ୍ର ଅତି ଉଦାର ଥିଲା, ମାର୍ଟିନସାହେବ ଯେଡ଼େ ଦୟାଳୁ, ମିଷ୍ଟଭାଷୀ ଓ ପରୋପକାରୀ ଥିଲେ ସେପରି ସାହେବ ସହସ୍ର ଭିତରେ ଜଣେ ଦୁଇଜଣ ଦେଖିବାର ଦୁଷ୍କର ।

—

**ପ୍ରଥମ ବର୍ଷ ଦ୍ୱିତୀୟ ସଂଖ୍ୟା**
**ଫେବୃୟାରୀ, ୧୮୭୩**

# ବିବେକୀ

## କେଉଁ କେଉଁ ବିଷୟମାନ ବିଳମ୍ବରେ ଶିକ୍ଷା ହୁଏ ।

ବିଳମ୍ବରେ କଅଣ ଶିକ୍ଷା ହୁଏ ତାହା ଟିକିକ ଭିତରେ ବୁଝିପାରିବ । କେତେଗୁଡ଼ିଏ ତତ୍ତ୍ୱ ଅଛି ଶିଖିବାକୁ ଅନେକ ଦିନ ଲାଗେ । କେତେଗୁଡ଼ିଏ ନୀତି ଅଛି ଶିଖୁ ଶିଖୁ ଯୁଗ ବହିଯାଏ । ସେହି ତତ୍ତ୍ୱ ସେହି ନୀତିମାନ ସହଜରେ ବୁଝା ନ ଯାଏ ଏମନ୍ତ ନୁହେ । କଥାଗୁଡ଼ିକ ସରଳ – ଏପରି ହେତୁମୂଳକ ନୁହେଁ ଯେ, ସେହି ହେତୁର ଯାଥାର୍ଥ୍ୟ ଚଞ୍ଚଳ ଜଣା ନ ପଡ଼ିବ । କଥାଗୁଡ଼ିକ ସତ୍ୟ ଶୁଣିଲାକ୍ଷଣି ପ୍ରତୀୟମାନ ହେବ । ତେବେ ଶିଖିବାକୁ ଏତେଦିନ କିପାଇଁ ଲାଗେ ? କାରଣ ଏତିକି – ସେମାନଙ୍କ ସମ୍ବନ୍ଧେ ହୃଦୟ ଆଉ ମସ୍ତିଷ୍କର ମତଭେଦ ହୁଏ । ଆମ୍ଭର କିପରି ଭାଳିବାର ଉଚିତ, କଅଣ କରିବାର ବିହିତ ତାହା ସହଜେ ଜଣା ପଡ଼େ; ମାତ୍ର ଆନ ପ୍ରକାର ଭାଳିବାକୁ ଆନ ପ୍ରକାର କରିବାକୁ ସବୁବେଳେ ପ୍ରବୃତ୍ତି ହେଉଥାଏ ।

ଅନେକ ବିଷୟ ଅଛି ଶିଖିବାକୁ ଅନେକ ଦିନ ଲାଗେ, ଫଳା ଶିଖିବାକୁ ଅନେକ ଦିନ ଲାଗେ । ପଣିକିଆ ଶିଖିବାକୁ ଅନେକ ଦିନ ଲାଗେ । ମାତ୍ର ଆମ୍ଭେମାନେ ଏପରି ବିଷୟମାନଙ୍କୁ ଲକ୍ଷ କରୁ ନାହିଁ । କେତେଗୁଡ଼ିଏ ମନୁଷ୍ୟ ଅଛନ୍ତି ପ୍ରକୃତି ସେମାନଙ୍କୁ କବି କରି ନାହାନ୍ତି ଏହା ଶୀଘ୍ର ବୁଝିପାରନ୍ତି ନାହିଁ । ସେମାନେ କେତେ ଚୌପଦୀ ରଚନ୍ତି, ରସିକତାର ପରିଚୟ ଦେବା ପାଇଁ କଥା କହୁଁ କହୁଁ ଢଗ ବୋଲନ୍ତି, ନିରୀହ ଲୋକଙ୍କୁ ଦେଖି କେତେ ବ୍ୟଙ୍ଗ କରନ୍ତି । ଏହିପରି ଦିନ ଯାପି ସ୍ଥବିରତାକୁ ଲଭନ୍ତି । ଆମ୍ଭେମାନେ ଏହିପରି ବିଷୟମାନଙ୍କୁ ଲକ୍ଷ୍ୟ କରୁଅଛୁଁ ।

ବିଳମ୍ବରେ ଅନେକ ବିଷୟ ଶିଖାଯାଏ । ସଂସ୍କୃତ ଭାଷା ଶିଖିବାକୁ ଅନେକ ଦିନ ଲାଗେ । ଅନେକ ଶ୍ରମ ଅପେକ୍ଷା କରେ; ମାତ୍ର ବ୍ୟୁତ୍‌ପତ୍ତି ଲଭିଲା ଉତ୍ତାରୁ ଆଉ କଷ୍ଟ ନାହିଁ । ବିସର୍ଗସନ୍ଧି ସୂତ୍ରଗୁଡ଼ିକ ଶିଖିଲା ଗତିର ନିଦ୍ରା ହେବା ଆଗେ ସୂତ୍ରଗୁଡ଼ିକ ମନେମନେ ଆବୃତ୍ତି କରୁଅଛ, ଆଉ ତୁମ୍ଭର ସନ୍ଦେହ ନାହିଁ, ''ଏ କଅଣ ଧାତ'' ଏପରି ଶଙ୍କା ଆଉ ମନରେ ଜାତ ହେଉ ନାହିଁ, ତୁମ୍ଭେ ଆଉ ମନେ ପାଞ୍ଚୁ ନାହିଁ ''ଏ ନୁହେ ପରା ?'' । ବିଳମ୍ବରେ ଶିଖିଲ; ମାତ୍ର ଯେବେ ଶିକ୍ଷା ହେଲା ଆଉ ସଂଶୟ ନ ରହିଲା । ମାତ୍ର ଏମନ୍ତ କେତେ ଗୁଡ଼ିଏ କଥା ଅଛି ଯେ, ସେମାନଙ୍କର ହେତୁ ଓ ଯଥାର୍ଥ୍ୟ ସ୍ଫୁଟ ରୂପରେ ଜଣା ପଡ଼ିଲେ ସୁଦ୍ଧା ସେମାନଙ୍କରେ ବିଶ୍ୱାସ ସଂସ୍ଥିତ ହୁଏ ନାହିଁ । ସେହି

କଥାଗୁଡ଼ିକ ତୁମ୍ଭକୁ କେହି ଯେବେ ବୁଝାଇ ଦେବେ ତୁମ୍ଭେ ସହଜରେ ବୁଝିପାରିବ; ମାତ୍ର ଗ୍ରହଣ କରି ପାରିବ ନାହିଁ । ଗ୍ରହଣ କଲେ ମହୀ ଉଲଟି ଗଲା ପରି ଦିଶିବ । କେତେ ଗୁଡ଼ିଏ କଥା ଅଛି ମସ୍ତିଷ୍କ କହୁଅଛି ''ଏଗୁଡ଼ିକ ସତ''; ମାତ୍ର ତୁମ୍ଭର ଏପରି କୁଅଭ୍ୟାସ ଜନ୍ମିଅଛି ଯେ, ସେଥିଯୋଗୁଁ ତୁମ୍ଭେ ସେଗୁଡ଼ିକୁ ମିଥ୍ୟା ଭାଳୁଅଛ ଅଥବା ମିଥ୍ୟା ଭାଳିବାକୁ ସବୁବେଳେ ଉତ୍ସୁକ ଅଟ । ସେହି କଥାଗୁଡ଼ିକ ପ୍ରଥମେ ଶିଖିବାକୁ ଅନେକ ଆୟାସ ଅପେକ୍ଷା କରେ ଏମନ୍ତ ନୁହେଁ; ମାତ୍ର ଥରକରେ ଶିଖି ହୁଏ ନାହିଁ, ଯେଡ଼େ ସାବଧାନ ହୋଇ ଶିଖ ପଛକେ ଥରକରେ ଶିଖିପାରିବ ନାହିଁ । ଏହି ତତ୍ତ୍ୱମାନ ଅନେକ କଷ୍ଟରେ ଆୟତ୍ତ ହୁଏ, ଶିକ୍ଷା ବେଳେ ଅତ୍ୟନ୍ତ ବିସ୍ୱାଦ ଲାଗେ, ପଛକୁ ସତ୍ୟ ଓ ଅଭ୍ରାନ୍ତ ବୋଲି ପ୍ରତିଭାତ ହୁଏ; ତୀକ୍ଷ୍ଣ କର୍କଶ ବିଘ୍ନ ଲେଖନ ହୃଦୟ ପତ୍ରରେ ତତ୍ତ୍ୱଗୁଡ଼ିକୁ ଲେଖି ଦେଇଯାଏ । ଦିନ ଗଲା ମାସ ଗଲା । ହୃଦୟ ପୋଥି ଫିଟାଇ ଦେଖ ସେ ଧାଡ଼ି ଗୁଡ଼ିକ ଲିଭି ଯାଇଅଛି; କେବଳ ଲିଭି ଯାଇଅଛି ଏମନ୍ତ ନୁହେଁ, ସେହି ସ୍ଥାନରେ ସେଥି ପରିବର୍ତ୍ତରେ ସେଥିର ବିପରୀତ କଥାଗୁଡ଼ିକ ଅଙ୍କିତ ହୋଇଅଛି । ଏହିପରି ତତ୍ତ୍ୱମାନଙ୍କ ସମ୍ବନ୍ଧେ ଆମ୍ଭେ ଦୁଇ ଚାରି କଥା କହିବୁଁ ।

ଏହି ତତ୍ତ୍ୱଗୁଡ଼ିକ ଆମ୍ଭମାନଙ୍କର ସ୍ପୃହା ବିରୋଧୀ ଅଟନ୍ତି । ଶିକ୍ଷାବେଳେ ସେମାନଙ୍କର ଯାଥାର୍ଥ୍ୟ ଚଞ୍ଚଳ ହୃଦୟଙ୍ଗମ ହୁଏ; ମାତ୍ର କ୍ରମରେ ଆମ୍ଭେମାନେ ସେଗୁଡ଼ିକ ପାସୋରି ପକାଉଁ, ପୁଣି ପୂର୍ବ ମତକୁ ଲେଉଟି ଆସୁ । ଦୁଇରେ ଦୁଇ ମିଶାଇଲେ ଚାରି ହୁଏ, ଥରେ ଜଣକୁ ଏହା ବୁଝାଇ ଦିଅ, ସେ ଅବିଚଳିତ ଚିତ୍ତରେ ଶିଖିବ, ସେ ବିଷୟରେ ତାହାର ସନ୍ଦେହ ଜାତ ହେବ ନାହିଁ; ମାତ୍ର ତାହାକୁ କହ, ତୁମ୍ଭେ ଆପଣାକୁ ଯେଡ଼େ ଲୋକ ମଣ, ବାସ୍ତବରେ ତୁମ୍ଭେ ସେପରି ନୁହଁ, କୌଣସି ସ୍ତ୍ରୀକୁ କହ, ''ସମସ୍ତଙ୍କ ପୁଅ ଯେପରି ତୁମ୍ଭ ପୁଅ ସେହିପରି'' କୌଣସି ଗ୍ରନ୍ଥକାରକୁ କହ, ''ତୁମ୍ଭେ ଯେ ଗ୍ରନ୍ଥ ରଚିଅଛ, ଏମନ୍ତ ଗ୍ରନ୍ଥ ଅନେକ ଅଛି'' କହିଲାକ୍ଷଣି ତୁମ୍ଭେ ଦେଖିବ, ତୁମ୍ଭ କଥା ତାହାର ହୃଦୟଙ୍ଗମ ହେଲା ନାହିଁ । ହୃଦୟଙ୍ଗମ ହେଲେ ସୁଦ୍ଧା ସ୍ୱଳ୍ପକାଳ ମଧ୍ୟରେ ମନରୁ ତିରୋହିତ ହେବେ ।

ଯେଉଁମାନେ ମନର ସମଧିକ ଉତ୍କର୍ଷ ସାଧି ନାହାନ୍ତି, ସେମାନଙ୍କୁ ତୁମ୍ଭେ ଯେବେ ସେହିପରି କହିବ, ତେବେ ଦେଖିବ, ସେ ତୁମ୍ଭର ଯୁକ୍ତିର ପ୍ରତିଯୁକ୍ତି ନ ଦର୍ଶାଇ ହାତ ଗୋଡ଼ କୁଚାଡ଼ି ତର୍ଜ୍ଜନ ଗର୍ଜ୍ଜନ କରିବେ । ପ୍ରକୃତ ପ୍ରସଙ୍ଗ ଛାଡ଼ି ତୁମ୍ଭେ ଆଗେ କଅଣ ଥିଲା ତୁମ୍ଭର ବାପା କେମନ୍ତ ଲୋକ ଥିଲେ, ତୁମ୍ଭର ଅବସ୍ଥା କିପରି ଥିଲା, ତୁମ୍ଭ ଚରିତ୍ର କେମନ୍ତ ଅଟେ, ତୁମ୍ଭେ ଦେଖିବାକୁ କିପରି ହିଂସାସୂଚକ ସ୍ମିତ ସହିତ ଏହି କଥା ମାନଙ୍କର ଆଲୋଚନା କରିବେ । ଶେଷକୁ ଦେଖିବ ତୁମ୍ଭ ବନ୍ଧୁମାନେ ଆସି ତୁମ୍ଭକୁ ସାବଧାନ ହୋଇ ଚଳିବା ପାଇଁ ଏହି ଉପଦେଶ ଦେବେ ''ତୁମ୍ଭେ ତାହାକୁ କାହିଁକି ଏପରି କଥା

କହିଲ, ଏମନ୍ତ କଲେ ସମସ୍ତେ ତୁମ୍ଭକୁ ଧୃଷ୍ଟ ଓ ନିର୍ବୋଧ ବୋଲିବେ ।'' ଅଜ୍ଞମାନେତ ଏହିପରି । ବିଜ୍ଞ ଲୋକେ, ଯେଉଁମାନେ ମନର ଉତ୍କର୍ଷ ସାଧିଅଛନ୍ତି ବୋଲି ଅଭିମାନ କରନ୍ତି, ସେମାନଙ୍କୁ ଯେବେ ଅପ୍ରିୟ ସତ୍ୟ ବୋଲିବ ସେମାନେ ବାହାରେ ତୁମ୍ଭଠାରେ ରୁଷ୍ଟ ହେବେ ନାହିଁ; ମାତ୍ର ମନରେ ଅଳ୍ପ ହେଉ ଅବା ଅଧିକ ହେଉ-ମନରେ ଅବଶ୍ୟ ଦୁଃଖିତ ହେବେ । ଦେହରେ ବ୍ରଣ ହେଲେ ବୈଦ୍ୟ ଯେତେବେଳେ ତାହାକୁ ଚିରିଦିଏ, ସେତେବେଳେ ବୈଦ୍ୟ ଆମ୍ଭର ଭଲ କରୁଅଛି ବୋଲି କେତେ ଲୋକ ଆହ୍ଲାଦିତ ହୁଅନ୍ତି ? ଚିରିବା ବେଳ କଥା ଛାଡ଼ି ଦିଅ । ଆରୋଗ୍ୟ ଲଭିଲା ଉତ୍ତାରୁ ତୁମ୍ଭେ ଯେତେ ଥର ବୈଦ୍ୟକୁ ଦେଖିବ, ତୁମ୍ଭ ମନରେ କୃତଜ୍ଞତାର ଉଦ୍ରେକ ନ ହୋଇ ବରଂ ସେହି ବ୍ରଣ-ବିଦାରଣ-କଷ୍ଟ ସ୍ମୃତିମାର୍ଗକୁ ଆସିବ ।

ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍ ନବ୍ରୂୟାତ୍ ସତ୍ୟମପ୍ରିୟଂ ।

ଯେଉଁ ବ୍ୟକ୍ତି ଏହା କହିଥିଲେ, ସେ ଅନେକ ଦେଖି ଶୁଣି କହିଥିଲେ । ହିତାହିତ ଜ୍ଞାନାଭିମାନୀମାନେ ଏହି ଚରଣଦ୍ୱୟ ଶୁଣିଲାକ୍ଷଣି ହସନ୍ତି । ''ସତ୍ୟ କଥା କହିବୁଁ ସେଥିରେ ଭୟ କଅଣ ? କାହାରି କଷ୍ଟ ହେଲାତ ହେଲା ।'' ବଢ଼ିଲେ ଜାଣିବେ । ବାସ୍ତବରେ ଅପ୍ରିୟ ସତ୍ୟ, ଦଶମୂଳ ପାଞ୍ଚଣପରି ଲାଗେ । ଯେଉଁମାନଙ୍କୁ ମହୁପରି ଲାଗେ ସେମାନେ ମହୀରେ ନାହାନ୍ତି ।

ଆମ୍ଭେମାନେ ଆପଣାକୁ ଯେଡ଼େ କରି ମଣୁ, ବାସ୍ତବରେ ଆମ୍ଭେମାନେ ସେପରି ନୋହୁଁ, ଆମ୍ଭେମାନେ ଜୀଇଁଲେ ଅତି ଅଳ୍ପ ଲୋକର ସ୍ୱାର୍ଥସିଦ୍ଧି, ମଲେ ଅତି ଅଳ୍ପ ଲୋକର ସ୍ୱାର୍ଥ ହାନି ହେବ, କେହି ଆମ୍ଭମାନଙ୍କ କଥା ନିତିଦିନ ଭାବୁ ନାହାନ୍ତି, ଏହା ହୃଦୟଙ୍ଗମ ହେବାକୁ ଅନେକ ଦିନ ଲାଗେ । ଅନେକ ନୀଚବ୍ୟକ୍ତି ଆପଣାକୁ ସବୁଠାରୁ ବଡ଼ କରି ଜାଣନ୍ତି । କୌଣସି ଦ୍ରବ୍ୟ ଆଣିବା ନିମନ୍ତେ ଭୃତ୍ୟକୁ ବଜାରକୁ ପଠାଇବା ବେଳେ କହନ୍ତି, ''କହିବୁ ଦୀନବନ୍ଧୁବାବୁ ପଠେଇଛନ୍ତି ଏହିତା କହିଲେ ସେ ବେଶି ଦେବ'' ଦୀନବନ୍ଧୁ ବାବୁ ଜାଣନ୍ତି ଯେ ଅନେକ ବାବୁ ଅଛନ୍ତି, ଅନେକ ବାବୁ ଦୋକାନୀ ଠାରୁ ସଉଦା ନିଅନ୍ତି, ମାତ୍ର ଦୋକାନୀ ଦୀନବନ୍ଧୁ ବାବୁଙ୍କ ଠାରେ ଯେପରି କରିବ ସମସ୍ତଙ୍କଠାରେ କଅଣ ସେପରି କରିବ ? କେବଳ ଦୀନବନ୍ଧୁବାବୁ ଏକା ଏପରି ପାଉଛନ୍ତି ଏମନ୍ତ ନ ମଣ । ପ୍ରତ୍ୟେକ ବାବୁ ମନେ ମନେ ଜାଣନ୍ତି ''ସମସ୍ତଙ୍କଠାରେ ଯେପରି କରିବ ମୋଠାରେ ସେଥିରୁ ବଳି କରିବ'' । ଦୋକାନୀ ଲୋକମାନଙ୍କର ଏହି ଲଘିମା ଭଲରୂପେ ଜାଣେ, ସେ ଜାଣେ ଯେ କ୍ରେତାମାନଙ୍କର ଭ୍ରାନ୍ତ ସୁଭଗମ୍ମନ୍ୟତା ବାକ୍ୟରେ ଚରିତାର୍ଥ କଲେ ତାହାର ଲାଭ ବିନୁ କ୍ଷତି ନାହିଁ । ତେଣୁ ସଉଦା ଦେଲା ବେଳେ କହଏ ''ଏ ଚାଉଳ ଭାଉ ଟଙ୍କାକୁ ପନ୍ଦର ସେର; ମାତ୍ର ଦୀନବନ୍ଧୁବାବୁ ବୋଲି ମୁଁ ଅଠର ସେର ଭାଉରେ ଦେଲି'' । ଦୋକାନୀ କେବଳ

ଦୀନବନ୍ଧୁ ବାବୁଙ୍କ ଭୃତ୍ୟକୁ ଏପରି କହିଏ ଏମନ୍ତ ନୁହେଁ । ସବୁ ବାବୁଙ୍କ ଭୃତ୍ୟକୁ ସେହିପରି କହେ । ନିଷ୍ଠା ଜାଣି ଥିବା ମନୁଷ୍ୟମାନଙ୍କର ଏହି ସୁଭଗମ୍ମନ୍ୟତା ଯେବେ ନ ଥାଆନ୍ତା ଖୁଚୁରା ବିକ୍ରେତାମାନଙ୍କର ଜୀବିକା ଭଲରୂପେ ଚଳିପାରନ୍ତା ନାହିଁ । ଦୀନବନ୍ଧୁ ବାବୁଙ୍କୁ କହ "ଦୋକାନୀ ତୁମ୍ଭଙ୍କୁ ଯେମନ୍ତ ଦେବ ତୁମ୍ଭ ପଡ଼ିଶା ରାମବାବୁଙ୍କୁ ସେହିପରି ଦେବ" । ଦୀନବନ୍ଧୁବାବୁ କୋପରେ ଜଳିଯିବେ । "ସମସ୍ତେ ଯେପରି ମୁଁ କଅଣ ସେହିପରି ? ମୋତେ କଅଣ ଆଉ ଲୋକ କରି ପାଇଛକି ?" । ଦୀନବନ୍ଧୁ ବାବୁଙ୍କୁ ପଚାର କାହିଁକି ସେ ଆଉ ଲୋକ ପରି ନୁହନ୍ତି ସେ ସେଥିର କାରଣ ଲୋଡ଼ିବେ ନାହିଁ । ସେ ଜାଣନ୍ତି ସେ ଆଉ ଲୋକ ପ୍ରାୟେ ନୁହନ୍ତି; ଏଣୁକରି ସେ ଆଉ ଲୋକମାନଙ୍କଠାରୁ ଶ୍ରେଷ୍ଠ ଅଟନ୍ତି । ମନୁଷ୍ୟମାନେ ବାସ୍ତବରେ ଯେଉଁ ଶ୍ରେଣୀର ଅଟନ୍ତି ସେହି ଶ୍ରେଣୀଭୁକ୍ତ ହେବାକୁ ସେମାନଙ୍କର ପ୍ରବୃତ୍ତି ହୁଏ ନାହିଁ । ତାହା ଛାଡ଼ି ଅନେକ ଅନେକ ଲୋକଙ୍କର ଶ୍ରେଣୀଭୁକ୍ତ ହେବାକୁ ସୁଦ୍ଧା ପ୍ରବୃତ୍ତି ହୁଏ ନାହିଁ । ଜଣେ ଅଳ୍ପବୟସ୍କ ଚତୁଷ୍ପାଠୀ ଶିଷ୍ୟ ଏକ ପଣ୍ଡିତଙ୍କ ସଙ୍ଗେ କଥା କହୁଁ କହୁଁ କହିଲା " ମୁଁ ମୁକ୍ତାବଳୀ ସାଙ୍ଗ କରିଛି" । ପଣ୍ଡିତ ବୋଇଲେ "ହଁ ଅନେକ ଛାତ୍ର ଅଳ୍ପବୟସରେ ମୁକ୍ତାବଳୀ ସାଙ୍ଗ କରନ୍ତି" । ଶିଷ୍ୟ ହୃଦୟରେ ଶେଲ ଫୁଟିଲା "କଅଣ ! ଅନେକ ଛାତ୍ର ଏମନ୍ତ ଅଛନ୍ତି ଏହିତା ଶୁଣିବା ପାଇଁ ମୁଁ କଅଣ ଏଡ଼େ ଶ୍ରମ କରିଥିଲି, ଏହିତା ଶୁଣିବା ପାଇଁ ସହାଧ୍ୟାୟୀମାନଙ୍କୁ ବଳି ପଢ଼ିଲି ଏଇଥିପାଇଁ ମୁଁ କଅଣ ଆପଣାକୁ ଅଲୋକସାମାନ୍ୟ ମଣୁଥିଲି" । ଏହି ଦେଖ ପାଠକେ ଶ୍ରେଣୀରେ ଭୁକ୍ତ ହେବାପାଇଁ ଲୋକଙ୍କର କେଡ଼େ ଅରୁଚି । ପ୍ରଥମାଷ୍ଟମୀରେ କେତେଗୁଡ଼ିଏ ପିଲା ଏକମେଳ ହୋଇ ଖେଳୁଥିଲେ । ଗୋଟିଏ ସ୍ତ୍ରୀ ସେମାନଙ୍କୁ ଦେଖି ସହଚାରିଣୀ ଆନ ଗୋଟିଏ ସ୍ତ୍ରୀକୁ କହିଲା "ଏତେ ପିଲା ଖେଳୁଅଛନ୍ତି ମୋ ମଧୁକୁ ଦେଖିଲଣି" । ପ୍ରମାଣ ଅଟେ । ମଧୁ ତାହା ଜନନୀ ନୟନକୁ ଆଉ ସବୁ ପିଲାଠାରୁ ଭଲ ଦିଶୁଥିଲା । ମାତ୍ର ମଧୁ ଜନନୀ ମନେ ମନେ ପାଞ୍ଚୁଲା ଯେ ସବୁ ମନୁଷ୍ୟ ନୟନକୁ ମଧୁ ସେହିପରି ଦିଶୁଥିବ । ଧ୍ରୁବ ଜାଣି ଥିବ, ଆମ୍ଭେମାନେ ଅନ୍ୟ ଲୋକପରି, ଏହି ତତ୍ତ୍ୱ ଶିକ୍ଷା ଅନେକ ଦିନରେ ହୁଏ, କେଉଁ କେଉଁ ଲୋକର ଏ ଜନ୍ମରେ ହୁଏ ନାହିଁ । କୌଣସି ଲୋକ କୌଣସି କାର୍ଯ୍ୟ କରିବାକୁ ମୁଡ଼ି ହେଲେ ଆମ୍ଭେମାନେ କହୁଁ "ଭଲା ମୋ କୁହାରେ କର" । ପାଠକେ ଏପରି କହିକି ନାହିଁ ? ସମସ୍ତେ ଏପରି କହନ୍ତି । "ତୁମ୍ଭ କୁହାରେ କରିବି ଅନ୍ୟ କୁହାରେ କାହିଁକି ନ କରିବି" ନ୍ୟାୟ ସଙ୍ଗତ ହେଲେ ହେଁ ଏ ବଡ଼ କର୍ଣ୍ଣ କଟୁ ଉତ୍ତର ଅଟେ । ଏପରି ଉତ୍ତର କାହିଁକି ଆମ୍ଭମାନଙ୍କୁ ଭଲ ଲାଗେ ନାହିଁ । କଥା ଏତିକି ଆମ୍ଭେମାନେ ଯେପରି ସମସ୍ତେ ସେପରି, ଏହି ତତ୍ତ୍ୱ ଆମ୍ଭମାନଙ୍କର ହୃଦୟଙ୍ଗମ ହୋଇ ନାହିଁ ।

ଅନେକେ ଲୋକ ଭାଳନ୍ତି ଯେ ସମସ୍ତେ ସେହିମାନଙ୍କର କଥା ରାତ୍ରଦିବା ଆନ୍ଦୋଳନ କରୁଅଛନ୍ତି ସମସ୍ତେ ସେହିମାନଙ୍କ କଥା ରାତ୍ରଦିନ ଭାବୁଅଛନ୍ତି । ଏ ବିଷମ ଭ୍ରାନ୍ତି ଅଟେ । ଆପଣା କଥା ଭାବିଲା ଉତ୍ତାରୁ ଯେବେ କାହାରି ଅବସର ଥାଏ, ସେହି ଲୋକ ସିନା ପରକଥା ଚର୍ଚ୍ଚା କରେ । ମାତ୍ର ଏମନ୍ତ ଅବସର ପ୍ରାୟ ମିଳେ ନାହି । ଯେଉଁମାନେ ଅନେକ ଯଶଃ ଲଭିଅଛନ୍ତି ବିଶ୍ୱବିଖ୍ୟାତ ହୋଇ ଅଛନ୍ତି ସେମାନଙ୍କ ନାମ ସମସ୍ତଙ୍କ ତୁଣ୍ଡରେ ଶୁଭୁଅଛି ଏମନ୍ତ ଲୋକମାନଙ୍କ କଥା ସୁଦ୍ଧା ଆମ୍ଭେମାନେ ଅତି ଅଳ୍ପ କାଳ ଭାବିଥାଉଁ । କାଳିଦାସ କେଡ଼େ ଲୋକ ଥିଲେ, କିଏ ଅବା ତାଙ୍କୁ ନ ଜାଣେ । ମାତ୍ର କାଳିଦାସଙ୍କ ନା ସ୍ୱାର୍ଥସଙ୍ଗେ ଓଜନ କରି ଦେଖ ମହଣକୁ ମସାଏ ସୁଦ୍ଧା ହେବ ନାହିଁ । କେତେଗୁଡ଼ିଏ କଥା ଅଛି ଆମ୍ଭେ ସେ ଗୁଡ଼ି କରି ମନେ ମନେ ଭାଳୁଁ "ମୁଁ ଅମୁକେଇ କଥା କଲି, ଲୋକେ କଅଣ କହିବେ" । କେହି କେହି ଗ୍ରନ୍ଥକାର ନିଜ ରଚିତ ପୋଥିରେ ଗୋଟିଏ ଯୋଡ଼ିଏ ଭ୍ରମ ଦେଖି ଭାଳନ୍ତି "ମୋତେ ଲୋକେ କଅଣ କହୁଥିବେ, ମୁଁ କାହିଁକି ସାବଧାନ ହୋଇ ନ ଲେଖିଲି, ଲୋକେ ପଢ଼ିଲାକ୍ଷଣି କେତେ ଗାଳି ଦେଉଥିବେ" । ଜଣେ ଦିନେ ପାଗ ନ ବାନ୍ଧି କଚେରିକି ଯାଇଥିଲେ । କଚେରିରୁ ଆସି ରାତିଯାକ ଭାବିଲେ "ମୁଁ କାହିଁକି ପାଗ ନ ବାନ୍ଧି ଗଲି, ଲୋକେ କଅଣ କହୁଥିବେ" ତୁମ୍ଭ ପାଗବନ୍ଧାଠାରୁ ଲୋକଙ୍କର ଚିନ୍ତିବା ପାଇଁ ବଡ଼ ବଡ଼ କଥା ଅନେକ ଅଛି । କାହିଁକି ସେଥିପାଇଁ ଏଡ଼େ ଆଶଙ୍କା କରୁଅଛ । ଗ୍ରନ୍ଥକାର ! ତୁମ୍ଭ ପୋଥିରେ ଯେଉଁ ଭ୍ରମ ଅଛି ତା' କଥା ତେଣିକି ଥାଉ, ତୁମ୍ଭ ପୋଥି କଥାସୁଦ୍ଧା କେହି ଭାଳୁଅଛନ୍ତି କି ନାହିଁ, ଆଗେ ସେହିତା ଦେଖ ।

ବାଟରେ ଚାଲୁ ଚାଲୁ କେହି କେହି ଭାଳନ୍ତି ଯେ ସମସ୍ତେ ସେମାନଙ୍କୁ ଅନାଇ ରହି ଅଛନ୍ତି । ସେମାନଙ୍କ ଚାଲିରୁ ତୁମ୍ଭେ ଏହି ତର୍କଣା କରିପାରିବ । ଥରେ ଛାତିକୁ ଚାହାନ୍ତି, ଥରେ ବାହୁକୁ ଚାହାନ୍ତି, ବାଳ ଟିକିଏ ବଙ୍କା ହୋଇଥିଲେ ସିଧା କରି ଦିଅନ୍ତି, ବାସ୍ତବରେ ସେମାନଙ୍କ ଚାଲି ଏଡ଼େ ଅପ୍ରାକୃତିକ ଯେ ତୁମ୍ଭେ ଦେଖିଲା କ୍ଷଣି ଜାଣିବ ଯେ ସେ ଲୋକ ଆପଣାକୁ ବଡ଼ କରି ଜାଣେ । ବିଶେଷତଃ ସଭାସ୍ଥାନମାନଙ୍କରେ ଏହି ଲଘିମା ସ୍ଫୁଟ ରୂପରେ ଜଣା ପଡ଼େ । ସୁଭଗମ୍ମନ୍ୟ ଲୋକ କୌଣସି ସଭାକୁ ଆସିଲାକ୍ଷଣି କେତେ ସଙ୍କୁଚିତ ହୁଅନ୍ତି, କପଟନମ୍ରତା ଅବଲମ୍ବନ କରନ୍ତି । ବହିର୍ଦର୍ଶୀମାନେ ସେହି ସଂକୋଚ, ସେହି ନମ୍ରତାକୁ ବଡ଼କରି ମଣନ୍ତି । ମାତ୍ର ସୂକ୍ଷ୍ମଦର୍ଶୀ ମୂଳରୁ ଅଗପର୍ଯ୍ୟନ୍ତେ ଦେଖିନିଏ । ଯେଉଁମାନେ ବାସ୍ତବରେ ନୀଚମନା ସେମାନେ ଯେବେ କୌଣସି ଉଚ୍ଚପଦକୁ ଲଭନ୍ତି ସେମାନଙ୍କର ସୁଭଗମ୍ମନ୍ୟତା ଦେଖିଲାକ୍ଷଣି ଦେହ ଜଳିଯାଏ । ଗର୍ବରେ ସେମାନଙ୍କ ମନ କେଡ଼େ ଫୁଲିଯାଇ ଅଛି, ସେମାନଙ୍କ ଭଙ୍ଗୀରୁ ଉପଲବ୍ଧ ହୁଏ । ମଧ୍ୟ ଭଳି ବିଦ୍ୱାନ୍ ଲୋକଙ୍କ ମଧ୍ୟରେ ଏହି ଲଘିମାର ଉଦାହରଣ ନିକୁସରେ ଶରେ ୬୦ ମିଳିବ ।

ସ୍କୁଲରେ ଯେଉଁ ଛାତ୍ରମାନେ ଉତ୍କର୍ଷ ଲଭିଥିବାର ପ୍ରତିଷ୍ଠା ପାନ୍ତି, ସେମାନଙ୍କ ମଧ୍ୟରୁ ଅନେକ ଗୁଡ଼ି ଶଂସିତ ଲଘିମାର ବଶୀଭୂତ ହୁଅନ୍ତି । ଆମ୍ଭେ ଦିନେ ଗୋଟିଏ ପିଲାକୁ ପାରିତୋଷିକ ନେଇ ଘରକୁ ଆସିଥିବାର ଦେଖିଲୁଁ । ତାହା ଚାଲି, ଭଙ୍ଗୀ, ଚାହାଣିରୁ ଆମ୍ଭର ଧ୍ରୁବ ଉପଲବ୍ଧ ହେଲା ଯେ ସେ ଆପଣାକୁ ଗୋଟିଏ ନିଧି କରି ଜାଣେ, ଆପଣାକୁ ସମସ୍ତ ନୟନର ବିଷୟୀଭୂତ ମଣେ । ବାସ୍ତବରେ କେହି ତାକୁ ଅନାଉ ନ ଥିଲେ । କେହି କେହି ଆପଣା ମନସ୍ୱିତା ପରିଚୟ ଦେବା ପାଇଁ ଆଖି ଡୋଳାକୁ ଥରକୁ ଥର ଉଲଟାନ୍ତି, କଟମଟ କରି ଚାହାନ୍ତି, ‘‘ମତେ କଅଣ ଜାଣ କି ? ମୁଁ ଅନ୍ତର ଯାଏ ଦେଖୁଚି’’ ମନେ ମନେ ସେମାନେ ଏହିତା ଭାବୁ ଅଛନ୍ତି ଏହା ସେମାନଙ୍କର ନେତ୍ର ଭଙ୍ଗୀ କହି ଦିଏ । ଦିନେ ଗୋଟିଏ ବଡ଼ ସଭା ହୋଇଥିଲା । ଅନେକ ଲୋକ ଆସିଥିଲେ ଯେଉଁମାନେ ପ୍ରକୃତରେ ମହତ ଏବଂ ବିଖ୍ୟାତନାମା ଥିଲେ ସେମାନେ ଆସିଲେ, ସରଳ ଅବ୍ୟାଜ ଭାବରେ ଆସନ ଗ୍ରହଣ କଲେ, ଅନେକ ଲୋକ ଯେ ସେମାନଙ୍କ ଉପରେ ସକୌତୂହଳ ଦୃଷ୍ଟିପାତ କରୁଥିଲେ ତାହା ସେମାନେ ଜାଣିଥିବାର ବୋଧ ହେଲା ନାହିଁ । କେତେଗୁଡ଼ିଏ ବିଜ୍ଞ ମଧ୍ୟ ଭଳି ଲୋକେ ଆସିଲେ ସେମାନଙ୍କ ଆକୃତିରୁ ଜଣାଗଲା ଯେ ସେମାନେ ଆପଣାକୁ ବଡ଼ କରି ଜାଣନ୍ତି ନାହିଁ । ସ୍ୱଭାବରେ ଲୋକେ ଯେପରି ବସନ୍ତି ସେମାନେ ସେହିପରି ବସିଲେ । ମାତ୍ର ଗୋଟିଏ ନୀଚମନା ଖ୍ୟାତିଲିପ୍ସୁ ଲୋକ ଆସିଲେ ତାଙ୍କୁ ଦେଖିଲା କ୍ଷଣି ହସ ମାଣ୍ଡିଲା । ତାଙ୍କ ଆକୃତିରୁ ଜଣାଗଲା ଯେ ସମସ୍ତେ ତାଙ୍କୁ ଅନାଇ ରହି ଅଛନ୍ତି ‘‘ଦେଖ ଏହି ରଘୁବାବୁ ଆସିଲେ’’ ସଭାସ୍ଥ ଲୋକେ ଚକିତ ହୋଇ ପରସ୍ପର ଏହା କହୁଅଛନ୍ତି ଏହିତା ସେ ମନେ ମନେ ଜାଣନ୍ତି ।

ଏହା ମଧ୍ୟ ଜାଣିବାର ବିହିତ କି ଯେ ଅନେକ ଲୋକେ ତୁମ୍ଭ ଆଗରେ ବସିଅଛନ୍ତି ମାତ୍ର ତୁମ୍ଭେ ଯେମନ୍ତ ତାହା ଜାଣ ନାହିଁ ଏପରି ବ୍ୟାଜ କରିବାର ଅତ୍ୟନ୍ତ ଗର୍ହଣୀୟ ଅଟେ, ଏପରି ବ୍ୟାଜକୁ ଅସଙ୍ଗତ ସୁଭଗମ୍ମନ୍ୟତାର ପ୍ରମାପକ ଜାଣିଥିବ । ଆପଣାକୁ ଯେଡ଼େ କ୍ଷୁଦ୍ର ଜାଣିବାର ବିହିତ ସେହିପରି ମଣିଲେ ଏବଂ ପ୍ରାକୃତିକ ରୀତି ଅନୁସରି ଚଳିଲେ କେହି ତୁମ୍ଭକୁ ପଦେ କହିବେ ନାହିଁ । ବାସ୍ତବରେ ଏହିପରି ବ୍ୟବହାର ନ୍ୟାୟାନୁମୋଦିତ ଅଟେ ।

ସୁଭଗମ୍ମନ୍ୟତା ଅନେକ କଥାରୁ ଚିହ୍ନା ପଡ଼େ । ଅହଂକାରର କୃତ୍ରିମ ପରିହାର ସେଥିର ଗୋଟିଏ ଅଭ୍ରାନ୍ତ ପରିଚାୟକ ଅଟେ । ‘‘ଆପଣମାନଙ୍କର ପାକଲ୍ୟାଣରୁ ଏସବୁ, ମୁଁ କଅଣ ଗୋଟାଏ ଲୋକ’’ କେହି କେହି କପାଳିୟା ଲୋକେ ଆପଣା ବିଭବ ଦେଖାଉଁ ଦେଖାଉଁ ଏହିପରି କହନ୍ତି । ମାତ୍ର ସେମାନଙ୍କ ନାଭିରୁ କଣ୍ଠା ପର୍ଯ୍ୟନ୍ତେ ଅହଂକାର ଭର୍ତ୍ତି ହୋଇ ଥାଏ । ବାହାରେ କୃତ୍ରିମ ବିନୟ କରନ୍ତି । ‘‘ମୋ ଜାଣିବାରେ ଅମୁକେଇ କଥା ନାକରା’’ ଏହା ନ କହି କେହି କେହି କହନ୍ତି ‘‘ଅମୁକେଇ କଥା

ନାକରା'' ଏହା ସମସ୍ତେ ସ୍ୱୀକାର କରିବେ'' । ପାଠକେ ନିଷ୍ଠା ଜାଣି ଥିବ ଶେଷ ଉକ୍ତିଟା ବାହାରେ ବିନୟସୂଚକ, ମାତ୍ର ପ୍ରକୃତରେ ନୁହେଁ । ''ମୋ ଜାଣିବାରେ ଅମୁକେଇ କଥା ନାକରୀ'' ଯେ ବ୍ୟକ୍ତି ଏହା କହେ ସେ ସରଳ ମନରେ କହେ, ତାହାର ଆତ୍ମପର ଜ୍ଞାନ ନ ଥାଏ, ବିଷୟ ପ୍ରତି ତାହାର ଯେଡ଼େ ଦୃଷ୍ଟି ଆପଣା ପ୍ରତି ତେଡ଼େ ଦୃଷ୍ଟି ନାହିଁ । ମାତ୍ର ଯେ ବ୍ୟକ୍ତି କହେ ''ଏହା ସମସ୍ତେ ସ୍ୱୀକାର କରିବେ ଯେ ଅମୁକେଇ କଥା ନାକରା'' ସେ ଅହଙ୍କାର ପରିହାର କଲେ ହେଁ ବାସ୍ତବରେ ଅହଂକାରୀ ଅଟେ । ''ମୁଁ'' ଏହି ଶବ୍ଦ ପରିହାର କରିବାର ପ୍ରତିଜ୍ଞା କରି ଗୋଟିଏ ପ୍ରବନ୍ଧ ଲେଖ, ଦେଖିବ ସେହି ଶବ୍ଦଟା ଶଏଥର ତୁମ୍ଭ ମନରେ ପଡ଼ିବ, ତୁମ୍ଭ ଲେଖନରୁ ବାହାରିବ, ତୁମ୍ଭ ବିଷୟ ପ୍ରତି ମନୋନିବେଶ ଶଏଥର ବିଚଳିତ କରୁଥିବ । ଏପରି ଅପ୍ରାକୃତିକ ପ୍ରତିଜ୍ଞା ନ କରି କୌଣସି ବିଷୟ ଲେଖ, ଦେଖିବ ଆପଣା କଥା ମନର ଏକାବେଳକେ ତିରୋହିତ ହେବ, ତୁମ୍ଭର ଅବିଭକ୍ତ ମନୋଯୋଗ କେବଳ ବିଷୟ ଉପରେ ନ୍ୟସ୍ତ ହେବ । ସେହି ପ୍ରବନ୍ଧ ଭିତରେ ତୁମ୍ଭେ ୨୫ ଥର ମୁଁ ଶବ୍ଦ ବ୍ୟବହାର କରିଥିବ ମାତ୍ର, ଅହଂ ପଦ ଥରକ ନିମନ୍ତେ ସୁଦ୍ଧା ତୁମ୍ଭ ମନରେ ଉଦିତ ହୋଇ ନ ଥିବ । ପ୍ରକୃତିର ଅପ୍ରତିହତ ପ୍ରଭାବ ।

କୌଣସି ପରମାର୍ଥୀ ଯେବେ ତଦ୍ଗତ ମନରେ ଭାଗବତର ବ୍ୟାଖ୍ୟା କରୁଥାଏ, ବ୍ୟାଖ୍ୟା କରୁ କରୁ ଅଶୁଦ୍ଧ ପଦ ଉଚ୍ଚାରଣ କରେ, ସେହି ଅଶୁଦ୍ଧ ପଦପ୍ରତି ଆମ୍ଭମାନଙ୍କର ଦୃଷ୍ଟି ନ ଥାଏ । ଆମ୍ଭେ ଜାଣୁ ଯେ ସେ ଆପଣା ବିଦ୍ୟା ଦେଖାଉ ନାହାନ୍ତି, ଆମ୍ଭେ ଜାଣୁ ଯେ ଏକାଗ୍ର ଭକ୍ତି ବିନୁ ତାହାଙ୍କ ମନରେ ଆନଭାବର ସଞ୍ଚାର ହେଉ ନାହିଁ, ଏଥିପାଇଁ ସେ ଯାହା କହନ୍ତୁ ସେଥିର ବ୍ୟାକରଣ ଦୋଷ, ଅଳଙ୍କାର ଦୋଷପ୍ରତି ଦୃଷ୍ଟି ନ ରଖି କେବଳ କଥ୍ୟମାନ ତତ୍ତ୍ୱରେ ମନୋନିବେଶ କରୁଁ । ମାତ୍ର ବିଦ୍ୟାଭିମାନୀ ତରୁଣ ପୁରୁଷ ସଭାରେ ହାତ, ଗୋଡ଼ କଚାଡ଼ି ଯେତେବେଳେ ବକ୍ତୃତା କରନ୍ତି, ବକ୍ତୃତା କରୁଁ କରୁଁ ଯେବେ ଗୋଟିଏ ଅଶୁଦ୍ଧ ପଦ ବୋଲନ୍ତି ଆମ୍ଭେମାନେ ହସ ସମ୍ଭାଳିପାରୁ ନାହିଁ । ହେତୁକି ଆମ୍ଭେମାନେ ଜାଣି ଥାଉଁ ଯେ ଆପଣା ବିଦ୍ୟାର ଆଡ଼ମ୍ବର କରିବାର ବକ୍ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ଅଟେ । ଆମ୍ଭେ ଜାଣି ଥାଉଁ ଯେ ବକ୍ତା ବଡ଼ ସୁଭଗମ୍ମନ ଅଟନ୍ତି । ବାଲ୍ମୀକି ଆପଣାକୁ ''ମୁନିସତ୍ତମ'' ବୋଇଲେ ଆମ୍ଭେମାନେ ବିରକ୍ତ ହେବୁ ନାହିଁ । ମାତ୍ର ମାଘ ଆପଣାକୁ ''କବିକୀର୍ତ୍ତି ଦୁରାଶା'' ଗ୍ରସ୍ତ ବୋଇଲେ ଆମ୍ଭେମାନେ ସେହି ବିନୟକୁ ନିର୍ମଳ ବିନୟ ମଣିବୁଁ ନାହିଁ ।

କେହି କେହି ଲୋକର ସୁଭଗମ୍ମନ୍ୟତା ହସ୍ତାକ୍ଷରରୁ ସ୍ଫୁଟରୂପେ ଜଣା ପଡ଼େ । ଅନେକ ଲୋକର ହସ୍ତାକ୍ଷର, ବିଶେଷତଃ ସ୍ୱାକ୍ଷର ଏପରି ବ୍ୟାଜରେ ଲେଖା ହୋଇ ଥାଏ ଯେ ତୁମ୍ଭେ ଲେଖା ଦେଖିଲା କ୍ଷଣି ଜାଣିବ ଯେ ଲେଖକ ଲେଖିଲାବେଳେ ଭାଳିଥିଲେ ''ସମସ୍ତେ ମୋ ଦସ୍ତଖତ ଦେଖି ଚମକି ଯିବେ'' । କେହି କେହି ଲୋକ

ନିତାନ୍ତ କାର୍ଯ୍ୟରେ ବ୍ୟସ୍ତଥାନ୍ତି, ସେମାନଙ୍କୁ ଅନେକ ସ୍ୱାକ୍ଷର କରିବାକୁ ହୁଏ, ତେଣୁ ସଂକ୍ଷିପ୍ତ ରୂପରେ ଚଞ୍ଚଳ ସାକ୍ଷର କରନ୍ତି, ଆମ୍ଭେମାନେ ସେମାନଙ୍କୁ କହୁ ନାହୁଁ । ସେମାନେ ନିର୍ଦ୍ଦୋଷୀ । ଯେଉଁମାନେ ପ୍ରୟୋଜନ ବିରହରେ ଜାଣିଶୁଣି ଏପରି ସ୍ୱାକ୍ଷର କରନ୍ତି ଯେ ତୁମ୍ଭେ ଲେଖକକୁ ଯେବେ ଜାଣି ନ ଥାନ୍ତ ତେବେ ସେହି ସ୍ୱାକ୍ଷର ପଢ଼ି ପାରନ୍ତି ନାହିଁ, ଯେଉଁମାନେ ସ୍ୱାକ୍ଷରକୁ ପ୍ରାଧାନ୍ୟର ପରିଚାୟକ ଜାଣି ପ୍ରକୃତମାର୍ଗ ଛାଡ଼ି ଅପ୍ରାକୃତିକ ରୂପରେ ଲେଖନ୍ତି, ଆମ୍ଭେ ସେହି ସୁଭଗମ୍ମନ୍ୟ ମହାତ୍ମାମାନଙ୍କୁ ଲକ୍ଷ୍ୟ କରୁ ଅଛୁଁ । ଦୁଃଖର କଥା ଏହିକି ଅନେକ ବଡ଼ ଲୋକେ ଏହି ଲଘିମାର ଦାସ ଅଟନ୍ତି । କେହି କେହି ଜାଣିଶୁଣି ଅକ୍ଷର ମନ୍ଦ ଲେଖନ୍ତି, କେହି କେହି ଅକ୍ଷରଗୁଡ଼ିକୁ ଫଳ ଫୁଲରେ ଶୋଭିତ କରନ୍ତି । ଲେଖିଲାବେଳେ ଧାଡ଼ିକୁ ତେର୍ଚ୍ଛାରୂପରେ ଦଶଥର ଅନାନ୍ତି । ଖଣ୍ଡିଏ ତମସୁକ ଲେଖା ହେଲା ଉତ୍ତାରେ ସେଥିରେ ସାକ୍ଷୀମାନଙ୍କ ନାଁ ଯେତେବେଳେ ପଢ଼େ, ପାଠକେ ! ମନୋଯୋଗ କରି ଦେଖିଛିଟିକି ? ଯେ ବିଚାରା ଭଲ ଲେଖି ନ ଜାଣେ, ତା ହାତ କମ୍ପୁଥାଏ, କେତେ ଡରି ଥରି ଲେଖେ, ଏଥିରେ ଅପ୍ରାକୃତିକ ଅଥବା ଗର୍ହଣୀୟ କିଛି ନାହିଁ । ଏମନ୍ତ ଲୋକକୁ ଉତ୍ସାହ ଦେବାପାଇଁ ପ୍ରବୃତି ହୁଏ । ମାତ୍ର ଦୁଇ ଚାରିଜଣ ଅପଟୁ ଲୋକେ ଲେଖିଲା ଉତ୍ତାରୁ ଜଣେ ପଣ୍ଡିତମ୍ମନ୍ୟ ମହାତ୍ମା କାଗଜ ହାତକୁ ନେଇ ସବ୍ୟାଜ ଅବହେଳାରେ ଚରଚର କରି ଦସ୍ତଖତ କରନ୍ତି, ଆଖି କେତେ ଭଙ୍ଗୀ କରୁ ଥାଏ । ତୁମ୍ଭେ ଦେଖିଲା କ୍ଷଣି ଜାଣିବ ଯେ ସେ ଆପଣାକୁ ଅସାଧସାଧକ ମଣୁ ଅଛନ୍ତି । ଅପଟୁ ସଙ୍ଗୀମାନଙ୍କ ଠାରୁ ଶ୍ଳାଘା ପ୍ରତ୍ୟାଶା କରୁଅଛନ୍ତି ଏବଂ "ଆମ୍ଭକୁ ଏ କଅଣ ଦେଖାଇବେ ? ଆମ୍ଭେ କଅଣ ଲେଖି ଜାଣୁନାହିଁ, ଗାଁକୁ ଯାଉଁ ଯାଉଁ ବାଟରେ ସଙ୍ଗୀମାନଙ୍କୁ ଏହିକଥା କହିବେ । ଥରେ ଜଣେ ଏହି ପରିବ୍ୟାଜରେ ଚରଚର କରି ଲେଖୁଁ ଲେଖୁଁ କଲମ ଫୁଟି କାଗଜ ଅନେକ ଗୋଡ଼ାଏ ଚିରିଗଲା । ଆମ୍ଭକୁ ହସ ମାଣ୍ଡିଲା । ଗର୍ବ ଖର୍ବ ଦେଖିଲେ ସମସ୍ତେ ଆହ୍ଲାଦିତ ହୁଅନ୍ତି ।

(କ୍ରମଶଃ)

# ନିଶୀଥ ଚିନ୍ତା

କାହିଁ ଏବେ ସେ ଚହଳ ଯାର ଘୋର ରୋଳ
କରିଥିଲା ଏତେକାଳ ଶ୍ରବଣ ବଧୀର
କାହିଁ ସେହି ଚଞ୍ଚଳତା ଲହରୀ-ହିଲ୍ଲୋଳ
ଯାହା ଘେନି ଜୀବକୁଳ ସତତ ଅଧୀର ।

ନାହିଁ ସେହି ଚଞ୍ଚଳତା ନାହିଁ ସେ ଚହଳ ।
କଣ୍ଠେ ତାରମୟ ହାର ରଜନୀ ସୁନ୍ଦରୀ
(ଅଟେ ଯହିଁ ମଧ୍ୟମଣି ଇନ୍ଦୁ ସୁନିର୍ମଳ)
କୌମୁଦୀବସନେ ସ୍ୱର୍ଗ ଧାମୁ ଅବତରି
ବରଷନ୍ତି ଶିଶିରାଶ୍ରୁ ପ୍ରେମେ ବିଭୁ ମହିମା ସୁମରି ।୧।
ସୁନୀଚ କୁଟୀର କିମ୍ବା ତୁଙ୍ଗ ରାଜାଳୟ
ସାଗରର ବକ୍ଷ ଅବା ପର୍ବତ ଶିଖର
ବିଳାସ ଭବନ, କାରାଗାର ତମୋମୟ
ବିଜନ କାନନ କିମ୍ବା ସଜ୍ଜନ ନଗର
ନୀରବ ଭାବରେ ସବୁ ଏକାଳରେ ସ୍ଥିତ ।
ବିଭୁଙ୍କ ଗମ୍ଭୀରାଦେଶ ଶ୍ରବଣ କାରଣ
ପ୍ରେମାବେଶେ ଆହା ଯେହ୍ନେ ସର୍ବେ ଅବହିତ
ସହସା ହେଲା କି ସ୍ୱର୍ଗ ଏଭବ ଭବନ
ଭାବୁକ କଳ୍ପନା ଏବେ ମୁଗ୍ଧ ହୋଇ ପାଞ୍ଚଇ ଏସନ ।୨।
ହିତକାରୀ ନିଦ୍ରାଦେବୀ ବିରାମ ଦାୟିନୀ
ବାହ୍ୟଜ୍ଞାନ ମନୁଷ୍ୟର ହରି ମୃଦୁବଳେ
ସଙ୍ଗେ ଘେନି ସ୍ୱପ୍ନଦେବୀ ଭ୍ରାନ୍ତି ବିଳାସିନୀ
ଜଗତରେ ଆଧିପତ୍ୟ କରନ୍ତି ବିରଳେ ।
ସ୍ୱପ୍ନମାୟା ବଳେ ଦୁଃଖୀ ଅନାଥ ନିର୍ଧନ
ଚିନ୍ତାଶୁନ୍ଯ ପାସୋରି ଭୋଳେ ଭୁଞ୍ଜେ ରାଜ ସୁଖ
ସନ୍ତାନ ବିହୀନା ନାରୀ ଚୁମ୍ବେ ପୁତ୍ର ମୁଖ
ବୈଧବ୍ୟ ବିଧୁରା ବାଳା ଲଭି ଆଲିଙ୍ଗନ
ପ୍ରାଣପତି ଉତ୍ସଙ୍ଗରେ କୁତୂହଳେ କରଇ ଶୟନ ।୩। (କ୍ରମଶଃ)

# ପୁସ୍ତକ ସମାଲୋଚନା

କୁମାରସମ୍ଭବ କବିବର କାଳିଦାସ ବିରଚିତ ସଂସ୍କୃତ ପୁସ୍ତକରୁ ଶ୍ରୀ ବଳରାମଦାସଙ୍କ ଦ୍ୱାରା ଅନୁବାଦିତ ।

ଏହି ଗ୍ରନ୍ଥଖଣ୍ଡିକ ଆମ୍ଭମାନଙ୍କର ବିଶେଷ ଆଦରଣୀୟ ହୋଇଅଛି । ଯେଉଁମାନେ ଶବ୍ଦାଡ଼ମ୍ବରକୁ କବିତାର ସାର ମଣନ୍ତି, ଦୁର୍ବୋଧ୍ୟତାକୁ ଗୁଣ ମଣନ୍ତି, ଏ ଗ୍ରନ୍ଥରେ

ସେମାନଙ୍କର ଆସ୍ଥା ହେବାର ଦିଶୁ ନାହିଁ । ବାସ୍ତବରେ ଉତ୍କଳୀୟ କବିତାର ଏପରି ଶୋଚନୀୟ ଦଶା ସେହିମାନଙ୍କର ଉପଦ୍ରବରୁ ଜାତ ହୋଇଅଛି ବୋଇଲେ ଅତ୍ୟୁକ୍ତି ହେବ ନାହିଁ । ସେମାନେ ଯେବେ ଭଞ୍ଜବୀରବରଙ୍କୁ କବିଶ୍ରେଷ୍ଠ ବୋଲି ତୁନି ହୋଇ ରହନ୍ତେ ସେଥିରୁ ବଡ଼ ଅନିଷ୍ଟର ସମ୍ଭାବନା ନ ଥିଲା । ମାତ୍ର ସେମାନେ ସେଥିରୁ ଅନେକ ଦୂର ବଳି ଯାଆନ୍ତି, ଭଞ୍ଜୀୟ ରୀତି ଏଡ଼ି ଅନ୍ୟ ମାର୍ଗ ଆଶ୍ରୟ କରି କେହି ଭଲ କବିତା ରଚିପାରିବେ ଏହା ସେମାନଙ୍କର ବୁଦ୍ଧିକୁ ଆସଇ ନାହିଁ । ବଳରାମବାବୁଙ୍କ ଗ୍ରନ୍ଥ, ଅନେକ ଲୋକେ ବୁଝିପାରିବେ ଏହି ଗ୍ରନ୍ଥ ବୁଝିବା ନିମନ୍ତେ ଚଳତା ରାକ୍ଷ, ହସ୍ତାଭିନୟ-କୁଶଳ, ରସିକମ୍ମନ୍ୟ, ଗୀତାର୍ଥୀର ପ୍ରୟୋଜନ ହେବ ନାହିଁ, ବଳରାମ ବାବୁଙ୍କ ରଚନାର ୩।୪ ପ୍ରକାର ଅର୍ଥ ହେବ ନାହିଁ, ପଢ଼ିଲା କ୍ଷଣି ଅନ୍ୱୟ ଜଣା ପଡ଼ିବ । ଆମ୍ଭମାନଙ୍କର କ୍ଷୁଦ୍ର ବୁଦ୍ଧିରେ ଏ ଗୋଡ଼ି ଗୁଣରୂପେ ପ୍ରତିଭାତ ହେଉଅଛି । ମାତ୍ର ଉକ୍ତ ମହାତ୍ମାମାନଙ୍କ ଠାରେ ଏଗୋଡ଼ି ଦୋଷରୂପେ ପରିଣତ ହେବ । ସେ ଯାହାହେଉ ଅନ୍ୟର ରୁଚି ଘେନି ବିତଣ୍ଡା କରିବାର ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହଇ ପୁରୋବର୍ତ୍ତୀ ଗ୍ରନ୍ଥର ଦୋଷ ଗୁଣ ବାଛିବାର ଆମ୍ଭମାନଙ୍କର କାର୍ଯ୍ୟ ଅଟେ ।

ବଳରାମବାବୁ ଭଞ୍ଜୀୟ ମଣ୍ଡାମାର୍ଗ ଛାଡ଼ି ଅମଣ୍ଡାରେ ଚାଲି ଅଛନ୍ତି । ଭଞ୍ଜୀୟ ମଣ୍ଡାମାର୍ଗ ଅତି ସଙ୍କୀର୍ଣ୍ଣ ଓ ବନ୍ଧୁର । ଗ୍ରନ୍ଥକାର ସାହସ ବାନ୍ଧି ପ୍ରଶସ୍ତରେ ମାର୍ଗଧରି ଅଛନ୍ତି । ଏଥି ଯୋଗୁଁ ସେ ଆମ୍ଭମାନଙ୍କର ହୃଦ୍ୟ ସାଧୁବାଦର ଯୋଗ୍ୟ ଅଟନ୍ତି । ଫଳେ ସେ ପ୍ରାକୃତିକ ମାର୍ଗ ଆଶ୍ରୟ କରିଅଛନ୍ତି । ତାହାଙ୍କ ଭାଷା ପ୍ରାଞ୍ଜଳ ମଧୁର, ପ୍ରୟାସବିହୀନ, ଅପ୍ରତିହତ ଗଙ୍ଗାଜଳ ପରି । ଅନୁପ୍ରାସ ଲୋଡ଼ିବାର ଲବମାତ୍ର ଆୟାସ କରି ନାହାନ୍ତି । ଯାହା ଲେଖିଅଛନ୍ତି ଅନର୍ଗଳ ଲେଖନରୁ ବାହାରିଥିବାର ବୋଧ ହେଉ ଅଛି ଆମ୍ଭର ମତ ସମର୍ଥନା ନିମନ୍ତେ ନିମ୍ନରେ କେତେ ଗୋଡ଼ି ପଂକ୍ତି ଉଦ୍ଧୃତ କଲୁଁ, ମାତ୍ର ଏପରି ଉଦାହରଣ ଗ୍ରନ୍ଥର ପ୍ରତ୍ୟେକ ପତ୍ରରୁ ଥୋକାଏ ଥୋକାଏ ବାହାରିବ ।

୨୯ ପୃଷ୍ଠା

''ତରୁଣ ଅରୁଣ ବର୍ଣ୍ଣ ବାସୁ ପରିଧାନ,
ପୟୋଧର ଭରେ ନତ କୃଷ୍ଟ ତନୁ ଜାଣ ।
ପୁଷ୍ପ-ସ୍ତବକରେ ନମ୍ର ହୋଇ କି ବଲ୍ଲରୀ,
ସଞ୍ଚରଇ ଧରାତଳେ, ତେସନ ସୁନ୍ଦରୀ ।।୫୪।।
ନିତମ୍ବୁ ବକୁଳ ଦାମ ପଡ଼ୁ ଅଛି ଖସି,
କରେ ଧରି ଉପରକୁ ଦିଅନ୍ତି ରୂପସୀ ।
ଦେଖି ଭାବୁକ ମନକୁ ଏମନ୍ତ ଆସୁଚି,
ସ୍ଥାନ ଜାଣି ସ୍ମର ଚାପେ ଗୁଣ ଚଢ଼ାଉଚି ।।୫୫।।

ସୁଗନ୍ଧ ନିଶ୍ୱାସଗନ୍ଧେ ଲୁବ୍ଧ ମଧୁକରେ,
ଗୁଣୁ ଗୁଣୁ ଶବ୍ଦେ ଆସି ବସନ୍ତେ ଅଧରେ ।
ଦରେ ସୁଲୋଚନା ମୁହୁ ଲୋଚନ ବୁଜଇ,
ଲୀଳା ଅରବିନ୍ଦ ଧରି ଭ୍ରମର ଉଡ଼ଇ ।।୫୬।।

୨୪ ପୃଷ୍ଠାରେ ବସନ୍ତ ବର୍ଣ୍ଣନାରେ ବଳରାମବାବୁ ଯେ ଲଘୁଛନ୍ଦ ଆଶ୍ରୟ କରିଅଛ, ତାହା ତାହାଙ୍କର ଉଦାର ରୁଚିର ପରିଚାୟକ ଅଟେ । ହଠାତ୍ ବସନ୍ତ ପ୍ରଭୃତି ସ୍ଫୁଟରୂପେ ଦର୍ଶାଇବା ପାଇଁ ଗ୍ରନ୍ଥକାର ହଠାତ୍ ଛନ୍ଦାନ୍ତର ଅବଲମ୍ବନ କରି ଅଛନ୍ତି । ମାତ୍ର କେବଳ ଛନ୍ଦାନ୍ତର ଆଶ୍ରୟ କରିଥିଲେ ଆମ୍ଭେମାନେ ଏପରି ପ୍ରଶଂସା କରନ୍ତୁ ନାହିଁ । ଛନ୍ଦ ବିଷୟର ମଧ୍ୟ ସମ୍ପୂର୍ଣ୍ଣ ଉପଯୋଗୀ ହୋଇଅଛି ।

କାଳିଦାସଙ୍କ କବିତାର ଆସ୍ୱାଦ ଯେମାନେ ଥରେ ପାଇଅଛନ୍ତି ସେହି କବିତାମାନଙ୍କୁ ଭାଷାନ୍ତର କରି ଭାବ ଅବିକଳ ରଖିବାର କେଡ଼େ ଦୁଷ୍କର ଅଟେ ତାହା ସେହିମାନେ ଜାଣନ୍ତି । ବାସ୍ତବରେ କାଳିଦାସ ଯାହା ବୋଲନ୍ତି ଏପରି ଅନିର୍ବଚନୀୟ ଭଙ୍ଗୀରେ ବୋଲନ୍ତି ଯେ ସେହି ମାଧୁରୀ ହୃଦୟ ଅନୁଭବ କରେ; ମାତ୍ର ମସ୍ତିଷ୍କ ସେଥିର ହେତୁ ଲୋଡ଼ିପାରେ ନାହିଁ । ବଳରାମବାବୁ ସାଧନା ପକ୍ଷରେ ସେହି ଭଙ୍ଗୀ ଆଣିବାକୁ ତ୍ରୁଟି କରି ନାହାନ୍ତି ।

ଗ୍ରନ୍ଥର କୌଣସି କୌଣସି ସ୍ଥଳରେ ଦୋଷ ଅଛି ମାତ୍ର ସେହି ଦୋଷମାନ ଚଞ୍ଚଳତା ଜନିତ । ଗ୍ରନ୍ଥକାର ଯେବେ ପୁସ୍ତକକୁ ମୁଦ୍ରାଳୟ ପ୍ରେରିତ ଆଗେ ଭଲରୂପେ ଦୁଇ ତିନି ଥର ପଢ଼ି ଥାଆନ୍ତେ ତେବେ ତାହାଙ୍କ ପୁସ୍ତକ ଅପେକ୍ଷାକୃତ ନିର୍ଦ୍ଦୋଷ ହୋଇଥାଆନ୍ତା । ଦୋଷଗୋଡ଼ିକ ନିମ୍ନରେ ପ୍ରକଟିତ କରୁଅଛୁଁ ।

୧ ପୃଷ୍ଠା

ଦେବତାଙ୍କ ଧାମ ବୋଇଲେ ''ଦେବତାତ୍ମା'' ପଦର ପ୍ରକୃତ ଅନୁବାଦିତ ହେଲାନାହିଁ ।

୭ ପୃଷ୍ଠା

''ଶୀତଳତା ତରୁବର କଦଳୀ ବୃକ୍ଷରେ'' କଦଳୀକି ତରୁବର ବୋଲିବାର ଅନୁଚିତ ।

୧୨ ପୃଷ୍ଠା

''ପରିମ୍ଳାନ ମୁଖେ ଯାଇ ବ୍ରହ୍ମାଙ୍କୁ ଭେଟିଲେ
ସୁପ୍ତ ପଦ୍ମ ସରେ ପ୍ରାତେ ସୂର୍ଯ୍ୟ କି ଉଇଁଲେ ।''

ଏଠାରେ କିଏ ଉପମାନ କିଏ ଉପମେୟ ଏହା ଭଲରୂପେ ଚିହ୍ନା ପଡୁ ନାହିଁ । ଦେବତାଙ୍କର ମ୍ଳାନ ମୁଖ ସୁପ୍ତ ପଦ୍ମପ୍ରାୟ, ବ୍ରହ୍ମା ସୂର୍ଯ୍ୟ ପ୍ରାୟ ଏ ପଂକ୍ତିଦ୍ୱୟରୁ ଏହା

ଉପଲବ୍ଧ ହେଉ ନାହିଁ । କେବଳ ହଠ ରୀତିରେ ବିଚାରିଲେ ଏହି ପଂକ୍ତିର ଭାବ ପୂର୍ବପଂକ୍ତିର ସଙ୍ଗତ ହୋଇପାରେ ।

୨୭ ପୃଷ୍ଠା

''ମୂକ ବିହଙ୍ଗମେ, ଗତିଶୂନ୍ୟ ମୃଗବର ।''

ଏଠାରେ ''ବର'' ଏହି ଶବ୍ଦଟି କେବଳ ଅନୁପ୍ରାସ ଅନୁରୋଧରେ ଦିଆ ଯାଇଥିବାର ଦିଶୁଅଛି ।

୩୩ ପୃଷ୍ଠା

''ସରମେ ନ ଚାହିଁ ଆଳୀଙ୍କ ମୁଖେ''

ଏଠାରେ ମୂଳଗ୍ରନ୍ଥର ଭାବ ଭଲରୂପରେ ରକ୍ଷା ପାଇ ନାହିଁ । କୌଣସି କୌଣସି ସ୍ଥଳରେ ଯତି ଭଙ୍ଗ ହୋଇଅଛି । ଯଥା

୩୪ ପୃଷ୍ଠା

''ସବୁ ସୁଖରୁ ଏକା ତୁମ୍ଭ ବିନା ।''

ଲୋକେ ଯେଉଁ ରାଗରେ ଏହି ଛନ୍ଦ ବୋଲନ୍ତି, ସେହି ରାଗ ଅନୁସରି ଚଳିଲେ ଉଲ୍ଲିଖିତ ପଂକ୍ତି ନିର୍ଦ୍ଦୋଷ ଅଟେ; ମାତ୍ର ସାମାନ୍ୟ ରୀତିରେ ପଢ଼ିଲେ ଏ, ପରେ ବିରାମ ପଡ଼ିବ । ଆମ୍ଭମାନଙ୍କ ମତରେ ଏ, ପରେ ଯତି ଥିବାର ବିହିତ ।

ଗ୍ରନ୍ଥକାର ଜଣେ ଉତ୍କୃଷ୍ଟ ମଣୀଷା, ଉତ୍କୃଷ୍ଟ ରୁଚିସମ୍ପନ୍ନ ବ୍ୟକ୍ତି । ତେଣୁ ସେ ମାତୃଭୂମିଙ୍କଠାରେ ବିଶେଷରୂପେ ଋଣୀ ଅଟନ୍ତି । ଆମ୍ଭେମାନେ ତାହାଙ୍କୁ ବିଦ୍ୟାଳୟ ପାଠ୍ୟପୁସ୍ତକ ରଚିବା ପାଇଁ ଅନୁରୋଧ କରୁ ନାହୁଁ । ଆମ୍ଭେମାନେ ତାହାଙ୍କଠାରୁ ଅନୁବାଦରୁ ବଳି ପ୍ରତ୍ୟାଶା କରୁଁ ଏବଂ ପୁରୋବର୍ତ୍ତୀ ଗ୍ରନ୍ଥଖଣ୍ଡିକୁ ତାହାଙ୍କର କୃତି ନ ଗଣି ବରଂ ଭାବୀ ଉତ୍କର୍ଷର ଅଗ୍ରଯାୟୀ ମଣିବୁଁ । ଏହା ଯେମନ୍ତ ସେ ନ ପାସୋରିବେ ।

## ରହସ୍ୟ

ଦୁଇଦଳର ଘୋର ଯୁଦ୍ଧ ହେଉଥିଲା, ଏକପକ୍ଷର ଡାକ୍ତର ଯୁଦ୍ଧରେ ମୃତ ବ୍ୟକ୍ତିମାନଙ୍କୁ ପୋତି ପକାଇବାପାଇଁ ଅନୁଚରମାନଙ୍କୁ ଆଦେଶ ଦେଲେ । ଯୁଦ୍ଧବେଳେ ଅନେକ ହୃଦୟବିଦାରକ ଘଟଣା ଘଟେ । ନିର୍ଭୀକ ଲୋକଙ୍କର ସୁଦ୍ଧା ମନରେ ଆଶଙ୍କା ଜନ୍ମେ, ଏଥିପାଇଁ ହେଉ ଅଥବା କାରଣାନ୍ତରରେ ହେଉ ସୈନିକମାନେ ସବୁବେଳେ, ବିଶେଷ ଯୁଦ୍ଧବେଳେ, ମଦ୍ୟପାନ କରନ୍ତି । ଡାକ୍ତରଙ୍କର ଅନୁଚରମାନେ ଅପର୍ଯ୍ୟାପ୍ତ ମଦ୍ୟପାନ କରିଥିଲେ । ସେମାନଙ୍କ ମଧ୍ୟରୁ ଜଣେ ଡାକ୍ତରଙ୍କ ଆଜ୍ଞାପ୍ରମାଣେ ରଣ କ୍ଷେତ୍ରକୁ ଯାଇ କୌଣସି ଆହତ ଭୂମିଶାୟୀ ବ୍ୟକ୍ତିକୁ ଉଠାଇ ପକାଇ ଦେବାର ଉପକ୍ରମ

କଲା । ଆହତ ବ୍ୟକ୍ତି ପଚାରିଲା ''ମୋତେ କେଉଁଠାକୁ ନେଇଯିବୁ ?'' ଉତ୍ତର- ଡାକ୍ତରସାହେବ ମୃତବ୍ୟକ୍ତିମାନଙ୍କୁ ପକାଇ ଦେବାପାଇଁ ଆଦେଶ ଦେଇଅଛନ୍ତି ।'' ''ମୁଁ ତ ବଞ୍ଚିଅଛି, ମୋତେ କିପାଁ ଏପରି କରୁଅଛୁ, '' ଡାକ୍ତରସାହେବ ପାଞ୍ଚଶ ଟଙ୍କା ଦରମା ପାନ୍ତି ତାଙ୍କ କଥା ବଡ଼ ନା ତୋ କଥା ବଡ଼ ? ସେ କହିଅଛନ୍ତି ତୁ ମରିଅଛୁ, ''ତୁତ ଦେଖୁଛୁ ମୁଁ କଥା କହୁଅଛି ମଲି କିପରି ?'' ''ତୁ ବଡ଼ ସିଆଣିଯା, ମୁଁ କ'ଣ ତୋହରି କଥା ଶୁଣିବି ?'' ''ତୁତ ଦେଖୁଛୁ ମୋ ପ୍ରାଣ ଅଛି ମତେ ଭଲା ଡାକ୍ତରଙ୍କ ପାଖକୁ ନେଇଚାଲ ସେ ଯେବେ ପକାଇଦେବାକୁ କହିବେ ତେବେ ପକାଇଦେବୁ ।'' ମତୁଆଲାମାନଙ୍କ ମନରେ ସୁଦ୍ଧା ମେଘରେ ବିଜୁଳି ପ୍ରାୟ କେବେ କେବେ କରୁଣାର ଉଦ୍ରେକ ହୋଇଥାଏ । ଅନୁଚର ହୃଦୟରେ କରୁଣା ସଞ୍ଚରିଲା, କହିଲା ''ମୋ ସାଙ୍ଗରେ ଆଏ ।'' ''ମୋର ଗୋଡ଼ ନା, ''ତେବେ ମୁଁ କାନ୍ଧେଇ ନିଏଁ'' ଏହା କହି ଅନୁଚର ଆହତ ବ୍ୟକ୍ତିଙ୍କୁ କାନ୍ଧରେ ଘେନି ଡାକ୍ତରଙ୍କଠାକୁ ଯିବାର ଉପକ୍ରମ କଲା । ସେତେବେଳେ ଘନ ଗୋଳାବୃଷ୍ଟି ହେଉଥିଲା; ବାଟରେ ଯାଉଁ ଯାଉଁ ଗୋଳାରେ ଆହତ ବ୍ୟକ୍ତିର ମୁଣ୍ଡ ଉଡ଼ିଗଲାଣି, ମାତ୍ର ଅନୁଚରଙ୍କୁ ସେକଥା ଜଣା ନାହିଁ ସେ ଆପଣା ମଉଜରେ ଚାଲୁଅଛନ୍ତି । ଡାକ୍ତରଙ୍କଠାରେ ପ୍ରବେଶ ହେଲେ । ସାହେବ ପଚାରିଲେ ''ଏଠାକୁ କିପାଁ ଆଣିଲୁ ?'' ଅନୁଚର ବୋଇଲା ''ଅବଧାନ ମୁଁ ଏହାକୁ ପକାଇ ଦେବାପାଇଁ ନେଇ ଯାଉଥିଲି ଏ କହିଲା ମୁଁ ବଞ୍ଚିଛି, ମୋତେ ସାହେବଙ୍କ ଠାକୁ ନେ, ସେ ଯେବେ କହିବେ ପକାଇଦେବୁ ।'' ଡାକ୍ତର ହସି ବୋଇଲେ ''ଏହାର ତ ମୁଣ୍ଡ ନାହିଁ'' ଅନୁଚର ବୋଇଲା ''ସେ ଯେବେ ସେତେବେଳେ ଏକଥା କହିଥାନ୍ତା ମୁଁ କଅଣ ଆଉ ଏଠିକି ଆଣିଥାନ୍ତି ।''

ଜଣେ ତାହାଙ୍କ ବନ୍ଧୁଙ୍କ ଦୁଆରକୁ ଗଲେ । ବନ୍ଧୁ ଭିତରୁ ଚାକରକୁ ବୋଇଲେ କହ ''ସେ ନାହାନ୍ତି ।'' ଆଗନ୍ତୁକ, ବନ୍ଧୁ ଭିତରେ ଥିବାର ଜାଣିଥିଲେ, ମାତ୍ର ଚାକରର କଥାରୁ ସେଠାରୁ ବାହୁଡ଼ିଲେ । ଦିନେ ପୁଣି ସେହି ବନ୍ଧୁ ତାହାଙ୍କ ଘରକୁ ଆସିଲେ । ତାହାଙ୍କୁ ଆସିବାର ଦେଖି ସେ ବୋଇଲେ, ''ତୁମ୍ଭେ କାହାକୁ ଲୋଡୁଅଛ'' ଉତ୍ତର ''ତୁମ୍ଭକୁ'' ''ମୁଁ ନାହିଁ'' ''କଅଣ ତୁମ୍ଭେ କଥା କହୁଅଛ'' ''କଅଣ ତୁମ୍ଭେ ଆମ୍ଭ କଥା ବିଶ୍ୱାସ କରୁ ନାହଁ ?'' ସେଦିନ ଯେ ତୁମ୍ଭେ ଘରେ ନଥିଲ, ସେଥିର ସମ୍ବାଦ ଚାକର ଦ୍ୱାରା ମୋତେ କହି ପଠାଇଲ, ମୁଁ ତୁମ୍ଭ ଚାକର କଥା ବିଶ୍ୱାସ କଲି, ତୁମ୍ଭେ ମୋ କୁହାରେ ସୁଦ୍ଧା ବିଶ୍ୱାସ କରୁ ନାହଁ ?''

ଜଣେ ପଣ୍ଡିତ କୌଣସି ଧନୀଙ୍କ ଠାକୁ ଯାଇ ଗୋଟିଏ ପ୍ରାର୍ଥନା କଲେ । ଅନେକ ସ୍ତୁତି କଲେହେଁ ଧନୀ ତାହାଙ୍କ କଥାରେ କର୍ଣ୍ଣପାତ କଲେ ନାହିଁ; ପଛକୁ ପଣ୍ଡିତ ଗୋଡ଼ତଳେ ପଡ଼ିଲେ, ଧନୀ ସମ୍ମତ ହେଲେ । ପଣ୍ଡିତ ସେଠାରୁ ଆସିଲା ଉତ୍ତାରେ ଜଣେ ତାହାଙ୍କୁ ବୋଇଲେ ''ତୁମ୍ଭେ କଅଣ କଲ ! ତୁମ୍ଭେ ପଣ୍ଡିତ ହୋଇ ତାଙ୍କ ଗୋଡ଼

ତଳେ ପଡ଼ିଲ ?'' ପଣ୍ଡିତ ହସି ବୋଇଲେ ତୁମ୍ଭେ କଅଣ ଜାଣ ? ତାଙ୍କ କର୍ଣ୍ଣ ତାଙ୍କ ଗୋଡ଼ ତଳେ ।

ଜଣେ ଡାକ୍ତର ସଦ୍ୟ ବିଲାତରୁ ଆସିଥିଲେ । ତାଙ୍କଠାକୁ ଦୁଇଜଣ ରୋଗୀ ଆସିଲେ । ଜଣଙ୍କର ଦନ୍ତ ପୀଡ଼ା ଆନଜଣଙ୍କର ଉଦର ପୀଡ଼ା । ଡାକ୍ତର ଦେଖି ବୋଇଲେ ''କାଲି ଆସିବ'' । ଆରଦିନ ଉଦର ରୋଗୀ ଆସିଲା ଡାକ୍ତର ଦେଖିଲାମାତ୍ରକେ ଚଞ୍ଚଳ ଘର ଭିତରକୁ ଯାଇ ସଣ୍ଡୁଆସି ଆଣି ରୋଗୀର ଦନ୍ତଧରି ଉପାଡ଼ିବାର ଉପକ୍ରମ କଲେ । ରୋଗୀର ତୁଣ୍ଡ ବନ୍ଦ, ପେଟରେ ହାତ ବୋଲାଇ ଆପଣା ପ୍ରକୃତ ରୋଗ ଜଣାଇଲା । ଡାକ୍ତର ପାଞ୍ଚିଲେ ଯେ ତାହାର ଭୟ ହୋଇ ଅଛି ''କୁଛ୍ ପରବାୟ ନେହିଁ'' ବୋଲି ଆଶ୍ୱାସ ଦେଇ ତାହାର ତିନି ଚାରି ଦନ୍ତ ଉପାଡ଼ି ପକାଇଲେ ।

# କାଳିଦାସ

## ପୂର୍ବ ପ୍ରକାଶିତ ଉତ୍ତାରୁ

ଆମ୍ଭେମାନେ ପୁରୁଷୋତ୍ତମରେ ଶରତ୍‌କାଳ ଦେଖିଅଛୁଁ । ସେଠାରେ ଶରତ୍‌କାଳରେ ଅଗସ୍ତିଫୁଲ ଯଥେଷ୍ଟ ଫୁଟିବାର ଜାଣି ଅଛୁଁ । ଏଣୁ ଏହାକୁ କବିଙ୍କର ପୁରୁଷୋତ୍ତମ ବାସୀତ୍ୱର ସମ୍ଭାବନା ବୋଧକ ପ୍ରମାଣ ମଣିଲୁଁ । ମାତ୍ର ସେ ପୁରୁଷୋତ୍ତମବାସୀ ଥିଲେ ଏହା ଯେବେ ଆମ୍ଭେମାନେ ଆଗୁଁ ଜାଣି ନ ଥାନ୍ତୁ ତେବେ କଦାଚ ଏ ଆବିଷ୍କ୍ରିୟା କରି ପାରନ୍ତୁ ନାହିଁ । ଅନ୍ୟ ଗ୍ରନ୍ଥରେ ଯାହା ହେଉପଛକେ କାବ୍ୟ ଗ୍ରନ୍ଥରୁ ଯେଉଁ ଆଭ୍ୟନ୍ତରିକ ପ୍ରମାଣ ମିଳେ ତାହା ପୋଷକ ହୋଇପାରେ; କିନ୍ତୁ ଆବିଷ୍କାରକ ହୋଇ ନପାରେ । ପ୍ରଭୂତ କାଳିଦାସ ପରି କବିଙ୍କ ଗ୍ରନ୍ଥରୁ ଆଭ୍ୟନ୍ତରିକ ପ୍ରମାଣ ସଂଗ୍ରହ କଲେ ପ୍ରତାରିତ ହେବାର ସମ୍ପୂର୍ଣ୍ଣ ସମ୍ଭାବନା । ହେତୁକି ଏ ଯାହା ବର୍ଣ୍ଣନା କରି ଅଛନ୍ତି ସେଥିରେ ଏପରି ଅନାବିଳ ସ୍ୱଭାବାନୁବର୍ତ୍ତିତା ଅଛି ଯେ ପଢ଼ିଲାବେଳେ କିଏ ପ୍ରକୃତ କିଏ ଅନୁକୃତ ଏହା ଚିହ୍ନି ହୁଏ ନାହିଁ । ମେଘଦୂତରେ ବିଦିତା ଦର୍ଶନ ପଢ଼ି କେହି ଅବା ମଣିବେ କାଳିଦାସ ବିଦିଶା ବାସୀ ଥିଲେ । ମାତ୍ର ରଘୁବଂଶରେ ଅଯୋଧ୍ୟାର ଭଗ୍ନଦଶା ପଢ଼ିଲେ ସେ ଅନୁମାନ ଯାଇ ଆନ ଅନୁମାନ ହେବ । ଶକୁନ୍ତଳାରେ ଋଷିମାନଙ୍କର ବାକ୍ୟାଳାପ ଶୁଣି କାଳିଦାସ ଋଷି ଥିଲେ ଏପରି ଅନୁମାନ ହେବ, ଦୁଷ୍ମନ୍ତର କଥୋପକଥନ ଶୁଣି ରାଜା ଥିବାର ଅନୁମାନ ହେବ, ଧୀବର କାତରୋକ୍ତି ପଢ଼ିଲା ବେଳେ କାଳିଦାସ ଧୀବର ଥିବାର ଅନୁମାନ ହେବ । ରଚୟିତା ପୁରୁଷ ଥିଲେ ଏହା ଆମ୍ଭେମାନେ ଯେବେ ଜାଣି ନ ଥାନ୍ତୁ ଶକୁନ୍ତଳା ଅନସୂୟା

ଓ ପ୍ରିୟମ୍ବଦା, ଉର୍ବଶୀ, ଇନ୍ଦୁମତୀ, ରତି ଏମାନଙ୍କର ମନଶ୍ଚିତ୍ର ଦେଖି କାଳିଦାସ ପ୍ରଣୀତ ଗ୍ରନ୍ଥମାନଙ୍କୁ କୌଣସି ରସିକ ନାୟିକା ପ୍ରଣୀତ ବୋଲି ମଣନ୍ତୁ । ଫଳେ କାଳିଦାସଙ୍କ ପରି ସହୃଦୟ କବିଙ୍କର କାବ୍ୟୋଦ୍ୟାନରେ ବିଚରିବା ଇକ୍ଷୁ ବନରେ ବିଚରିବା ପରି* ।

କାଳିଦାସଙ୍କର ଜୀବନ ବୃତ୍ତାନ୍ତ ବିଷୟରେ ଆମ୍ଭେମାନେ ତୁନିହେଲୁଁ ଇଚ୍ଛାପୂର୍ବକ ନୁହେଁ ଅଗତ୍ୟା ତୁନି ହେଲୁଁ । ଫଳତଃ ତାହାଙ୍କର ରଚିତ ଗ୍ରନ୍ଥର ସମାଲୋଚନା କରିବାର ଏହି ପ୍ରସ୍ତାବର ମୁଖ୍ୟ ଉଦ୍ଦେଶ୍ୟ ଅଟେ । ଏବେ ପଲ୍ଲବିତ ପରିହାର କରି ପ୍ରକୃତ ବିଷୟରେ ପ୍ରବୃତ୍ତ ହେଉଅଛୁ ।

କାବ୍ୟ ସଚରାଚର ଦୁଇ ଶ୍ରେଣୀରେ ବିଭକ୍ତ ହୋଇଥାଏ । ଶ୍ରାବ୍ୟ ଓ ଦୃଶ୍ୟ । ଏ ଉଭୟଙ୍କ ଉଦ୍ଦେଶ୍ୟ ଭିନ୍ନ ଅଟଇ । ସେହି ବିଭେଦ ନିମ୍ନରେ ବିବୃତ ହେଉଅଛି ।

ସଂସାର ଦ୍ୱିବିଧ । ବାହ୍ୟ ସଂସାର, ଅନ୍ତର ସଂସାର । ବହିରିନ୍ଦ୍ରିୟଗ୍ରାହ୍ୟ ସଂସାର, ବାହ୍ୟ ଓ ଅନ୍ତରିନ୍ଦ୍ରିୟ ଗ୍ରାହ୍ୟ ସଂସାରକୁ ଅନ୍ତର କହନ୍ତି । ନଭଶ୍ଚୁମ୍ବୀ-ଭୂଧର, ତରଙ୍ଗଶୋଭି ସମୁଦ୍ର, ଶ୍ୟାମାୟମାନ ଅରଣ୍ୟ, ତାରାସ୍ତବକ ମଣ୍ଡିତ ଗଗନ, ରୂପବତୀ ଲଳନା, ପୁଷ୍ପବତୀ ଲତା ପ୍ରଭୃତି ମନୋହର ଓ ବିସ୍ମୟକର ପଦାର୍ଥମାନ ବହିଃସଂସାର ଭୁକ୍ତ ଅଟନ୍ତି । କ୍ରୋଧ, ଆନନ୍ଦ, ପ୍ରେମ, ହିଂସା, ଭୟ ପ୍ରଭୃତି ଅନୁଭକ୍ତି ଓ ବିରକ୍ତିଜନକ ବୃତ୍ତିମାନ ଅନ୍ତରସଂସାରଭୁକ୍ତ ଅଟନ୍ତି ।

ସମସ୍ତେ ଏକବାକ୍ୟରେ ସ୍ୱୀକାର କରିବେ ଯେ ସର୍ବାଗ୍ରରେ ବହିଃ ସଂସାର ଆମ୍ଭମାନଙ୍କର ମନ ଆକର୍ଷଣ କରେ । ଆମ୍ଭେମାନେ ଦିନ ଭିତରେ ଶଏଥର ପଚାରୁଁ ଏ କିଏ ? ଏ କଅଣ ? ମାତ୍ର ମୁଁ କିଏ ? ଏ ଅନୁସନ୍ଧିତ୍ସା ଅନେକ ବିବେକ ନ ଜନ୍ମିଲେ କଦାଚ ଉପୁଜେ ନାହିଁ ! ଏହି ହେତୁରୁ ଯେଉଁମାନେ ପ୍ରଥମେ କବିତା ଲେଖନ୍ତି ସେ କବିତାରେ ବାହ୍ୟ ସଂସାର ବର୍ଣ୍ଣନାର ପ୍ରାଚୁର୍ଯ୍ୟ ଦେଖାଯାଏ । ଏହି ନିୟମ କେବଳ ବ୍ୟକ୍ତିରେ ପ୍ରବର୍ତ୍ତେ ଏମନ୍ତ ନୁହେଁ ଜାତିରେ ସୁଦ୍ଧା ପ୍ରବର୍ତ୍ତେ । ଆମ୍ଭମାନଙ୍କର ଆଦି କାବ୍ୟ ବେଦରେ ଅଛି ସେହି କବିତାର ବିଷୟମାନ ପ୍ରଧାନତଃ ବାହ୍ୟ ସଂସାର ଅନ୍ତର୍ଗତ ଅଟନ୍ତି । ବେଦରେ ଜଳ, ଅନଳ, ବାୟୁ, ନକ୍ଷତ୍ର, ସୂର୍ଯ୍ୟ ପ୍ରଭୃତି ମନୋହର ଓ ଭୟଙ୍କର ବହିଃସଂସାରଭୁକ୍ତ ପଦାର୍ଥମାନଙ୍କର ସ୍ତୁତିଗର୍ଭ ଗୀତ ଅଛି । ଗ୍ରୀକ୍ ଦେଶରେ ମଧ୍ୟ ସେହିପରି । ଇଂଲଣ୍ଡରେ ମଧ୍ୟ ସେହିପରି । ନବଲେଖକମାନେ ପ୍ରାୟ କୌଣସି ନାୟିକାର ରୂପବର୍ଣ୍ଣନ କୌଣସି ଋତୁର ଶୋଭା ବର୍ଣ୍ଣନା କରିଥାଆନ୍ତି । ଦିନକୁ ଦିନ

* କେବଳ ଋତୁସଂହାରରେ କବି ବର୍ଷାଋତୁ ବର୍ଣ୍ଣନାରେ ବିନ୍ଧ୍ୟାଚଳର ଉଲ୍ଲେଖ କରିଥିବାରୁ ସେ ତତ୍‌ସମୀପ ବାସୀ ଥିବାର ଅନୁମାନ ହୁଏ ।

ବିଜ୍ଞତା ସଙ୍ଗେ ସଙ୍ଗେ ବିବେକ ବଢ଼ିଲାରୁ ମନରେ ଆନ ଭାବର ସଞ୍ଚାର ହୁଏ । ସେତେବେଳେ ଦେଖନ୍ତି ହୃଦୟ ରାଜ୍ୟର ଆଲେଖ୍ୟ ଲେଖି ନ ପାରିଲେ ପ୍ରକୃତ କବି ପଦର ବାଚ୍ୟ ହୋଇ ନ ପାରିବେ । ତେଣୁ ଅନ୍ତଃକରଣ ବୃତ୍ତିମାନଙ୍କର କାର୍ଯ୍ୟ ପରୀକ୍ଷାରେ ଚିତ୍ତ ନିବିଷ୍ଟ କରନ୍ତି । କ୍ରୋଧ, ଶୋକ, ଆନନ୍ଦ, ହିଂସା ପ୍ରଭୃତି ଉପୁଜିଲେ ଲୋକେ କେମନ୍ତ ବାକ୍ୟ ପ୍ରୟୋଗ କରନ୍ତି; ସେହି ବେଳରେ ସେମାନଙ୍କର ଅଙ୍ଗ ଭଙ୍ଗୀ ଓ ମୁଖ ବୈଲକ୍ଷଣ୍ୟ କିପରି ହୁଏ, ମନ କିପରି ହେଉଥାଏ, ବହିଶ୍ଚେଷ୍ଟା କେମନ୍ତ ହୁଏ, ଭିନ୍ନ ଭିନ୍ନ ଅବସ୍ଥାରେ ମାନସିକ ଭାବ ବିରୂପେ ପରିବର୍ତ୍ତିତ ହେଉ ଥାଏ, ଭିନ୍ନ ବ୍ୟବସ୍ଥା ଅବଲମ୍ବନ କଲେ କେମନ୍ତ ନୂଆ ସଂସ୍କାରମାନ ଜାତ ହୁଏ, ନୂଆ ଆସକ୍ତି ଜାତ ହୁଏ, ନୂଆ ବିରକ୍ତି ଜାତ ହୁଏ ଶନୈଃ ଏହି ବିଷୟମାନ ଉପରେ କବିର ଦୃଷ୍ଟି ପଡୁଥାଏ । ଅନେକ ଦେଖିଲା ଶୁଣିଲା ଉତ୍ତାରୁ କଳ୍ପନାର ସାହାଯ୍ୟ ଘେନି ସ୍ୱୟଂ ଏକ ସୃଷ୍ଟି କରନ୍ତି । ସେହି ସୃଷ୍ଟି ଅନୁକୃତ ଏହା ମାନିବାକୁ ହେବ, ମାତ୍ର ପ୍ରକୃତର ସହିତରେ ତାହାର ଯେଉଁ ପରିମାଣରେ ସାମ୍ୟ ଥିବ ସେହି ପରିମାଣରେ କବିଙ୍କର ପ୍ରାଧାନ୍ୟର ପରିଚୟ ହେବ । ଏଥିପାଇଁ ରାଘବ ପାଣ୍ଡବୀୟ କର୍ତ୍ତା କହନ୍ତି ।

''ବିସ୍ତାରିତା ଗାନ୍ଧିପୁରୀ ବନାନ୍ତାଂ
ସନ୍ଦର୍ଶି ତେନ୍ଦର୍କ ଦିନର୍ତ୍ତୁଶୋଭାମ୍
ସୃଷ୍ଟିଂ କବିଃ ସୂକ୍ତିମୟୀଂ ବିତନ୍ୱନ୍
ପ୍ରଜାପତେଃ କିଂନସଷ୍ଠାନ ଯତ୍ନଃ ।''

ଏହି ନୂତନ ନାଟ୍ୟଶାଳାରେ ଅନେକ ଅଭିନେତା ପ୍ରବେଶ କରନ୍ତି । ପ୍ରକୃତ ସଂସାରରେ ଯେମନ୍ତ ଲୋକେ ନାନା ବ୍ୟବସ୍ଥା ଅବଲମ୍ବନ କରନ୍ତି, ନାନା ଘଟନାରେ ସଂପୃକ୍ତ ଥାଆନ୍ତି, ନାନା ରିପୁର ଅଧୀନ ହୁଅନ୍ତି, ଶଂସିତ ନୂଆ ସୃଷ୍ଟିରେ ସୁଦ୍ଧା ଅବିକଳ ସେହିପରି ଘଟେ । ସଂସାରରେ କେହି ରାଜା, କେହି ପ୍ରଜା, କେହି ଜେତା, କେହି ଜିତ, କେହି ଦାତା, କେହି ଭିକ୍ଷୁକ, କେହି ଶିଷ୍ଟ, କେହି ଦୁଷ୍ଟ ଥାନ୍ତି । ଶଂସିତ ନୂତନ ସର୍ଜନାରେ ମଧ ଅଭିନେତୃବୃନ୍ଦ ଯେ ଯାହା ପୃଥକ୍ ପୃଥକ୍ ନେପଥ୍ୟ ଘେନି ଆପଣା ଆପଣା କାର୍ଯ୍ୟ ସମାଧା କରନ୍ତି ।

ଆମ୍ଭମାନଙ୍କର ଏହି ଦୀର୍ଘ ଧୈର୍ଯ୍ୟ ଲୋପା ଭୂମିକାର ଉଦ୍ଦେଶ୍ୟ ଏତିକି, କାବ୍ୟମାନଙ୍କ ମଧରେ ଦୃଶ୍ୟକାବ୍ୟ (ନାଟକ) ଅପେକ୍ଷାକୃତ ଅଧିକ ସୂକ୍ଷ୍ମଦର୍ଶିତା, ଅଧିକ କହିବା ଶକ୍ତିର ସାପେକ୍ଷ ଅଟେ । ଯେଉଁ କବି ଯେଉଁ ପରିମାଣେ ଉତ୍କୃଷ୍ଟ ଦୃଶ୍ୟ କାବ୍ୟ ରଚିପାରନ୍ତି ସେ ସେହି ପରିମାଣେ ଉତ୍କୃଷ୍ଟ କବି ଅଟନ୍ତି । ପରନ୍ତୁ ଏହା ମଧ ସ୍ୱୀକର୍ତ୍ତବ୍ୟ ଯେ ଅନେକ ଶ୍ରାବ୍ୟ ମହାକାବ୍ୟରେ ରଚୟିତାମାନେ ଏମନ୍ତ କୌଶଳ ପ୍ରଦର୍ଶନ କରିଅଛନ୍ତି ଯେ ସେହି ସେହି କାବ୍ୟର କିୟଦଂଶ ଛାଡ଼ିଦେଲେ ଅବଶିଷ୍ଟ

ଅଂଶ ଦୃଶ୍ୟକାବ୍ୟ ଲକ୍ଷଣାକ୍ରାନ୍ତ ଥିବାର ଜଣାଯିବ । କବି ପ୍ରପିତାମହ ହୋମର ପରି ଏ ବିଷୟର ଉତ୍‌କୃଷ୍ଟ ଦୃଷ୍ଟାନ୍ତ ଆଉ ନାହିଁ, ନାଟକୀୟ ଛଟା ଓ ସ୍ୱାଭାବାନୁବର୍ତ୍ତିତା ଏହି ମହାକବିଙ୍କର କାବ୍ୟରେ ଯେଉଁ ପରିମାଣେ ଲକ୍ଷିତ ହୁଏ, ଆଉ କୌଣସି କାବ୍ୟରେ ସେପରି ନାହିଁ । ଭାରତବର୍ଷୀୟ ଆଦି କବି ବାଲ୍ମୀକିଙ୍କର ବିଶ୍ୱ ପ୍ରସିଦ୍ଧ ରାମାୟଣରେ ମଧ୍ୟ ଏହି ଗୁଣ ଦ୍ୱୟର ପ୍ରାଚୁର୍ଯ୍ୟ ଦେଖାଯାଏ । ବାଲ୍ମୀକୀୟ ଅଯୋଧ୍ୟାକାଣ୍ଡ ଯେଉଁମାନେ ଅଭିନିବେଶ ପୂର୍ବକ ପାଠ କରିଅଛନ୍ତି; ସେମାନେ ଏଥିରେ ମତାନ୍ତର କରିବେ ନାହିଁ । ଏହି କାଣ୍ଡର କେତେକ ଅଂଶ ପରିତ୍ୟାଗ କଲେ ଅବଶିଷ୍ଟାଂଶ ସ୍ଫୁଟରୂପରେ ନାଟକବତ୍ ପ୍ରତିଭାତ ହେବ । କାଦମ୍ବରୀ, ରଘୁବଂଶ, କୁମାରୋତ୍ସବର ସ୍ଥାନେ ସ୍ଥାନେ ମଧ୍ୟ ଉକ୍ତ ଗୁଣ ଦ୍ୱୟର ସ୍ଫୂର୍ତ୍ତି ଦେଖାଯାଏ । କିରାତାର୍ଜ୍ଜୁନୀୟ, ଶିଶୁପାଳ ବଧ, ନୈଷଧ ଚରିତରେ ଏହି ଗୁଣମାନଙ୍କର ସମ୍ପୂର୍ଣ୍ଣ ଅଭାବ ନାହିଁ ସମ୍ପୂର୍ଣ୍ଣ ସଭାବ ମଧ ନାହିଁ ।

(କ୍ରମଶଃ)

## ବିବିଧ

ବାଲେଶ୍ୱର ପଶ୍ଚିମ ଉତ୍ତର ପ୍ରାୟ ୬ କୋଶ ଦୂରରେ ଭୀମପିଠା ନାମକ କେତେ ଗୋଡ଼ିଏ ବୃହତ୍ ପ୍ରସ୍ତର ସ୍ତୂପ ଅଛି । ଆମ୍ଭେମାନେ ଅଳ୍ପଦିନ ପୂର୍ବରେ ସେହି ସ୍ଥାନକୁ ଯାଇଥିଲୁ । ଏପରି ମନୋହର ସ୍ଥାନ ବାଲେଶ୍ୱର ଜିଲା ମଧ୍ୟରେ ବିରଳ ଲକ୍ଷିତ ହୁଅଇ । ମାତ୍ର ଆଶ୍ଚର୍ଯ୍ୟର ବିଷୟ ଏହି କି ବାଲେଶ୍ୱରର ଅତି ଅଳ୍ପ ଲୋକେ ତାହା ଦେଖିଅଛନ୍ତି । ଦେଖିଲାକ୍ଷଣି ବୋଧ ହେବ କୌଣସି ପ୍ରକାଣ୍ଡ ପର୍ବତ ଉତ୍‌ପାଟିତ ହୋଇ ତାହାର ମୂଳରେ ଅବଶିଷ୍ଟ ଖଣ୍ଡଶଃ ବିକୀର୍ଣ୍ଣ ହୋଇଅଛି । ଭୀମ ଯେତେବେଳେ ଏକ ଚିତ୍ରା ନଗରରେ ଥିଲେ ବକରାକ୍ଷସକୁ ଭୁଞ୍ଜାଇବା ନିମନ୍ତେ ଯେଉଁ ପିଷ୍ଟକ ସମ୍ଭାର ସଙ୍ଗେ ନେଇଥିଲେ ସେହିତା ପ୍ରସ୍ତରୀଭୂତ ହୋଇଅଛି ବୋଲି ଲୋକେ ବିଶ୍ୱାସ କରନ୍ତି । ସୋରରେ ଗୋଟିଏ ପ୍ରସ୍ତର ସ୍ତମ୍ଭ ଅଛି ତାହାକୁ ଲୋକେ ଭୀମ କାଣ୍ଡ ବୋଲନ୍ତି । ତାହାକୁ କାଣ୍ଡ ବୋଲିଲେ ଅନୁପାତ ଅନୁସାରେ ଉଲ୍ଲେଖିତ ପ୍ରସ୍ତର ରାଶିକୁ କଦାଚ ପିଷ୍ଟକ ବଂଶୀ ବୋଲା ଯାଇ ନ ପାରେ । ମାତ୍ର ଲୋକଙ୍କର ଅନ୍ଧ ବିଶ୍ୱାସ ତ୍ରୈରାଶିକର ବଶବର୍ତ୍ତୀ ନୁହଇ । ଭୀମପିଠା ଉପରେ ଛିଡ଼ା ହେଲେ ଚତୁର୍ଦ୍ଦିଗସ୍ଥ ଦୃଶ୍ୟ ପରମ ରମଣୀୟ ଦିଶେ । ଆମ୍ଭେମାନେ ସେଥିଉପରେ ବସି ସୂର୍ଯ୍ୟାସ୍ତ ଦେଖିଲୁ । ପ୍ରକୃତି ପ୍ରିୟପାଠକଙ୍କୁ ଅନୁରୋଧ କରୁଅଛୁଁ ଅବକାଶ ଥିଲେ ବେଳେ ଯାଇ ସେହି ସ୍ଥାନ ଦେଖି ଆସନ୍ତୁ ।

---

**ପ୍ରଥମ ବର୍ଷ ତୃତୀୟ ସଂଖ୍ୟା**
**ମାର୍ଚ୍ଚ, ୧୮୭୩**

## ପୂର୍ବପ୍ରକାଶିତ ଉତ୍ତାରୁ

# ବିବେକୀ

ଲୋକର ସୁଭଗମ୍ମନ୍ୟତା ଅନେକ କଥାରୁ ଜଣାପଡ଼େ, ସେ କଥାମାନ କଳି ହେବ ନାହିଁ । କୌଣସି ଲୋକର ସୁଭଗମ୍ମନ୍ୟତା ପରୀକ୍ଷା କରିବା ନିମନ୍ତେ ତୁମ୍ଭର ଯେବେ ସ୍ପୃହା ଥିବ ଥରେ ତାହାକୁ ତାହା ଶ୍ୱଶୁଘରେ ଦେଖିବ । ସବୁ ଜ୍ୱାଇଁ ସମାନ ନୁହନ୍ତି । ମାତ୍ର କୌଣସି କୌଣସି ଜ୍ୱାଇଁଙ୍କ ଚାଲି ଦେଖିଲେ, କଥାବାର୍ତ୍ତା ଶୁଣିଲେ ହସ ସମ୍ଭାଳି ହୁଏ ନାହିଁ । ବିଶ୍ୱାସ କରିବତ କହିବି । ଆମ୍ଭ ଗ୍ରାମକୁ ଗୋଟିଏ ଜ୍ୱାଇଁ ଆସିଥିଲେ । ଭୋଜନ ବେଳେ ସେ ସମ୍ମୁଖରେ ଖଣ୍ଡିଏ ଅଇନା ଥୋଇ ଭୋଜନ କରୁଥିଲେ । ତାହାଙ୍କର ଜଣେ ବିଶ୍ରବ୍ଧବନ୍ଧୁ, ତାହାଙ୍କୁ ସେଥିର ହେତୁ ପଚାରନ୍ତେ ବୋଇଲେ "ଭୋଜନ କଲାବେଳେ ମୁହଁ ବିକୃତ ଦିଶେ, କାଳେ ଅତ୍ୟନ୍ତ ବିକୃତ ଦିଶିବ, ଲୋକେ ହସିବେ, ଏଥିପାଇଁ ଆଗରେ ଦର୍ପଣ ଥୋଇଚି ଯେ, ଆଗୁଁ ସାବଧାନ ହେବି" । କୌଣସି ଲୋକର ଲଘୁମନସ୍କତା ପରୀକ୍ଷା ନିମନ୍ତେ ତାହା ଶଶୁର ଘରଠାରୁ ଉପଯୋଗୀ ସ୍ଥାନ ଆଉ ନାହିଁ । ତୁମ୍ଭ ଗ୍ରାମର କୌଣସି ଜ୍ୱାଇଁ ଶଶୁରଘରକୁ ଆସିଛନ୍ତି । ତୁମ୍ଭେ ତାଙ୍କ ପାଖରେ ବସି କଥାବାର୍ତ୍ତା କରୁଅଛ । ହଠାତ୍ ଜ୍ୱାଇଁଙ୍କ ଆଖିଡୋଳା ବୁଲିଲା, ତୁମ୍ଭ ସଙ୍ଗରେ ସାଧାରଣ ଲୋକପରି କଥା କହୁଥିଲେ, ହଠାତ୍ ସ୍ୱର ବଦଳିଗଲା, ଅପ୍ରୟୋଜନୀୟ କେତେଗୋଡ଼ିଏ ରସିକତାସୂଚକ ଶବ୍ଦ ପ୍ରୟୋଗ କଲେ । ତୁମ୍ଭର ମନ ବିଷୟାନ୍ତରେ ନିବିଷ୍ଟ ଥିଲା । ହଠାତ୍ ତାହାଙ୍କର ଭଙ୍ଗୀ ପରିବର୍ତ୍ତନ ଦେଖି ତୁମ୍ଭେ ବିସ୍ମୟାବିଷ୍ଟ ହୋଇ "କଅଣ ହେଲା ପରା" ବୋଲି ଚାରିଆଡ଼େ ନେତ୍ରପାତ କଲ; ହେବ ଆଉ କଅଣ ? ଶାଶୂ ଜଳା-କବାଟୀରୁ ଜ୍ୱାଇଁଙ୍କୁ ଥରେ ଦେଖିଛନ୍ତି; ଜ୍ୱାଇଁ ଏହିତା ଜାଣି ଏଡ଼େ ସଂକୁଚିତ, ସବ୍ୟାଜ ଚକିତ ହେଉଅଛନ୍ତି । ଅନର୍ଥକ ରସିକତା ସୂଚକ ଶବ୍ଦଗୋଡ଼ି ଉତ୍ତାରୁ ଅଛନ୍ତି । ଶାଶୂ ଯେ ଜ୍ୱାଇଁଙ୍କୁ ଦେଖିବା ନିମନ୍ତେ ଜଳାକବାଟୀ ପାଖକୁ ପାଖକୁ ଆସିଥିଲେ ତାହା ନୁହେଁ; କାର୍ଯ୍ୟ ବଶେ ଆସିଥିଲେ, ହଠାତ୍ ଜ୍ୱାଇଁଙ୍କ ଉପରେ ଆଖି ପଡ଼ିଗଲା । ମାତ୍ର ଜ୍ୱାଇଁ ପାଞ୍ଚିଲେ, ଶାଶୂ ସ୍ଥିର ଦୃଷ୍ଟିରେ ଆଗ୍ରହ ପୂର୍ବକ ତାହାଙ୍କର ଅଲୋକ ସାମାନ୍ୟ ଲାବଣ୍ୟ କଳୁଅଛନ୍ତି । ଛାର ମନୁଷ୍ୟ ପ୍ରକୃତି ଲଘିମା କହିଲେ ସରିବ ନାହିଁ ।

କେତେଗୋଡ଼ିଏ ସୁଭଗମ୍ମନ୍ୟ ଲୋକ ଅଛନ୍ତି କୌଣସି କଥା କହିଛନ୍ତି ଅବା କରିଛନ୍ତି ବୋଲି ଅନର୍ଥକ ତୁମ୍ଭଠାରେ କ୍ଷମା ମାଗିବେ । ସେ ଯାହା କରିଛନ୍ତି, ଯା

କହିଛନ୍ତି ତାହା ଏମନ୍ତ କିଛି ଦୋଷାବହ ନୁହେଁ । ହୁଏତ ତୁମ୍ଭର ସେ କଥା ମନରେ ନାହିଁ, ମାତ୍ର ସେମାନେ ଏଡ଼େ କୃତ୍ରିମ କାତରତା ସହିତ କ୍ଷମା ମାଗିବେ ଯେ, ଶୁଣିଲା କ୍ଷଣି ଆଉ ଲୋକେ ତାହାଙ୍କୁ କୌଣସି ଗୁରୁତର ଅପରାଧୀ ଗଣିବେ । ପାଠକ ! ଏହି ପଂକ୍ତିଗୋଡ଼ି ପଢୁ ପଢୁ ''ବୃଷଭ ଓ ମଶକର'' ଗଳ୍ପ ତୁମ୍ଭ ମନରେ ପଡୁଥିବ । ବାସ୍ତବରେ ଯେ ଅନେକ ଥର ଅନର୍ଥକ କ୍ଷମା ମାଗେ ସେ ଆପଣାକୁ ''ଜଣେ'' କରି ଜାଣେ, ଏହା ନିଷ୍ଠା ଜାଣିଥିବ ।

ସ୍ତ୍ରୀମାନେ ବଡ଼ ସୁଭଗମ୍ମନ୍ୟ । ସବୁ ସ୍ତ୍ରୀ ସମାନ, ଆମ୍ଭେ ଏହା କହୁ ନାହୁଁ । ପନ୍ଦର ପଣି ସୁଭଗମ୍ମନ୍ୟ । ଅନେକ ଥର ତୁମ୍ଭ ଘରେ ଭୋଜନ ନିମନ୍ତେ କୁଟୁମ୍ବିନୀମାନେ ଆହୁତ ହୋଇ ଥିବେ । ଭଲ ପତଳା ଶାଢ଼ି ପିନ୍ଧି ସଙ୍କୁଚିତ ହୋଇ ତୁମ୍ଭ ଘରକୁ ଆସୁଛନ୍ତି, ଏପରି କେତେ ତରୁଣୀ ଦେଖି ଥିବ । ଅଧୋବଦନ, ସତେ ଯେମନ୍ତ କିଛି ଜାଣନ୍ତି ନାହିଁ ଏହିପରି ଚାହାଣି ତଳେ ''ଥରେ ମୋତେ ଦେଖ ଭଲା'' ଏହି ଆନ୍ତରିକ ଇଚ୍ଛା ଶାଢ଼ି ତଳେ ଦେହ ପରିସ୍ଫୁଟ ରୂପରେ ବ୍ୟକ୍ତ ହେଉଥାଏ ।

ଗାୟକମାନେ ବଡ଼ ସୁଭଗମ୍ମନ୍ୟ । ସବୁ ଗାୟକ ସମାନ, ଏହା କହୁ ନାହୁଁ । ଅଧିକାଂଶ ସୁଭଗମ୍ମନ୍ୟ । କୌଣସି ସଭାରୁ କୌଣସି ଗାୟକ ନେଉଟି ଆସିଲା ଉତ୍ତାରୁ ତାଙ୍କୁ ପଚାରିବଟି ''ଗାଉଥିଲେ, ସେହିପରି ଆଉ ବି ? ମୁ ତାନପୂରା ନେଲି, ହଜାର ହଜାର ଲୋକ ବସିଥିଲେ, ସମସ୍ତେ ଚୁପ୍, ଆଉ ପାଟି ଫିଟିଲା ନାହିଁ'' ।

ଅନେକ ଲୋକ ଅଛନ୍ତି ସେମାନଙ୍କର ସୁଭଗମ୍ମନ୍ୟତା ସେମାନଙ୍କର ଧର୍ମବିଷୟକ ବିତଣ୍ଡାରୁ ଜଣା ପଡ଼େ । ଏପରି ତାର୍କିକ ଏକାଳକୁ ଅନେକ ହୋଇ ଅଛନ୍ତି । ଏମାନେ ନାସ୍ତିକତାକୁ ବିଜ୍ଞତାର ପରିମାପକ ଜାଣନ୍ତି । ଦିନେ ଆମ୍ଭେମାନେ ବ୍ରହ୍ମସମାଜକୁ ଯାଇଥିଲୁଁ; କେତେଗୋଡ଼ିଏ ପ୍ରକୃତ ଭକ୍ତିମାନ୍ ଯୁବକ ପ୍ରଭୁଙ୍କୁ ସ୍ତୁତି କରୁଥିଲେ । ସେମାନଙ୍କର ଆନ୍ତରିକ ଭକ୍ତି ଦେଖି ଆମ୍ଭମାନଙ୍କର ମନ ଦ୍ରବୀଭୂତ ହେଲା । ମାତ୍ର ସେଠାରେ ସୁଦ୍ଧା ବିରକ୍ତି ଉପୁଜିଲା । ବିରକ୍ତିର ହେତୁ ଏତିକି । ସମାଜକୁ ଜଣେ ପାଣ୍ଡିତ୍ୟାଭିମାନୀ ଗଧ ଆସିଥିଲେ । ଉପାସନା ନିମନ୍ତେ ଆସି ନ ଥିଲେ । ଏଡ଼େ ପଣ୍ଡିତ ହୋଇ ଯେବେ ''ସେହି ମରହଟୀ ଈଶ୍ୱର ବିଶ୍ୱାସ'' ନ ଗଲା, ତେବେ ପାଣ୍ଡିତ୍ୟର ଫଳ କଅଣ ? ବ୍ରାହ୍ମମାନଙ୍କର ଇତରତା ଦେଖି ଆପଣା ସୁଭଗମ୍ମନ୍ୟତା ଚରିତାର୍ଥ କରିବା ପାଇଁ ସେ ଆସିଥିଲେ । ବ୍ରାହ୍ମମାନେ ଯେତେବେଳେ ନେତ୍ର ନିମୀଳିତ କରି ସ୍ତୁତି ବୋଲୁଥିଲେ ସେ କେତେ ପ୍ରକାର ଭଙ୍ଗୀ କଲେ, କେତେ ଥର ମର୍କଟ ପ୍ରାୟ ହସିଲେ ''ସମସ୍ତେ ଦେଖନ୍ତୁ ମୁଁ ଏମାନଙ୍କ ପରି ନିର୍ବୋଧ ନୁହେଁ'' ଏହିତା ଜଣାଇବା ପାଇଁ କେତେଥର ''ଆହାହା !'' ବୋଇଲେ । ବ୍ରାହ୍ମମନ୍ଦିରରେ ଯେଉଁ

ଗୀତ ବୋଲନ୍ତି ସେ ଗୀତମାଧୁରୀ ଆନ ଗୀତରେ ନାହିଁ । ମାତ୍ର ସେହି ଗଧକୁ ତଡ଼ିଦେବା ଇଚ୍ଛା ନିତାନ୍ତ ବଳବାନ୍ ହେବା ଯୋଗୁଁ ଆମ୍ଭେ ସେହି ସ୍ୱର୍ଗୀୟମାଧୁରୀ ଅନୁଭବ କରି ନ ପାରିଲୁଁ । ଗଧ ପାଖିଲେ ସମସ୍ତେ ତାଙ୍କୁ ଅନାଇ ରହିଅଛନ୍ତି, ସମସ୍ତେ ତାଙ୍କୁ ଡରନ୍ତି । ଆମ୍ଭେ ନିଶ୍ଚେ ଜାଣିଲୁଁ ସଭା ଭାଙ୍ଗିଲା ଉତ୍ତାରୁ ଗଧ ଯାଇ ସମସ୍ତଙ୍କ ଠାରେ ଆପଣା ଗୌରବ କରିବେ । ''ଧର୍ମ ଧର୍ମ ରାତିଦିନ କରନ୍ତି, ମୋତେ ଦେଖି କାହାରି ତୁଣ୍ଡ ଫିଟିଲା ନାହିଁ'' ସମସ୍ତଙ୍କଠାରେ ଏହି ବଡ଼ାଇ କରିବେ ।

ଯେଉଁମାନେ ସବୁବେଳେ ଆପଣା ପତ୍ନୀର କଥା କହନ୍ତି, ପତ୍ନୀର ପ୍ରଶଂସା କରନ୍ତି, ସେମାନେ ବଡ଼ ସୁଭଗମ୍ମନ୍ୟ । ଏହି ସୁଭଗମ୍ମନ୍ୟତା ଆନ୍ତରିକ ହେଲେ ସେଥିରୁ ଅନିଷ୍ଟ ନ ହୋଇ ବରଂ ଶୁଭଫଳର ସମ୍ଭାବନା । ମାତ୍ର କେତେଗୋଡ଼ିଏ ଲୋକ ଅଛନ୍ତି, ବନ୍ଧୁମାନଙ୍କଠାରେ ଆପଣା ପତ୍ନୀର ସବୁବେଳେ ପ୍ରଶଂସା କରନ୍ତି, ତେଣେ ପୁଣି ପରଦାରାଭିଗମନ ସେମାନଙ୍କର ନିତ୍ୟବ୍ରତ ।

ସୁଭଗମ୍ମନ୍ୟ ଲୋକ ଆପଣା ସ୍ତ୍ରୀର ଅନର୍ଥକ ଅପ୍ରାସଙ୍ଗିକ ଶ୍ଲାଘା କରନ୍ତି, ହୃଦୟଜ୍ଞ କାଳିଦାସ ଏହା ଭଲରୂପରେ ଜାଣିଥିଲେ; ତେଣୁ ଯକ୍ଷତୁଣ୍ଡରେ,

''ବାଚାଳଂ ମାଂନଖଲୁ ସୁଭଗମ୍ମନ୍ୟ ଭାବଃ କରୋତି'' ଏହି ଉକ୍ତି ଦେଇଅଛନ୍ତି ।

ଜଣେ ସୁଭଗମ୍ମନ୍ୟ ମହାତ୍ମା ଆମ୍ଭସଙ୍ଗେ କଥୋପକଥନ କରୁଥିଲେ, ସେଠାରେ ଆମ୍ଭର ଆଉ ଜଣେ ବନ୍ଧୁ ବସିଥିଲେ । କଥା ପ୍ରସଙ୍ଗରୁ ସହୃଦୟବର ଆରଭିଂ ସାହେବଙ୍କର ରଚନା ଚାତୁରୀର ଆମ୍ଭେ ପ୍ରଶଂସା କଲୁଁ । ପ୍ରଶଂସିତ ମନାତ୍ମା ବୋଇଲେ ''ଆରଭିଂ The Wife ନାମକ ଯେଉଁ ପ୍ରବନ୍ଧ ଲେଖିଛନ୍ତି ତାହା ଅତି ମନୋହର'' । ଆମ୍ଭେ କହିଲୁଁ ''ହଁ ସେଉଟି ମନୋହର ପ୍ରସଙ୍ଗ ଅଟେ'' । ଆମ୍ଭର ବନ୍ଧୁ ଆରଭିଂ ପଢ଼ି ନ ଥିଲେ । ସେ କିଛି ନ କହି ତୁନି ହୋଇ ରହିଲେ । ଶଂସିତ ମହାତ୍ମା ପୁଣି କହିଲେ ''ମୋ ସ୍ତ୍ରୀକୁ ମୁଁ ସେହି ପ୍ରବନ୍ଧ ଅନୁବାଦ କରିବାକୁ କହିଲି । ସେ କଅଣ ତା ପାରିବ ? ତାର ଅଧେ ଭାବ ଆସିଲା ନାହିଁ ।'' ଆମ୍ଭେ ନିଷ୍ଠା ଜାଣୁ ଇଂରାଜୀ ତେଣିକି ଥାଉ, ତାଙ୍କର ସ୍ତ୍ରୀ ବେଶ ଭାଷାରେ ମଧ୍ୟ ଅତି ଅଳ୍ପ ଶିକ୍ଷିତା । ମହାତ୍ମା ଆପଣା ସ୍ତ୍ରୀକୁ ନିନ୍ଦା କଲେ; ମାତ୍ର ପ୍ରକାରାନ୍ତରେ ସ୍ୱର୍ଗକୁ ଟେକିଦେଲେ, ଏହା ଆମ୍ଭର ଭଲ ଉପଲବ୍ଧି ହେଲା । କେହି କେହି ସୁଭଗମ୍ମନ୍ୟ ମହାତ୍ମା ଆପଣା ପତ୍ନୀ କର୍ତ୍ତୃକ ବୁଣାଜୋତା ଅବା ଟୁପି ସବୁବେଳେ ପିନ୍ଧି ଥାଆନ୍ତି ସେମାନଙ୍କର ଆନ୍ତରିକ ଉଦ୍ଦେଶ୍ୟ ଏହି ଯେ, ଏମନ୍ତ କଲେ ଆପଣା ପତ୍ନୀ ଗୁଣ ଗୌରବ କରିବା ନିମନ୍ତେ ଅନେକ ସୁଯୋଗ ଲଭିବେ । ଆମ୍ଭେ ଯାହା କହିଲୁଁ । ତାହାକୁ ବ୍ୟାପ୍ତି କରି ଘେନିବ ନାହିଁ । ନିକୁଷରେ ୧୦୦ରେ ୮୦ ଏହିପରି ।

ଅନେକ ଲୋକେ ଠାକରେ ବସି କଥାବାର୍ତ୍ତା କହୁ ଅଛନ୍ତି, ଆଉ ଜଣେ ସେଠାରେ ବସି ସେମାନଙ୍କ ଆଡ଼କୁ ଅନାଇ ରହିଅଛନ୍ତି, ମୁଚ୍‌କି ମୁଚ୍‌କି ହସୁଛନ୍ତି, ଏପରି ମୂର୍ତ୍ତିପାଠକେ ଦେଖିଛତ ? ଆମ୍ଭେ ଭଲ ବୋଲି ପାରୁ ନାହୁଁ । ମାତ୍ର ତୁମ୍ଭେ ଆମ୍ଭର ଅର୍ଥ ବୁଝିଅଛ । ସେହି ମୁଚ୍‌କି ହାସ୍ୟକାରୀ ବଡ଼ ବିଜ୍ଞମ୍ମନ୍ୟ । ସେ ଆପଣାକୁ ଅସାଧାରଣ କରି ଜାଣନ୍ତି । ସାଧାରଣ ଲୋକର କଥାବାର୍ତ୍ତା ତାହାଙ୍କର ପ୍ରଜ୍ଞାକୁ ତୁଚ୍ଛ ଦିଶେ, ତେଣୁ ସେ ଇତର ଲୋକମାନଙ୍କର କଥାବାର୍ତ୍ତାରେ ଭାଗୀ ହୁଅନ୍ତି ନାହିଁ । ପାଠକେ ! ଏପରି ଗଧ ଥୋକାଏ ଦେଖିଥିବ ।

ଧନବାନ୍ ମୂର୍ଖମାନଙ୍କ ମଧ୍ୟରୁ ଅଧିକାଂଶ ସୁଭଗମ୍ମନ୍ୟ । କୌଣସି ବିଦ୍ୱାନ୍ ଲୋକର ପ୍ରତିଷ୍ଠା ଶୁଣିଲା କ୍ଷଣି ଈର୍ଷା ଓ ସୁଭଗମ୍ମନ୍ୟତା ଯୁଗପତ୍ ଏମାନଙ୍କ ହୃଦୟକୁ ଆଶ୍ରୟ କରେ । କହନ୍ତି "ସିମତି ବିଦ୍ୟାରୁ ଲଭ୍ୟ କଅଣ ? ଏମାନେ ପାଠରେ ଯାହା କରିବେ ମୁଁ ସାଟରେ ତାହା କରିବି, ପାଠ ସାଟ ଦିଇଟା ଅଛିକି ନାହିଁ ?

କେତେ ଗୁଡ଼ିଏ ଲୋକ ଅଛନ୍ତି ଯେ ସେମାନଙ୍କୁ ନ ପଚାରୁଣୁ ସବୁ କଥାରେ ଆପଣା ମତ ଦେବେ, ଯେ ବିଷୟମାନଙ୍କରେ ସେମାନେ ନିପଟ ଅଜ୍ଞ ଏପରି ବିଷୟରେ ସୁଦ୍ଧା ସେମାନେ ସବୁବେଳେ ଉପଦେଶ ଦେବା ପାଇଁ ପ୍ରସ୍ତୁତ ଅଟନ୍ତି । ଉପଦେଶ ଅବା ମତ ଦେବା ପାଇଁ କେଡ଼େ ଯୋଗ୍ୟତାର ପ୍ରୟୋଜନ ସେମାନେ ଭ୍ରମରେ ଏହା ପାଞ୍ଚନ୍ତି ନାହିଁ । ଏହିପରି ଅଯୋଗ୍ୟ ଉପଦେଷ୍ଟାମାନଙ୍କ ପ୍ରସାଦରୁ କେତେ ସୁଖୋଚିତ ନିରୀହ ଲୋକ ଅପ୍ରତି ବିଧେୟ ଦୁଃଖରେ ପଡ଼ି ଅଛନ୍ତି । ଶାରୀର ବିଦ୍ୟାର ଅଣୁମାତ୍ର ଜାଣନ୍ତି ନାହିଁ ଏପରି କେତେ ଲୋକ ଆମକୁ କହି ଅଛନ୍ତି ଯେ ୩୫ ବର୍ଷ ପୂର୍ବରେ ବିବାହ କରିବାର ଉଚିତ ନୁହେଁ । କୌଣସି ସ୍ତ୍ରୀ ଯେ ବିଷୟରେ ସେ ସମ୍ପୂର୍ଣ୍ଣ ଅନଭିଜ୍ଞ ଏମନ୍ତ କୌଣସି ବିଷୟରେ ଏକ ପଣ୍ଡିତଙ୍କଠାରେ ଆପଣା ମତ ବ୍ୟକ୍ତ କଲେ । ପଣ୍ଡିତ ସହି ନ ପାରି ବୋଇଲେ "ଭଦ୍ରେ ! ମତ କହିବା ଆଗେ ତୁମ୍ଭର ମତର ଓଜନ କେତେ ଏହା ଭାଳିବାର ବିହିତ" । ଏ ବଡ଼ ତୀକ୍ଷ୍ଣ ଉତ୍ତର ଅଟେ । ମାତ୍ର ମତ ଦେବା ବ୍ୟକ୍ତିମାନେ ସୁଭଗମ୍ମନ୍ୟତାର କବଚ ପିନ୍ଧି ଥାଆନ୍ତି । ସେମାନଙ୍କୁ କାହିଁକି ଭେଟିବ । ସେମାନେ ଏହା ନିଷ୍ଠା ଜାଣନ୍ତି ସେମାନଙ୍କର ମତ ଅଭ୍ରାନ୍ତ ।

ଆତ୍ମଲାଘବ ଶିଖିବାକୁ ଅନେକ ଦିନ ଲାଗେ । ଏତେ ବେଳ ଯାଏ ଏହି ବିଷୟର ଆଲୋଚନା କଲୁଁ । ଏହିପରି ଆଉ କେତେଗୋଡ଼ିଏ କଥା ଅଛି ସେଗୋଡ଼ି ସଂକ୍ଷେପରେ ବୋଲିବୁଁ ।

କେହି ତୁମ୍ଭକୁ ଅଜ୍ଞ ଅଥବା ଅଯୋଗ୍ୟ ମଣନ୍ତି ବୋଲି ତାଙ୍କ ଉପରେ କୁପିତ ହେବାର ବିହିତ ନୁହେଁ । ଏହି ଉକ୍ତିର ଯାଥାର୍ଥ୍ୟ ଅନେକ ଲୋକେ ସ୍ୱୀକାର କରିବେ

ନାହିଁ । ବସ୍ତୁତଃ ଯେମାନଙ୍କର ଭୂୟୋଦର୍ଶିତା ଓ ବିବେକ ସମ୍ୟକ୍ ପୁଷ୍ଟ ହୋଇ ନାହିଁ ସେମାନେ ଏହାର ମର୍ମ କାହୁଁ ଜାଣିବେ ? ଅନେକ ଲୋକ ଅଛନ୍ତି ସେମାନଙ୍କଠାରେ ଯେବେ କେହି ଆସି କହଏ ଯେ, ଆମର କେଇ ଲୋକ କହୁଥିଲେ ''ତୁମ୍ଭେ ଅଙ୍କବିଦ୍ୟା ଜାଣ ନାହିଁ'' ସେମାନେ ଶୁଣିଲାକ୍ଷଣି ଜଳିଯିବେ । ଭିକାରୀ ବାବୁ ଜଣେ ଗାୟକ, ତାଙ୍କୁ ଜଣେ ଆସି କହିଲେ ''ଦୀନୁବାବୁ କହୁଥିଲେ ତୁମ୍ଭ ଗଳା ଭଲ ନୁହେଁ'' । ଭିକାରୀବାବୁଙ୍କ ଆଖି ରକ୍ତବର୍ଣ୍ଣ ହେଲା । ଗଦାଧର ମିଶ୍ର ଜଣେ ପଣ୍ଡିତ । ତାଙ୍କୁ ଜଣେ ଆସି କହିଲେ ''ଲୋକନାଥ କହୁଥିଲେ ସଂସ୍କୃତରେ ତୁମ୍ଭର କୋମଳ ବ୍ୟୁତ୍ପତି'' । ଗଦାଧରଙ୍କ ମନ କ୍ରୋଧରେ ଅସ୍ଥିର ହେଲା । ଆମ୍ଭେ ଖଣ୍ଡିଏ ପୋଥି ରଚିଥିଲୁଁ ସେଥିରେ ପର୍ବତ, ଗୋଲାପଫୁଲ ପ୍ରଭୃତି ବିଷୟରେ କବିତା ଥିଲା । ଜଣେ ଆସି ଆମ୍ଭଙ୍କୁ କହିଲେ କାଳିବାବୁ କହୁଥିଲେ ତୁମ୍ଭେ ଯେବେ ଲେଖି ନ ଜାଣ କାହିଁକି ଏଡ଼େ ଆସ୍ପର୍ଦ୍ଧା କର । ପର୍ବତ ସେ ଗୋଲାପଫୁଲ– ଏ କିପରି କବିତା ? ଆମ୍ଭେ ପ୍ରଥମେ କୁପିତ ହୋଇଥିଲୁଁ ପଛକୁ ବିଚାରିଲୁଁ ''କାଳୀବାବୁଙ୍କ ବୁଦ୍ଧିକି ଯେପରି ଦିଶିଲା ସେ ସେହିପରି କହିଲେ, ସେ କିଛି ଆମ୍ଭର ଶତ୍ରୁ ନୁହନ୍ତି, ସେ ଯାହା କହିଛନ୍ତି ସରଳ ମନରେ କହିଛନ୍ତି ସେଥିପାଇଁ କ୍ରୁଦ୍ଧ ହେବାର ଗର୍ହିତ ଅଟେ ।'' ହଁ କାଳୀବାବୁ ଯେବେ ଈର୍ଷାଯୁକ୍ତ ହୋଇ ସେପରି କହି ଥାଆନ୍ତେ ତେବେ ଆମ୍ଭର କ୍ରୋଧ ନ୍ୟାଯ୍ୟ ହୁଅନ୍ତା କେହି କେହି ଗ୍ରନ୍ଥାକାର ଆପଣା ଗ୍ରନ୍ଥର ପ୍ରତିକୂଳ ସମାଲୋଚନା ପଢ଼ିଲା କ୍ଷଣି ଅସ୍ଥିର ହୁଅନ୍ତି । ମାତ୍ର ଅସ୍ଥିର ହେବାର ଉଚିତ ନୁହେଁ । ସମସ୍ତଙ୍କ ରୁଚି ଏକା ଛାଞ୍ଚରେ ଢଳାହୋଇ ନାହିଁ ।

ଯେମାନେ ତୁମ୍ଭଙ୍କୁ ତୁଚ୍ଛ ମଣନ୍ତି ଏମନ୍ତ ଲୋକ ସହିତରେ ସବୁ ବେଳେ ସହବାସ କରିବା ନିମନ୍ତେ ଆମ୍ଭେ କହୁ ନାହୁଁ । ଏପରି ଲୋକ ସହିତ ସବୁବେଳେ ସହବାସ କଲେ ତୁମ୍ଭର ଅତ୍ୟନ୍ତ ଅନିଷ୍ଟ ଜାତ ହୋଇପାରେ । ଯେମାନେ ଆମ୍ଭମାନଙ୍କୁ ବିଜ୍ଞ ମଣନ୍ତି ସେମାନଙ୍କ ସଙ୍ଗେ ଆମ୍ଭେମାନେ ଯେତେବେଳେ କଥା କହୁଥାଉଁ ଆମ୍ଭମାନଙ୍କୁ ପ୍ରକୃତ ବିଜ୍ଞ ପରି ଦିଶେ । ମାତ୍ର ଯେ ଆମ୍ଭମାନଙ୍କୁ ନିର୍ବୋଧ ମଣନ୍ତି ସେ ଲୋକ ପାଖକୁ ଗଲାକ୍ଷଣି ତାହାଙ୍କର ଅଶ୍ରଦ୍ଧାର କର୍କଶ ପ୍ରଭାବରୁ ଆମ୍ଭେମାନେ ପ୍ରକୃତ ନିର୍ବୋଧ ପରି ଆଚରଣ କରୁଁ । କୌଣସି ଲୋକକୁ କୌଣସି ଗୁଣରେ ଗୁଣୀ ଦେଖିବାର ତୁମ୍ଭର ଯେବେ ସ୍ପୃହା ଥିବ, ସତେ ଯେମନ୍ତ ତାହାର ସେହି ଗୁଣ ଅଛି ଏହିପରି ପ୍ରଶଂସା କରିବ । ମିଥ୍ୟା ପ୍ରଶଂସା କରିବ ନାହିଁ । ଟିକେ ଥିଲେ ସେହି ଟିକର ପ୍ରଶଂସା କରିବ । ଏପରି କଲେ ଦେଖିବ ଅଳ୍ପଦିନ ମଧ୍ୟରେ ତାହାର ସେହି ଗୁଣ ବଢ଼ିବ । ଅନେକ ଚତୁର ସ୍ୱାମୀ ଆପଣା ସ୍ତ୍ରୀକୁ ସତୀ ବୋଲନ୍ତି । ଆଚାର୍ଯ୍ୟ ଶିରୋମଣି

ଅରନଲଡ୍ ଆପଣା ଛାତ୍ରବୃନ୍ଦକୁ ଅନେକ ଥର ସତ୍ୟବାଦୀ ବୋଲି ପ୍ରଶଂସା କରୁଥିଲେ । ସବୁ ମାନସିକ ଅଥବା ନୈତିକ ଗୁଣ ଶିକ୍ଷା ବିଷୟରେ ଏହି ରୀତି ଅନୁସରି ଚଳିଲେ ଗୁଣ ଶିକ୍ଷା ନାରିକେଳଖଣ୍ଡ ସେବନ ପରି ସୁଖକର ହୁଅନ୍ତା । କୌଣସି ପିଲାକୁ ନିତି କହ ''ତୁ ଗୋଟିଏ ଗଧ ।'' ଦେଖିବ ଶେଷକୁ ସେ ଗୋଟିଏ ନୃଗଧ ହେବ । ଏଥିପାଇଁ ଯେ ଲୋକ ଆମ୍ଭମାନଙ୍କୁ ତୁଚ୍ଛ ମଣନ୍ତି ସେ ଲୋକର ସଂସର୍ଗରେ ସବୁବେଳେ ରହିବାର ଅନୁଚିତ ଅଟେ । ଯାହାଙ୍କର ଆମ୍ଭଠାରେ ଶ୍ରଦ୍ଧା ଅଛି, ଯେ ଆମ୍ଭମାନଙ୍କର ଗୁଣର ପକ୍ଷପାତୀ ଅଟନ୍ତି ଏପରି ଲୋକଙ୍କୁ ମିତ୍ରତ୍ୱରେ ବରିଲେ ଆମ୍ଭର ଗୁଣୋତ୍କର୍ଷ ହେବ, ହେତୁକି ସେମାନଙ୍କର ପ୍ରଶଂସାରେ ଆମ୍ଭର ଉତ୍ସାହ ଦିନକୁ ଦିନ ବଢୁଥିବ । ଶ୍ରୋତୃବୃନ୍ଦକୁ ସହୃଦୟ ଓ ଅବହିତ ଜାଣିଲେ ବକ୍ତା ତୁଣ୍ଡରେ ସରସ୍ୱତୀ ଆବିର୍ଭୂତ ହୁଅନ୍ତି, ଗାୟକ କଣ୍ଠରେ ନାଦବ୍ରହ୍ମ ଆବିର୍ଭୂତ ହୁଅନ୍ତି; ମାତ୍ର ଏହାବୋଲି, ଯେ ସରଳ ଭାବରେ ଆମ୍ଭକୁ ଅଯୋଗ୍ୟ ମଣନ୍ତି ତାଙ୍କଠାରେ କ୍ରୁଦ୍ଧ ହେବାର, ଅବା ତାଙ୍କୁ ଘୃଣା କରିବାର ଅବିହିତ ଅଟେ । ତାଙ୍କର ଚାରା ନାହିଁ । ତାଙ୍କ ବୁଦ୍ଧି ଓ ରୁଚି ବଳାତ୍କାର କରି ତାହାଙ୍କୁ ସେହି ମତ ଅବଲମ୍ବନ କରାଉ ଅଛି । ରୁଚି ବିଷୟରେ ସବୁ ଲୋକର କେବେ ଐକ୍ୟ ହେବ ନାହିଁ । ତର୍କ ରୁଚିକୁ ଫେରାଇ ପାରେ ନାହିଁ । ଈଶ୍ୱର ତାଙ୍କୁ ଏପରି ପ୍ରକୃତି ବିଶିଷ୍ଟ କରିଅଛନ୍ତି ଯେ ସେଥି ଯୋଗୁଁ ସେ ତୁମ୍ଭର ଗ୍ରନ୍ଥକୁ ଅସାର ମଣୁ ଅଛନ୍ତି, ଅବା ତୁମ୍ଭର ଗ୍ରନ୍ଥର ଉତ୍କର୍ଷ ଅନୁଭବ କରି ପାରୁ ନାହାନ୍ତି । ଏଥିରେ ତାଙ୍କର ଦୋଷ ନାହିଁ । ସରଳ ଭାବରେ ସେ ଯେଉଁ ମତ ଅବଲମ୍ବନ କରି ଅଛନ୍ତି ସେ ମତ ପ୍ରକାଶ କରିବା ନିମନ୍ତେ ତାଙ୍କର ସମ୍ପୂର୍ଣ୍ଣ ଅଧିକାର ଅଛି । ହଁ ତୁମ ଠାରେ ସେହି କଟୁମତ ବ୍ୟକ୍ତ କରିବାର ଶିଷ୍ଟାଚାର ବିରୁଦ୍ଧ ଅଟେ । ଏହା ସମସ୍ତେ ଏକବାକ୍ୟରେ ବୋଲିବେ, ଯେ ଅପରିହାର୍ଯ୍ୟ ପ୍ରୟୋଜନ ବେଳ ବ୍ୟତୀତ ଅନ୍ୟ ସମୟରେ କାହାରିକୁ କଟୁ କଥା ବୋଲିବାର ଅନୁଚିତ ! ପ୍ରୟୋଜନ ବିରହରେ ଯେବେ ତୁମ୍ଭେ କାହାରିକୁ ବୋଲ ଯେ, ତୁମ୍ଭେ ତାହାଙ୍କୁ ଅପଦାର୍ଥ ଜାଣ, ତୁମ୍ଭର ମତ ନିମନ୍ତେ ତୁମ୍ଭକୁ ଭର୍ତ୍ସନା କରିବାର ତାଙ୍କର ଉଚିତ ନୁହେ; ମାତ୍ର ବିନା ପ୍ରୟୋଜନରେ ତାଙ୍କଠାରେ ସେହି କଟୁ ମତ ପ୍ରକାଶ ଦ୍ୱାରା ତୁମ୍ଭର ଯେଉଁ ହିଂସା ସୂଚିତ ହେଲା ସେଥିପାଇଁ ତୁମ୍ଭକୁ ତିରସ୍କାର କରିବା ନିମନ୍ତେ ତାଙ୍କର ସମ୍ପୂର୍ଣ୍ଣ ଅଧିକାର ଅଛି । ସେ ଯେବେ ତୁମ୍ଭ ପ୍ରତିକୂଳରେ କାହାରି ଠାରେ କୌଣସି ମତ ପ୍ରକାଶ କରନ୍ତି, ଆଉ ସେହି ବ୍ୟକ୍ତି ଯେବେ ତୁମ୍ଭଠାକୁ ଆସି ତୁମ୍ଭକୁ ସେହି କଥା ଜଣାଏ, ତେବେ ପ୍ରଥମ ବ୍ୟକ୍ତିଙ୍କ ଉପରେ କ୍ରୁଦ୍ଧ ନ ହୋଇ ସେହି ଖଚୁଆ ଉପରେ କ୍ରୁଦ୍ଧ ହେବାର ଉଚିତ, ହେତୁ କି ସେ ଖଚୁଆ ତୁମ୍ଭର ମନୋଦୁଃଖର ହେତୁ ଅଟେ । ସେ କହି ନ ଥିଲେ ତୁମ୍ଭେ ଜାଣି ନ ଥାଆନ୍ତ, ଜାଣି ନ ଥିଲେ ତୁମ୍ଭର କଷ୍ଟ ହୋଇ ନ ଥାଆନ୍ତା ।

ଯେଉଁମାନେ ଆମ୍ଭର ସୁଖର ପକ୍ଷପାତୀ ଅଟନ୍ତି ସ୍ୱଭାବତଃ ସେମାନଙ୍କଠାରେ ଆମ୍ଭର ଶ୍ରଦ୍ଧା ଜାତ ହୁଏ। ଏହି ଶ୍ରଦ୍ଧା ନିରପେକ୍ଷ ନ୍ୟାୟସଂଗତ ନୁହେଁ। ମାତ୍ର ଅନେକ କଥା ନିରପେକ୍ଷ ନ୍ୟାୟସଙ୍ଗତ ନ ହୋଇ ମଧ୍ୟ ଆମ୍ଭମାନଙ୍କର ପ୍ରୀତିକର ହୁଏ। ଯେ ଲୋକ ତୁମ୍ଭର ଗୁଣ ପ୍ରଶଂସା କରନ୍ତି, ତୁମ୍ଭ ପ୍ରତି ମଧୁର ବାକ୍ୟ ପ୍ରୟୋଗ କରନ୍ତି ସ୍ୱଭାବତଃ ତାଙ୍କଠାରେ ତୁମ୍ଭର ସ୍ନେହ ହେବ। ଅନେକ ଦେଖିଲେ, ଅନେକ ଜାଣିଲେ ତୁମ୍ଭର ସେହି ସ୍ନେହ ହ୍ରାସକୁ ଲଭିବ। ସଂସାରର ଗତି ନୀତି ଯେମାନେ ସୂକ୍ଷ୍ମ ରୂପରେ ଜାଣି ଅଛନ୍ତି, ସେମାନଙ୍କର ମନ ଏପରି ଉଦାସୀନ ହୋଇଥାଏ ଯେ ସେମାନେ ପ୍ରଶଂସକକୁ ନିନ୍ଦୁକଠାରୁ ବିଶେଷ କରି ପାଞ୍ଚନ୍ତି ନାହିଁ। ମାତ୍ର ଏପରି ଔଦାସୀନ୍ୟ ଲଭିବା ପାଇଁ ବ୍ୟଗ୍ର ହେବ ନାହିଁ। କେହି କେହି ପ୍ରବୀଣ ଗ୍ରନ୍ଥକାର ନିଜ ଗ୍ରନ୍ଥର ପ୍ରଶଂସା ଶୁଣିଲେ ଆହ୍ଲାଦ ଲଭନ୍ତି; ମାତ୍ର ନିନ୍ଦା ଶୁଣିଲେ ବିରକ୍ତ ହୁଅନ୍ତି ନାହିଁ। ମନକୁ ଯେବେ ଏହିପରି କରିପାରିବ ତେବେ ସିନା ଶାନ୍ତି ଲଭିବ ?

ସରଳ ଭାବରେ କେହି ତୁମ୍ଭକୁ ନିନ୍ଦା କଲେ ତୁମ୍ଭ ମନରେ ଯେପରି ଭାବ ଉଦିତ ହେବ କୁଟିଳ ଭାବରେ ନିନ୍ଦା କଲେ ଅବଶ୍ୟ ସେଥିରୁ ଅନ୍ୟରୂପ ଭାବ ଉଦିତ ହେବ। ତୁମ୍ଭର ପ୍ରକୃତରେ ଦୋଷ ନ ଥିଲେ ସୁଦ୍ଧା ମିଛରେ ତୁମ୍ଭ ସମ୍ବନ୍ଧରେ କେହି ଅନୁଚିତ କଟୁମତ ପ୍ରକାଶ କରିବେ। ତୁମ୍ଭ ନାମରେ କଳଙ୍କ ରଟାଇବେ। ଏମନ୍ତ ସ୍ଥଳରେ ସେହି ପ୍ରତିକୂଳମତ ନିମନ୍ତେ ବିରକ୍ତ ନହୋଇ ବରଂ ସେହି ମତ-ପ୍ରକାଶ-ସୂଚିତ ହିଂସା ଓ ମିଥ୍ୟାବାଦିତା ଘେନି ତୁମ୍ଭର ମନ ବିଚଳିତ ହୋଇପାରେ। ତୁମ୍ଭେ କଅଣ କ୍ରୁଦ୍ଧ ହେବ ? ହଁ ! ଏମନ୍ତ କ୍ରୂର ଲୋକ ସଙ୍ଗେ କାରବାର କରିବାର ଉଚିତ ନୁହେ, ଏପରି ଲୋକ ସଂସର୍ଗରେ ତୁମ୍ଭର ମହାନ୍ ଅନିଷ୍ଟ ଘଟିପାରେ। ଏଣୁକରି ସାବଧାନ ହେବ, ମାତ୍ର କ୍ରୁଦ୍ଧ ହେବ ନାହିଁ। କ୍ରୁଦ୍ଧ ହେଲେ ନିଆଁ କୁହୁଳିବ ସିନା ? ଲିଭିବତ ନାହିଁ ! ଅନେକ ଭାଳି ଦେଖିଲେ ଜାଣିବ ଏପରି ନୀଚ ପ୍ରକୃତିକ ଲୋକ ଉପରେ କ୍ରୁଦ୍ଧ ହେଲେ ଆଉତ କିଛି ହେବ ନାହିଁ କେବଳ ତୁମ୍ଭର ମନର ଶାନ୍ତି ବିଚଳିତ ହେବ। ତୁମ୍ଭେ ଭାଳୁଅଛ ''ବିନା କାରଣରେ ବୃଥାରେ ମୋହର ଗ୍ଲାନି କଲା''। ନିନ୍ଦୁକ ଭାଳୁଚି ''ତୁମ୍ଭକୁ ନିନ୍ଦା କରିବାର ଅନେକ ହେତୁ ଅଛି''। ସେ ନିମନ୍ତ୍ରଣ କରିଥିଲା ତୁମ୍ଭେ ଯାଇ ନାହଁ। ସେ ତୁମ୍ଭକୁ ଋଣ ମାଗିଥିଲା, ଦେଇ ନାହଁ, ତା ପୁଅ ତୁମ୍ଭଠାକୁ ଆସିଲା ତାକୁ ଥରେ କାଖେଇଲ ନାହିଁ। ଏଗୁଡ଼ିକ ଭଲ କାରଣ ନୁହେଁ; ମାତ୍ର କାରଣତ ? ଚଳିବ ନାହିଁ। ଦେଖ ସମସ୍ତେ ଦୋଷୀଟି ? ତୁମ୍ଭର ଏହିପରି ଦୋଷ କେତେ ଥିବ ? ଏପରି ନ ଥାଉ, ଅନ୍ୟ ଦୋଷ ଥିବ କ୍ଷମା ଲଭିବତ କ୍ଷମାକର।

# ଧନଞ୍ଜୟ ସିଂହ

## ପ୍ରଥମ ପରିଚ୍ଛେଦ

ଭାରତବର୍ଷର ଦକ୍ଷିଣ ପଶ୍ଚିମ ଭାଗରେ କାନାଡ଼ା ନାମକ ଏକ ପ୍ରଦେଶ ଅଛି । ସେହି ପ୍ରଦେଶର ପଶ୍ଚିମ ଦିଗରେ ମଳୟଭୂଧର । ଏହି ପର୍ବତ କୁମାରିକା ଅନ୍ତରୀପଠାରୁ ନର୍ମଦା ନଦୀ ପର୍ଯ୍ୟନ୍ତ ବିସ୍ତୃତ । ଆରବ୍ୟ ସାଗରର ସନ୍ନିହିତତାବଶତଃ ଗଣ୍ଡଶୈଳ ଶ୍ରେଣୀ ସାଗର ତରଙ୍ଗ ମାଳାଦ୍ୱାରା ଆହତ ହୁଅନ୍ତି । ଚଞ୍ଚଳ ଅମ୍ବୁରାଶିର କଳକଳ ଧ୍ୱନି ଗିରିଗହ୍ୱରମାନଙ୍କରେ ପ୍ରବିଷ୍ଟ ହୋଇ ପ୍ରତିଶବ୍ଦ ଯୋଗୁଁ ଗମ୍ଭୀର ଘନଗର୍ଜନ ପ୍ରାୟ ବୋଧହୁଏ । ଆଧିତ୍ୟକା ପ୍ରବେଶ ବହୁବିଧ ତରୁଲତାମାନଙ୍କରେ ପରିପୂର୍ଣ୍ଣ । କେଉଁଠାରେ ତମାଳ ବୃକ୍ଷ ପଂକ୍ତିବଦ୍ଧ, କେଉଁଠାରେ ଉଚ୍ଚ ଉଚ୍ଚ ଦେବଦାରୁ ପାଦପ, କେଉଁଠାରେ କଣ୍ଟକାକୀର୍ଣ୍ଣ ବଂଶସମୂହ, କେଉଁଠାରେ ଅବା ଘନ ପଲ୍ଲବାକୀର୍ଣ୍ଣ ଶାଳ । ମହିରୂହମାନେ ବିରାଜିତ ଅଛନ୍ତି । ସ୍ଥାନେ ସ୍ଥାନେ ପର୍ବତର ଶୃଙ୍ଗ ଅତୀବ ଉନ୍ନତ । ଉପରେ ଦଣ୍ଡାୟମାନ ହେଲେ ସମୁଦ୍ର ମଧ୍ୟସ୍ଥ ବହୁଦୂରସ୍ଥିତ ଅର୍ଣ୍ଣବପୋତମାନେ ଦୃଷ୍ଟିଗୋଚର ହୁଅନ୍ତି । କୌଣସି କୌଣସି ଅଂଶରେ ପର୍ବତ ଦ୍ୱିଧାକୃତ; ଏଣୁ ପୂର୍ବ ପ୍ରଦେଶର ଅଧିବାସୀମାନେ ଅକ୍ଲେଶରେ ସମୁଦ୍ର ତଟକୁ ଗମନାଗମନ କରିପାରନ୍ତି । ସେହି ଅଂଶମାନଙ୍କରେ ସେମାନେ ଅନାୟାସ ସଞ୍ଚରଣ ଯୋଗ୍ୟ କୃତ୍ରିମ ମାର୍ଗ ପ୍ରସ୍ତୁତ କରିଥାନ୍ତି ।

ରଜନୀ ଦୁଇପ୍ରହର । ଯାବତୀୟ ପ୍ରାଣୀ ନିଦ୍ରାଭିଭୂତ । ସାଗରର କଳକଳ ଧ୍ୱନି ବିନୁ ଅନ୍ୟ ଗୋଟିଏ ଶବ୍ଦ କର୍ଣ୍ଣଗୋଚର ହେଉ ନାହିଁ । ଏମନ୍ତ ସମୟରେ ଜଣେ ଅଷ୍ଟାଦଶବର୍ଷୀୟ ଯୁବାପୁରୁଷ ଅଶ୍ୱାରୂଢ଼ ହୋଇ ସମୁଦ୍ରତୀର ଦେଇ ଯାଉଥିଲେ । ଯୁବାଙ୍କର ନାମ ଧନଞ୍ଜୟ ସିଂହ । ଅଶ୍ୱ ପରିଶ୍ରାନ୍ତ ହେବାରୁ ତାହା ମୁଖରୁ ଫେଣ ନିର୍ଗତ ହେଉଥିଲା । ଯୁବା ଘୋଟକ ପୃଷ୍ଠାସୀନ ହେଲେହେଁ ତାହାର କ୍ଳାନ୍ତି ଆଡ଼କୁ ତାହାଙ୍କର ଦୃଷ୍ଟି ନ ଥିବ । ବସ୍ତୁତଃ ସେ କୌଣସି ଗରୀୟସୀ ଚିନ୍ତାରେ ମଗ୍ନଥିଲେ । ତାହାଙ୍କର କଟୀଦେଶରେ ଖଣ୍ଡିଏ କୋଷାବୃତ ତୀକ୍ଷ୍ଣଧାର ଅସି, ପୃଷ୍ଠଭାଗରେ ଚର୍ମଫଳକ ଝୁଲୁଥିଲା । ବସ୍ତ୍ର ପରିଧାନ କରିଥିଲେ । ମସ୍ତକରେ ଗୋଟିଏ କନକତାର ମଣ୍ଡିତ ଶିରସ୍ତ୍ରାଣ ଥିଲା । ଯୁବାଙ୍କର ଆକୃତି ପରମ ରମଣୀୟ । ସର୍ବାଙ୍ଗ ନବ ଯୌବନ ସୁଲଭ କାନ୍ତିରେ ଅଳଂକୃତ । ଅଧିକ ଅବା କି କହିବୁଁ ତାହାଙ୍କର ପ୍ରତ୍ୟେକ ଅବୟବ ଶରୀରର ଅବଶିଷ୍ଟ ଭାଗର ଭୂଷଣ ପ୍ରାୟ ହୋଇଥିଲା । ତାହାଙ୍କର ସୁବିସ୍ତୃତ ବକ୍ଷସ୍ଥଳ,

ସୁପ୍ରଶସ୍ତ ଲଲାଟ, ବର୍ତ୍ତୁଳ ବାହୁଯୁଗଳ ଦର୍ଶନ କଲେ ବୋଧ ହୁଅଇ ଯୌବନ ସ୍ୱକାର୍ଯ୍ୟ କୁଶଳ ମୂର୍ତ୍ତିଧାରଣ କରିଅଛନ୍ତି ।

କିଛି ଦୂର ଗମନାନ୍ତେ ଯୁବା ଗୋଟିଏ ପ୍ରକାଣ୍ଡ ବଟ ବୃକ୍ଷ ଦେଖିଲେ । ମାର୍ଗଶ୍ରମରେ ନିତାନ୍ତ ପରିଶ୍ରାନ୍ତ ହୋଇଥିଲେ; ସୁତରାଂ ତୁରଗରୁ ଅବତୀର୍ଣ୍ଣ ହୋଇ ପ୍ରାଗୁକ୍ତ ତରୁର ଅଧଃ ପ୍ରଦେଶରେ ଘୋଟକ ବନ୍ଧନ କରି ସେଠାରେ ଉପବିଷ୍ଟ ହେଲେ । କରତଳେ କପୋଳ ବିନ୍ୟସ୍ତ କରି କିୟତ୍କାଳ ଭାବନାଚିତ ହେଲେ । ଦୀର୍ଘନିଶ୍ୱାସ ପରିତ୍ୟାଗ କଲେ, ନେତ୍ର ଦ୍ୱୟରୁ ଲୋତକ ବିଗଳିତ ହେଲା । ''ହା ତାତ କେଉଁଠାକୁ ଗଲ'' ବାରମ୍ବାର ଏହି ଆକ୍ଷେପୋକ୍ତି କଲେ । ପର୍ଯ୍ୟାପ୍ତ ପରିମାଣ ଅଶ୍ରୁ ବିସର୍ଜନ କରି ପରିଶେଷକୁ ତାହାଙ୍କର ଶୋକାବେଗ କିଞ୍ଚିତ୍ ମନ୍ଦୀଭୂତ ହେଲା ।

ଯୁବା ସମସ୍ତ ଦିନ ଆହାର କରି ନ ଥିଲେ । ପୁଣି ପଥଶ୍ରମରେ ସାତିଶୟ କ୍ଳିଷ୍ଟ ହୋଇଥିଲେ, ପ୍ରବଳ ପିପାସା ତାହାଙ୍କୁ କାତର କଲା ମାତ୍ର ଏପରି ସ୍ଥଳରେ କି ରୂପେ ଅବା ଜଳ ପାଇବେ ? ଚତୁର୍ଦ୍ଦିକ ଘନାନ୍ଧକାରବୃତ । କିଛିହିଁ ଦୃଷ୍ଟିଗୋଚର ହେଉ ନାହିଁ । ନିକଟରେ ଜଳାଶୟ ଅଛି କି ନାହିଁ ଯୁବା ଅବଗତି ନଥିଲେ । କି କରିବେ କେଉଁଠାକୁ ଅବା ଯିବେ । ସେଠାରୁ ଲୋକାଳୟ ବହୁଦୂର । ଅତ୍ୟନ୍ତ ତୃଷା ପୀଡ଼ିତ ହୋଇ କହିଲେ ''ହା ! ଆମ୍ଭର ଏପରି ଦୁର୍ଦ୍ଦଶା ହେଲା, ଏହା କହି ପୁନର୍ବାର ରୋଦନ କରିବାକୁ ଲାଗିଲେ । ଶୋକାବେଗର ପ୍ରାବଲ୍ୟ ହେତୁରୁ ତୃଷାଜନିତ କଷ୍ଟ ବିସ୍ମୃତ ହେଲେ । ଅନନ୍ତର କରରୂପ ଉପାଧାନରେ ମସ୍ତକ ରଖି ଶୟନ କଲେ । ଏପରି ସମୟରେ କିପରି ଅବା ନିଦ୍ରାଗମ ହୋଇପାରେ ?

ଯୁବକ ସୁଶିକ୍ଷିତ ଥିଲେ । ସ୍ୱଭାବଶୋଭା ବିଲୋକନ କରି ମୋହିତ ହେଉଥିଲେ । ଶୋକଶାନ୍ତି ଉତ୍ତାରୁ ତାହାଙ୍କର ମାନସରେ ଏକ ଅନିର୍ବଚନୀୟ ଭାବ ଉଦିତ ହେଲା । ବିଶ୍ୱସ୍ରଷ୍ଟାଙ୍କର ଅସୀମ ମହିମା । ଈଦୃଶ ଶୋକାନ୍ୱିତ ମନୁଷ୍ୟର ହୃଦୟରେ ପ୍ରୀତି ରସର ସଞ୍ଚାର ହେଲା । ଯୁବା ବଟବୃକ୍ଷର ଊର୍ଦ୍ଧ୍ୱଭାଗକୁ ଦୃଷ୍ଟିପାତ କଲେ । ଦେଖିଲେ ଅବିରଳ ପତ୍ରପୁଞ୍ଜ ମଧ୍ୟରେ ସହସ୍ର ସହସ୍ର ହୀରକ ନିନ୍ଦିତ ଖଦ୍ୟୋତ ସଂଲଗ୍ନ ହୋଇ ରହିଅଛନ୍ତି । ସେମାନଙ୍କର ଜ୍ୟୋତିରେ ତରୁର ସର୍ବାଙ୍ଗ ରଞ୍ଜିତ ହୋଇଥିଲା । ଯୁବା ନିନିମେଷ ଲୋଚନରେ ଖଦ୍ୟୋତକ୍ରୀଡ଼ା ନିରୀକ୍ଷଣ କରି ନିରତିଶୟ ଆନନ୍ଦିତ ହେଲେ । ଗାତ୍ର ରୋମାଞ୍ଚିତ ହେଲା । କହିଲେ ଆହା ଏହି ବଟବୃକ୍ଷ ଖଦ୍ୟୋତାଳଂକୃତ ହୋଇ କି ଅନୁପମ ଶ୍ରୀଧାରଣ କରିଅଛି । ଜଗଦୀଶ୍ୱରଙ୍କର କି ମହୀୟସୀ ଶକ୍ତି, କି ଅଦ୍ଭୁତ ରଚନା କୌଶଳ । ଏହା କହି କିଛି କାଳ ଚିନ୍ତାରେ ସ୍ତବ୍ଧ ହୋଇରହିଲେ ।

ସେଦିନ ଦଶମୀ ତିଥି । ଏତେବେଳ ପର୍ଯ୍ୟନ୍ତ ଜଗତ୍ ଅନ୍ଧକାରରେ ବୁଡ଼ି ରହିଥିଲା । ଏବେ ଭଗବାନ୍ ଚନ୍ଦ୍ରମା ପ୍ରାଚୀଭାଗରେ ଉଦିତ ହେଲେ । ନିଶାକରର

କିରଣ ଗିରି ମହିରୂହ ପତ୍ରରେ ନିପତିତ ହୋଇ ସେମାନଙ୍କୁ ରଜତପ୍ରାୟ ଧବଳ ବର୍ଣ୍ଣ କଲା । ଧନଞ୍ଜୟ ସିଂହ ଗାତ୍ରୋତ୍ଥାନ କରି ଇତସ୍ତତଃ ସଞ୍ଚରଣ କରିବାକୁ ଲାଗିଲେ । ପୁଣି ପିପାସା ପ୍ରବଳ ହେଲା । ଗୋଟାଏ ଉନ୍ନତ ସ୍ଥାନରେ ଦଣ୍ଡାୟମାନ ହୋଇ ଚାରିଆଡ଼କୁ ଅନାଇଲେ । ଅଦୂରରେ ଗୋଟାଏ ପୁଷ୍କରିଣୀ ଦେଖିବାକୁ ପାଇଲେ । ପ୍ରକୃତ ପୁଷ୍କରିଣୀ ଦେଖୁଅଛନ୍ତି ଅବା ଭ୍ରମବଶତଃ ଏରୂପ ହେଉ ଅଛି ତାହାଙ୍କ ହୃଦୟରେ ଏହିପ୍ରକାର ସନ୍ଦେହ ସଞ୍ଜାତ ହେବାରୁ ସେହି ପୁଷ୍କରିଣୀ ଅଭିମୁଖେ ଗମନ କଲେ । ନିକଟରେ ଉପସ୍ଥିତ ହୋଇ ଦେଖିଲେ ପ୍ରକୃତ ପୁଷ୍କରିଣୀ । ଜଳ ଅତିଶୟ ନିର୍ମଳ, ତହିଁରେ ସୁଧାଂଶୁ ଛବି ପତିତ ହୋଇ ସେଥିରେ ଶୋଭା ବର୍ଦ୍ଧିତ କରିଅଛି । କୁମୁଦ ପ୍ରଭୃତି ପୁଷ୍ପ ପ୍ରସ୍ଫୁଟିତ ହୋଇଅଛି । ପୁଷ୍କରିଣୀ ତିନିଅଡ଼େ ଅରଣ୍ୟ, ଏକ ଦିଗରେ ଗୋଟାଏ ସୁରମ୍ୟ ଉପବନ ଥିଲା ।

ଧନଞ୍ଜୟ ସିଂହ ଜଳାଶୟରେ ଅବତୀର୍ଣ୍ଣ ହୋଇ ବାରି ପାନଦ୍ୱାରା ତୃଷ୍ଣା ଶାନ୍ତି କଲେ । ଜଳପାନ କରି ତଟକୁ ଆସି କିଛିକାଳ ବିଶ୍ରାମ କଲା ଅନ୍ତେ ଘୋଟକର କଥା ତାହାଙ୍କର ସ୍ମୃତିପଥରେ ଉଦିତ ହେଲା । ତତ୍‌କ୍ଷଣାତ୍ ପ୍ରାଗୁକ୍ତ ବଟତରୁ ଅଭିମୁଖେ ଧାବମାନ ହେଲେ । କିଛିଦୂର ଗଲା ବାଦ ଅଇ ଘୋର ବ୍ୟାଘ୍ର ଗର୍ଜନ ଶୁଣିଲେ; ମାତ୍ର କେଉଁଆଡ଼େ ଶବ୍ଦ ହେଉଅଛି ଏହା ସମ୍ୟକ୍ ବୁଝିପାରିଲେ ନାହିଁ । ବଟବୃକ୍ଷ ମୂଳରେ ଉପସ୍ଥିତ ହୋଇ ଦେଖିଲେ ସେଠାରେ ଘୋଟକ ନାହିଁ; ଇତସ୍ତତଃ ଶୋଣିତ ପଡ଼ିଅଛି । ଏହା ଦେଖି ବିଷାଦ ସାଗରରେ ନିମଗ୍ନ ହେଲେ । ଆତ୍ମରକ୍ଷା ନିମନ୍ତେ ସେ ଚିନ୍ତାନ୍ୱିତ ଥିଲେ ଏରୂପ ନୁହେ । ସାହସ କ୍ଷତ୍ରିୟମାନଙ୍କର ନୈସର୍ଗିକ ଧର୍ମ । ନିଜ ଅସାବଧାନତା ହେତୁରୁ ଅଶ୍ୱ ନଷ୍ଟ ହେଲା ଏହା ଭାବି ଅତୀବ ଦୁଃଖିତ ହେଲେ । ଅନନ୍ତର ଅସି ଚର୍ମ ଘେନି ପୁନର୍ବାର ପୂର୍ବୋକ୍ତ ସରୋବର ନିକଟକୁ ଗଲେ । ସେହି ସରୋବର ତୀରସ୍ଥ ଏକ ବୃକ୍ଷ ମୂଳରେ ଆସୀନ ହୋଇ ନାନା ବିଷୟରେ ଭାବନା କରିବାକୁ ଲାଗିଲେ । ଖେଦୋକ୍ତି କରି କହିଲେ "ହାୟ ଆମ୍ଭେ କେଉଁଠାରେ ଥିଲୁ", କେଉଁଠାକୁ ଆସି ଅଛୁଁ ବିଧାତା ଆମ୍ଭ ଅଦୃଷ୍ଟରେ ଏତେ କଷ୍ଟ ଲେଖିଅଛନ୍ତି ସ୍ୱପ୍ନରେ ସୁଦ୍ଧା ଏରୂପ ଭାବି ନଥିଲୁଁ । କେତେ ଦୁଃଖଭୋଗ କରି ଅଛୁଁ ଆହୁରି ଅବା କେତେ ଆପଦରେ ପଡ଼ିବାକୁ ହେବ ନ ଜାଣୁ; ହା ତାତ ! ପରିଣାମରେ ତୁମ୍ଭର ଏହି ଦଶା ହେଲା, ତୁମ୍ଭକୁ ସ୍ମରଣ କରି କିରୂପେ ଅବା ଧୈର୍ଯ୍ୟଧାରଣ କରିବୁଁ, ତୁମ୍ଭର ସେହି ଅସାଧାରଣ ବାତ୍‌ସଲ୍ୟ ସ୍ମରଣ କରି କିରୂପେ ଅବା ଶୋକାକୁଳିତ ହୃଦୟକୁ ସ୍ଥିର କରିବୁ, କି କଷ୍ଟ" ।

ଏହିରୂପେ କିଛିକାଳ ରୋଦନ କରି ମୁଖପ୍ରକ୍ଷାଳନ ନିମନ୍ତେ ପୁନରାୟ ଜଳରେ ପ୍ରବିଷ୍ଟ ହେଲେ । ବଦନ ପ୍ରକ୍ଷାଳନାନ୍ତେ ବୃକ୍ଷମୂଳକୁ ଫେରି ଆସିବା ବେଳେ ସନ୍ଧ୍ୟା

ବନ୍ଦନାଦି କିଛି କରି ନାହାନ୍ତି ଏହା ମନରେ ପଡ଼ିଲା । ସନ୍ଧ୍ୟାକୃତ୍ୟ ସମାପନ କରି ଊର୍ଦ୍ଧ୍ୱ ମୁଖ ହୋଇ ଅଞ୍ଜଳିବଦ୍ଧ କରି କହିଲେ ''ହେ ପ୍ରଭୋ ! ତୁମ୍ଭେ ସର୍ବବ୍ୟାପୀ, ସର୍ବଶକ୍ତିମାନ୍, ଆମ୍ଭେ ଅଧୁନା ଘୋର ବିପଦରେ ପଡ଼ି କାତର ସ୍ୱରରେ ତୁମ୍ଭର ଦୟା ପ୍ରାର୍ଥନା କରୁଅଛୁଁ । ଆମ୍ଭକୁ ଏହି ଦୁଃଖାର୍ଣ୍ଣବରୁ ଉଦ୍ଧାର କରିବ, ଏମନ୍ତ କେହି ନାହିଁ ଆମ୍ଭେ ସଂପ୍ରତି ଅଶରଣ, ବନ୍ଧୁହୀନ । ପ୍ରଭୋ ! ଆତୁରକୁ କୃପା ଦୃଷ୍ଟି ବିତରଣ କର'' ।

ପ୍ରାର୍ଥନା ଅନ୍ତେ ବୃକ୍ଷତଳେ ଶୟନ କଲେ । ମନଃ କିଞ୍ଚିତ୍ ସ୍ଥିର ହୋଇଥିଲା । ସନ୍ତାପହାରିଣୀ ନିଦ୍ରା, ନେତ୍ରରେ ଆବିର୍ଭୂତ ହେଲେ । ନିଦ୍ରାଙ୍କର ଶିରୀଷ କୋମଳ ଅଙ୍କ ଦେଶରେ ଶୟାନ ହୋଇ ଧନଞ୍ଜୟ କିଛିକାଳ ନିମିତ୍ତ ଆତ୍ମଦୁଃଖ ବିସ୍ମରଣ ହେଲେ ।

ପ୍ରତ୍ୟୁଷ ସମୟରେ ଯୁବାଙ୍କର ନିଦ୍ରାଭଙ୍ଗ ହେଲା । ପ୍ରାତଃକୃତ୍ୟାଦି ସମ୍ପାଦନ କରି ପୂର୍ବ କଥିତ ଉଦ୍ୟାନରେ ପ୍ରବିଷ୍ଟ ହୋଇ ଦେଖିଲେ ସେହି ଉଦ୍ୟାନରେ କେହି ନାହିଁ । ଉଦ୍ୟାନର ଦକ୍ଷିଣ ଆଡ଼େ ଗୋଟାଏ ସୁବିସ୍ତୃତ ରାଜପଥ ଦେଖିଲେ । ଅନନ୍ତର ସେହି ମାର୍ଗ ଅନୁସରି ଚଳିଲେ ।

**ପ୍ରଥମ ପରିଚ୍ଛେଦ ସମାପ୍ତ**

---

## ଶ୍ମଶାନ

ଅସ୍ତ ହେଲେ ରବି ଗ୍ରହ ରାଜ ଦିନମଣି
ତାରାମୟ ହାର ପିନ୍ଧି ଆସିଲା ରଜନୀ ।।
ଚନ୍ଦ୍ରମାର ସୁଧାକରେ ପ୍ରଫୁଲ୍ଲ ଭୁବନ
ମନ୍ଦ ମନ୍ଦ ବହେ ଗନ୍ଧବହ ସମୀରଣ ।।
ନୀଳାମ୍ବର-ଆଲିଙ୍ଗନେ ଅଧୀର ହୃଦୟ
ପ୍ରସାରଇ ସିନ୍ଧୁବନ୍ଧ ନୀଳମଣି ମୟ ।।
ଭ୍ରମିଲି ଏସନ କାଳେ ଅମ୍ବୁ ପତି ତଟେ
କଳ୍ପନା ଚିତ୍ରିଲା କେତେ ଛବି ଚିତ୍ର ପଟେ ।
ଭ୍ରମୁଭ୍ରମୁ ଏକସ୍ଥାନେ ହେଲି ଉପନୀତ
ଭୀଷଣ ଶ୍ମଶାନ ଯହିଁ ଅଟେ ବିରାଜିତ ।।

ଅସ୍ଥିମାଳା ନରମୁଣ୍ଡେ ଧବଳିତ ଦେଶ
ଭସ୍ମରାଶି ଚିତାନଳେ ବିକଟ ବିଶେଷ ॥
ଭୀମନାଦେ ଚଉପାଶେ ବେଢ଼ି ଶିବା ଗଣ
କ୍ରୂର ହର୍ଷ ଶବରାଶି କରନ୍ତି ଭକ୍ଷଣ ॥
ପଡ଼ନ୍ତେ ନୟନ ମୋର ଏଭୀଷଣ ସ୍ଥଳ ॥
ଚମକିତ ଚିତ୍ତ କ୍ଷଣେ ହୋଇଲା ନିଶ୍ଚଳ ॥
ନ ଦିଶିଲା ଧରା କିମ୍ବା ସାଗର ଗଗନ
ଘୋର ଅନ୍ଧକାରେ ମନ ହୋଇଲା ମଗନ ॥
ନିବାତ୍ ନିଷ୍କମ୍ପ ହ୍ରଦେ ତରଙ୍ଗ ଯେସନ ॥
ନ ସ୍ଫୁରିଲା ଭାବ-ଉର୍ମି ଚିତ୍ତରେ ତେସନ ॥
କ୍ରମେ ଏ ଭାବନା ହୃଦୁ ହେଲା ତିରୋହିତ
ସ୍ମୃତିନଭେ ବହୁ ଛବି ହୋଇଲା ଉଦିତ ॥
ଗମ୍ଭୀର ଭାବ ସଂକୁଳ ହୋଇଲା ମାନସ
ବର୍ଷାଗମେ ହିଂସେ ଯଥା ବେଢ଼ନ୍ତି ମାନସ ॥
ସ୍ୱର୍ଗୀୟ ଆନନ୍ଦ ଶିରୀ ମୃତ ମାତାଙ୍କର
ନବୀନ କୁସୁମ ପ୍ରଭା ମୃତ ଭଗିନୀର ॥
ମୃତଜ୍ଞାନ ଦାତା ପଣି ମୃତ ପରିଜନ
ନୟନ ଅଗ୍ରତେ ଯେହ୍ନେ ନାଚିଲେ ତତ୍କ୍ଷଣ ॥
ମଧ୍ୟେ ମଧ୍ୟେ ଜନ୍ମଭାବି ଜୀବନର କଥା
ସ୍ୱର୍ଗର ଆହ୍ଲାଦ ରାଶି ନରକର ବ୍ୟଥା ॥
ଏମନ୍ତ ବହୁତ ଭାବ ହୃଦୟ ଅମ୍ବରେ
ବିଜୁଳି ସମାନ ଉଇଁ ଲଭିଲେ ସତ୍ୱରେ ॥
ସଂସାରର ଅନିତ୍ୟତା-ତତ୍ତ୍ୱ ଚିନ୍ତା ଘନ
ଅବଶେଷେ ମାନସକୁ କରିଲା ଆଚ୍ଛନ୍ନ ॥
ଚିରସ୍ଥାୟୀ ନୁହେ କିଛି ସକଳ ଅସ୍ଥିର
ଜୀବନ ଯୌବନ ଧନ ନଳିନୀର ନୀର ॥
ରଜା ପ୍ରଜା ମୂର୍ଖ ଜ୍ଞାନୀ ଦୁଃଖୀ ଧନବାନ
ନିଷ୍ଠୁର ଶମନଠାରେ ସମସ୍ତେ ସମାନ ॥
ବୃଥା ନର ଅହଙ୍କାର, ପଦର ଗୌରବ
ନିମେଷେ ବିଲୋପୀ କାଳ କରେ ସବୁ ଖର୍ବ ॥
ଉଚ୍ଚ ଅଭିଳାଷୀ ଯେଉଁ ମଦ-ମତ୍ତ ନର

ପ୍ରତିବାସୀ ପୂର୍ବ ନାଶେ ସର୍ବଦା ତତ୍ପର ।।
ପାସୋରି ମତ୍ସର ଭାବ ଚିରକାଳ ପାଇଁ
ଏହି ସ୍ଥାନେ ସେହି ବ୍ୟକ୍ତି ନୟନ ମୁଦଇ ।।
ସମର ମଦରେ ମାତି ଯେଉଁ ବୀର ବର
ଭୀଷଣ ବଳରେ ନାଶି ଅରାତି ନିକର ।।
ଲଭେ ଅରିନ୍ଦମ ନାମ ଏଭବ ଭବନେ
ପାସୋରି ବିଜୟ ଚିନ୍ତା ଯଶୋରୂପ ଧନେ
ନିଦ୍ରାରେ ମଗନ ସେହି ଭସ୍ମ ଅସ୍ତରଣେ
ପ୍ରିୟପତି ଅଙ୍କ ଛାଡ଼ି ନବୀନା କାମିନୀ
କାଳ ବଶେ ଏହିଠାରେ ଭସ୍ମ ବିଳାସିନୀ ।।
ଘୋଟିଲେ ପୟୋଦ, ରବି ବାସର ଯୌବନେ
ଅନ୍ଧକାର କରି ବିଶ୍ୱ ନାଚନ୍ତି ଗଗନେ ।।
ସେହିପରି ତମୋମୟକରି ନିଜ ଘର
ପଡ଼ନ୍ତି ଯୁବକ କେତେ ଶମନ ମୁଖର ।।
ନବବିକଶିତ ପୁଷ୍ପ ସମାନ ସୁନ୍ଦର
କେତେ ନବଶିଶୁମାତା ପିତା ମନୋହର ।
ଅକାଳେ ଜନନୀ କୋଳୁଁ ହୋଇ ବିଶ୍ଳେଷିତ
ହୁଅନ୍ତି ଭୀମଶ୍ମଶାନ ଗର୍ଭରେ ନିହିତ ।।
ଯମର ତାଡ଼ନେ ଏହି ପରି ଜୀବରାଶି
ହୁଅନ୍ତି ସକଳ ତେଜି ଶ୍ମଶାନ ନିବାସୀ ।

## କାଳିଦାସ

### ପୂର୍ବ ପ୍ରକାଶିତ ଉତ୍ତାରୁ

ଏଣୁ-ନାଟକରଚନା-ଉତ୍କୃଷ୍ଟ ନାଟକ ରଚନା ଅଳ୍ପ ଶକ୍ତି ସାପେକ୍ଷ ନୁହେ । ସତେ ଯେମନ୍ତେ ଘଟୁ ଅଛି; ଏପରି ଲେଖିବାର ଇଚ୍ଛା ଥିଲେ ସତେ ଯେପରି ଘଟିଥାଏ ସେହିପରି ଲେଖିବାର ଉଚିତ । ସତେ ଯେମନ୍ତ ଘଟିଥାଏ ତାହା ଟିକଟିକ କରି ଯେବେ ନ ଦେଖିବ, ଘଟନାରେ ଯେଉଁମାନେ ଲିପ୍ତ ଅଛନ୍ତି ସେମାନଙ୍କ ଭାବଭଙ୍ଗୀ ଏକ ଆନ୍ତରିକ ଅଭିପ୍ରାୟ ଯେବେ ସୂକ୍ଷ୍ମ ରୂପରେ ନ ଦେଖିବ, ଦେଖିଲେ ସୁଦ୍ଧା ଅନୁରୂପ

ବର୍ଣ୍ଣନା କରିବାକୁ ଯେବେ ତୁମ୍ଭର ଶକ୍ତି ନ ଥିବ, ତେବେ ନାଟକ ରଚନାରେ ଆୟାସ କରିବାର ବୃଥା ଅଟେ ।

ଉତ୍କୃଷ୍ଟ ନାଟକ କାହାକୁ କହି ? ଏହାର ଉତ୍ତର ଅଜ୍ଞ ଲୋକେ ସହଜ ମନେ କରନ୍ତି; ମାତ୍ର ଯେଉଁମାନେ ଉତ୍କୃଷ୍ଟ ସାହିତ୍ୟମାନଙ୍କରେ କିଞ୍ଚିତ୍ ବ୍ୟୁତ୍ପତି ଲଭି ଅଛନ୍ତି ସେମାନେ ଏହି ପ୍ରଶ୍ନର ଉତ୍ତର ସେପରି ସହଜ ମଣିବେ ନାହିଁ । ନାଟକରେ କେତେକ ଲୋକେ ପ୍ରବେଶ ହୋଇ ପରସ୍ପର କଥାବାର୍ତ୍ତା କହନ୍ତି କବି ତୁନୀ ହୋଇଥାନ୍ତି । ମାତ୍ର ଏହା ନାଟକର ବହିରାକୃତି ଅଟେ । ଆଠ ଦଶଜଣ ଏକଠାରେ ବସି ଚିରକାଳ ଗପୁ ଥିବେ, ସେଥିରେ କାହାର କୌଣସି ଆନ୍ତରିକ ଅବା ବାହ୍ୟିକ ପରିବର୍ତ୍ତନ ହେଉ ନ ଥିବ । ବସିଲା ବେଳେ ଯେପରି ଥିଲେ ଗଲାବେଳେ ସେହିପରି ଯିବେ । ଏପରି ସ୍ଥଳରେ ସେମାନଙ୍କର କଥୋପକଥନ ସହସ୍ର ମନୋହର ହେଲେହେଁ ସେଥିରେ ନାଟକୀୟ ଛଟା ଥିବାର କେହି ସ୍ୱୀକାର କରିବେ ନାହିଁ । ଦୁଇଜଣ ତାର୍କିକ ମଧ୍ୟରେ ବିତଣ୍ଡା ହେଉଅଛି । ଜଣେ ଜଣକୁ କୌଣସି ବିଷୟର ସଂଜ୍ଞା ନିର୍ଦ୍ଦେଶ କରିବାକୁ କହିଲେ, ପୃଷ୍ଟବ୍ୟକ୍ତି ଆପଣା ମତ ଅନୁସାରେ ସଂଜ୍ଞା ନିର୍ଦ୍ଦେଶ କଲେ । ପ୍ରଷ୍ଟା ପ୍ରତିପକ୍ଷ କଲେ । ଆନ ବ୍ୟକ୍ତି ପ୍ରତିପକ୍ଷର ପ୍ରତିପକ୍ଷ କଲେ । ପ୍ରଷ୍ଟା ପୁଣି ଖଣ୍ଡନ କଲେ । ପରିଭୂତ ବ୍ୟକ୍ତି ଏଆଡୁ ସେ ଆଡୁ ଗୁଳାଇବାକୁ ଉପକ୍ରମ କଲେ । ମୁହଁ ଶୁଖି ଗଲା । ଆଉ ବାଟ ନାହିଁ ପଛକୁ ପ୍ରଷ୍ଟା ମତ ନ ମାନି ଚାରା ନାହିଁ ଦେଖି ସମ୍ମତି କଲେ । ଏପରି କଥୋପକଥନରେ ନାଟକୀୟ ଛଟା ଅଛି ଏହା ଅବ୍ୟାଜରେ ସ୍ୱୀକାର କରିବାକୁ ହେବ । ହେତୁକି ଏହି ଟିକକ ଭିତରେ କେତେ ପରିବର୍ତ୍ତନ ହେଲା, ଦୁଇ ପକ୍ଷର ମୁହଁ କେତେ ଥର କେତେ ଭାବ, କେତେ ବର୍ଣ୍ଣ ଧାରଣ କଲା । ମନରେ ଶଙ୍କା, ହିଂସା, ସନ୍ଦେହ, କ୍ରୋଧ, ଜିଗୀଷାପ୍ରବୃତ୍ତ ବୃତ୍ତିମାନଙ୍କର କେତେ ଥର ସ୍ଫୂର୍ତ୍ତି ହେଲା । ହୃଦୟ କେତେ ଥର କମ୍ପିଲା ।

ନାଟକର ସାର ଓ ପ୍ରଧାନ ମୋହିନୀ ଶକ୍ତି କଣ ଅଟେ ଉଲ୍ଲିଖିତ ଦୃଷ୍ଟାନ୍ତରରୁ ତାହା ଜଣାଯିବ । ପ୍ରବୃତ୍ତି ଜୀବନର ପ୍ରଧାନ ସୁଖ ଅଟେ । ପ୍ରଧାନ ସୁଖ କିପାଇଁ ପ୍ରବୃତ୍ତିକୁ ଜୀବନର ନାମାନ୍ତର କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଳ୍ପସ୍ଥାନ ଓ କାଳ ଭିତରେ ବହୁ ଘଟନା ଘଟୁଥାଏ, ନାୟକ, ଉପନାୟକମାନେ ସର୍ବଦା ପ୍ରବୃତ୍ତି ମାର୍ଗ ଆଶ୍ରୟ କରନ୍ତି, ଥରକୁ ଥର ଭାବ ପରିବର୍ତ୍ତନ, ମତ ପରିବର୍ତ୍ତନ, ଅବସ୍ଥା ପରିବର୍ତ୍ତନ ହେଉଥାଏ, ପଛକୁ କଣ ହେବ ଦ୍ରଷ୍ଟାର ଏହି ଆକାଂକ୍ଷା ସବୁବେଳେ ଜାଗରୂକ ଥାଏ; ମନ ଆନ ଦିଗକୁ ଯାଏ ନାହିଁ, ସେଥିରେ ଆନ ଦୋଷ ଯେତେ ଥାଉ ସେ ପୁସ୍ତକକୁ ନାଟକ ଲକ୍ଷଣାକ୍ରାନ୍ତ ବୋଲିବାକୁ ହେବ । ଗୋଡ଼ାଏ କଣ କହିବୁ ନାଟକ ପ୍ରବୃତ୍ତି ସାର ଅଟେ ।

(କ୍ରମଶଃ)

# ରହସ୍ୟ

ରାମଧନ ନାଗ ନାମରେ ଜଣେ ବାଲେଶ୍ୱର କଚେରିରେ ଅମଲା ଥିଲେ, ଗ୍ରାଣ୍ଟ ନାମକ ଜଣେ ନୂଆ କିଲେଟର ଆସିଲାରୁ ତାହାଙ୍କର ଅତ୍ୟନ୍ତ ପ୍ରିୟ ହେଲେ । ଭିତରେ ବିଦ୍ୟା ଥାଉ ଅବା ନ ଥାଉ ବାହାରେ ଚାଲାକି ଦେଖାଇଲେ ଉଦାରମତି ସାହେବମାନେ ମୁଗ୍ଧ ହୁଅନ୍ତି । ରାମଧନ ବଡ଼ ଚାଲାକ, ଯାହା ମନକୁ ଆସେ ବୋଲନ୍ତି । ସାହେବ ବୁଝିଲେ ସେ ଜଣେ ଉତ୍ସାହପୂର୍ଣ୍ଣ, ସ୍ୱାଧୀନମନା ଲୋକ । ରାମଧନ ଅନେକଥର ସାହେବଙ୍କ କୁଠିକୁ ଯାଉଥିଲେ । ଦିନେ ଯାଇ ଗୋଟିଏ ଅମଲା ନାମରେ ଖଚ କହିଲେ । ସାହେବ କିଛି କହିଲେ ନାହିଁ । ଆରଦିନ ନାଗ ଆଉଜଣଙ୍କ ନାମରେ ଖଚ କହିଲେ । ସାହେବ ଶୁଣି ମନରେ ବିରକ୍ତ ହେଲେ; ମାତ୍ର ରାମଧନଙ୍କ ମନ କଳିବା ସକାଶେ ତୁନି ହୋଇ ରହିଲେ ପୁଣି ରାମଧନ ଆଉ ଦିନେ ଯାଇ ଆଉଜଣଙ୍କ ନାମରେ ଖଚ କହିଲେ । ସାହେବ ବୋଇଲେ ''ହଁ ହଁ ତୁମ୍ଭେ ସେଦିନ କା ନାଁରେ କହିଥିଲଟି ?'' ରାମ କହିଲେ—ନାଁରେ ! ସାହେବ ତାଙ୍କ ନାମ ଲେଖିନେଲେ, ପୁଣି ସାହେବ ପଚାରିଲେ ''ତା ଆରଦିନ କା ନାଁରେ କହିଥିଲ ?'' ରାମ କହିଲେ— ବାବୁ, ସେ ବଡ଼ ମନ୍ଦଲୋକ'' । ସାହେବ ତାଙ୍କ ନାମ ମଧ୍ୟ ଲେଖିଲେ । ଏହି ରୂପରେ ରାମଧନ ୨୫।୩୦ ଦିନ ଜଣଜଣକ ନାମରେ ଖଚ କହିଲା ଉତ୍ତାରୁ ସାହେବ ଦିନେ ମିସଲକୁ ଆସି ସବୁ ଅମଲାମାନଙ୍କୁ ଡକାଇ ସମବେତ କଲେ । ରାମଧନଙ୍କୁ ମଧ୍ୟ ଡକାଇ ଆଣିଲେ । ଖଣ୍ଡେ ପୋଥି କାଢ଼ି ପ୍ରଥମରେ ରାମଧନ ଯାହା ନାଁରେ ଖଚ କହିଥିଲେ ତାଙ୍କୁ ସମ୍ବୋଧନ କରି ବୋଲିଲେ ''ହାଁଜି ତୁମ ଏସା ଆଦମି ହୋ, ରାମଧନ ବାବୁ ତୁମାରା ବାତ ଜାହିର କିଏ ଥେ'' । ଏହିପରି ସାହେବ ସମସ୍ତଙ୍କୁ କହି ହସିବାକୁ ଲାଗିଲେ । ସମସ୍ତେ ରାମଧନଙ୍କୁ କଟୁ ବୃଷ୍ଟି କଲେ । ସାହେବ ରାମଧନଙ୍କୁ ଯଥୋଚିତ ତିରସ୍କାର କରି ବୋଇଲେ ''ଖବରଦାର ଆର ଏଷା ମତ୍‌କରୋ'' । ଏହା ବୋଲି ସମସ୍ତଙ୍କୁ ଯଥାସ୍ଥାନକୁ ଯିବା ନିମନ୍ତେ ଆଦେଶ ଦେଲେ । ସମସ୍ତେ ଆସି ରାମଧନଙ୍କ ସଙ୍ଗେ ଯେପରି ମିଷ୍ଟାଳାପ କରିଥିବେ ପାଠକେ ଅନୁମାନ କରିପାରିବ । ନାଗ ପ୍ରକୃତ ନାଗ !

ଜଣେ ଗଡ଼ଜାତି କବି ଖଣ୍ଡେ କାବ୍ୟ ରଚନା କରି ଆପଣାର କୌଣସି ସହୃଦୟ ମିତ୍ରଙ୍କୁ ଦେଖାଇଲେ । ମିତ୍ର ଦେଖିଲେ ସେ ଅପ୍ରାସଙ୍ଗିକ ପ୍ରଚଳିତ ଶବ୍ଦରେ ଗ୍ରନ୍ଥ ମୂଳରୁ ଅଗ ଯାଏ ପରିପୂର୍ଣ୍ଣ । ତେଣୁ ବୋଇଲେ ''ତୁମ୍ଭର କବିତା ଭଲ ହୋଇ

ନାହିଁ'' କବି ବୋଇଲେ ''ତୁମ୍ଭେ ଦେଖ ଗ୍ରନ୍ଥ ଭିତରେ କ୍ ଅକ୍ଷର ନାହିଁ ଏ ଗୋଟିଏ ପ୍ରଶଂସାର ବିଷୟ ଅଟେ'' । ବନ୍ଧୁ ବୋଇଲେ ''କ ଠାରୁ କ୍ଷ ପର୍ଯ୍ୟନ୍ତ ସବୁ ଅକ୍ଷର ଛାଡ଼ି ଦେଇ ଥିଲେ ଆହୁରି ଭଲ ହୋଇ ଥାଆନ୍ତା'' ।

ଖଣ୍ଡିଏ ପୁସ୍ତକର ଭୂମିକାର ରଚନା ପୁସ୍ତକର ରଚନାଠାରୁ ଉତ୍କୃଷ୍ଟ ଦେଖି ଜଣେ ତାହାଙ୍କ ବନ୍ଧୁଙ୍କୁ କହିଲେ ''ଏପରି କଦର୍ଯ୍ୟ ପୁସ୍ତକ ସଙ୍ଗରେ ଏପରି ସରସ ଭୂମିକା ଥିବାର' ଅବହିତ । ବନ୍ଧୁ ହସି ବୋଇଲେ ଏ ଉପଯୁକ୍ତ ବିବାହ ହେତୁକି ଦୁହେଁ ଏକବଂଶୀୟ ନୁହନ୍ତି ।

କୌଣସି କବି ଖଣ୍ଡିଏ ଅଶ୍ଳୀଳ କାବ୍ୟ ରଚନା କରି ଆପଣାର କୌଣସି ବନ୍ଧୁଙ୍କୁ ଦେଖାଇଲେ । ବନ୍ଧୁ ବିରକ୍ତ ହୋଇ ବୋଇଲେ ଏପରି ଅଶ୍ଳୀଳ ରଚନା ପ୍ରକାଶ କରିବାର ଅବିହିତ କବି ବୋଇଲେ ''ମୁଁ ପ୍ରକାଶ କରିବା ଇଚ୍ଛାରେ ଏହା ରଚି ନାହିଁ, ମୋହର ରୋଗ ବେଳେ ଚିତ୍ତ ବିନୋଦନ ସକାଶ ଏହା ରଚି ଥିଲି ।'' ବନ୍ଧୁ ବୋଇଲେ ଯେ ରୋଗ ନିମନ୍ତେ ଏପରି ମନ୍ଦ ଔଷଧିର ପ୍ରୟୋଗନ ହୋଇଥିଲା ସେ ରୋଗ ଔଷଧଠାରୁ ଅଧିକ ମନ୍ଦ ହୋଇଥିବ ।

ବାଲେଶ୍ୱର ଇସ୍କୁଲର ପରୀକ୍ଷା କରୁ କରୁ ଜଣେ ପରୀକ୍ଷକ ଗୋଟିଏ ଛାତ୍ରକୁ ପଚାରିଲେ "afalpig" ଏହାର ଅର୍ଥ କ'ଣ ? ଛାତ୍ର ବୋଇଲା ''ଏକ ମୋଟା ଶୂଅରେର ବାହା'' । ପରୀକ୍ଷକ ବଡ଼ ଚତୁର ପଚାରିଲେ ''ମା ମୋଟା ନା ଛା ମୋଟା ?'' ଛାତ୍ର ବୋଇଲା ''ମା ମୋଟା'' ।

ଜଣେ ଉଡ଼ିୟା ଜଗନ୍ନାଥ ଦାଣ୍ଡରେ ଯାଉଥିଲା । ତା' ପଛେ ପଛେ ତା ଭାର୍ଯ୍ୟା ଯାଉଥିଲା । ଭାର୍ଯ୍ୟା ହାତରେ ଖଣ୍ଡେ ନିଆବଡ଼ ଥିଲା । ଜଣେ ବଙ୍ଗାଳୀ ଚିଲିମରେ ତମାଖୁ ସଜାଇ ନିଆଁ ଖୋଜୁଥିଲେ । ଉଡ଼ିଆକୁ ଦେଖି ପଚାରିଲେ ''ଓରେ ଓ କେ ଆସଚେ'' । ଉଡ଼ିଆ ବୋଇଲା ''ସେ ମୋ ମାଇପୋ'' । ବଙ୍ଗାଳୀ ଏହିତା ଶୁଣି ''ଓ ମାଇପୋ ଓ ମାଇପୋ'' ବୋଲି ନିଆଁ ମାଗିଲେ । ଉଡ଼ିଆ ଶୁଣି କ୍ରୋଧାନ୍ୱିତ ହୋଇ ବଙ୍ଗାଳୀଙ୍କୁ ବାଡ଼ିରେ ୩।୪ ପାହାର ପିଟିଲା ।

ଜଣେ ବଙ୍ଗାଳୀ ରାତ୍ରରେ କଟକରେ ପୌହୁଁଚିଲେ । ତାହାଙ୍କର ଜଣେ ବନ୍ଧୁ ବେହେରା ହାତରେ ତାହାଙ୍କଠାକୁ ପରିବା ପଠାଇଲେ । ବେହେରାକୁ ଦେଖି ନବାଗତ ବନ୍ଧୁ ପଚାରିଲେ ''କିରେ କୋଥାୟ ଏସେଚିସ'' ବେହେରା ବୋଇଲେ ''—ବାବୁ ପରିବା ପଠାଇ ଦେଇଛନ୍ତି'' । ନବାଗତ ବାବୁ ବୋଇଲେ ''ଆମିତ ସଙ୍ଗେ ପରିବାର ଆନି ନାଇଁ ପାଲିକି ଫିରିଏ ନିଏ ଯା'' । ବେହେରା ବୁଝି ନ ପାରି ବୋଇଲା ''ବାବୁ ପଠାଇଛନ୍ତି ଫେରାଇ ନେବି କିପରି'' ବାବୁ ବୋଇଲେ ''ଆର କି ତିନି ଏଖାନେ ଥାକ୍‌ବେନ୍'' । ବେହେରା ବୋଇଲା ''ବାବୁ ପଠେଇ ଛନ୍ତି ଆପଣ ନ ନେଲେ ସେଉଟା ଭଲ ହେବ ନାହିଁ ।'' ବାବୁ ବୋଇଲେ ''ସେ କିରେ ଆମାର

ବାସାୟ କୋନ ସ୍ତ୍ରୀ ଲୋକ ନେଇ; ରାତ୍ରେ ତାଁ'ର ପରିବାର ଏଖାନେ ଥାକବେନ କି କରେ''। ବେହେରା ବୋଇଲା ''ମୁଁ କ'ଣ କରିବି ସେ ପଠାଇଛନ୍ତି ମୋର ଚାରା କ'ଣ''। ବାବୁ କୁପିତ ଓ ବିସ୍ମିତ ହୋଇ ବୋଇଲେ ''ବଲିସ କି କୋୟ ତିନି କୋୟ''। ବେହେରା ଗାମୁଛା ଫିଟାଇ ଦେଖାଇଲା। ବାବୁ ହସିଲେ। ଆଉ ଲୋକକୁ ପଚାରି ବୁଝିଲେ ଉଡ଼ିଶ୍ୟାରେ କଞ୍ଚା-ତରକାରିକୁ ପରିବା ବୋଲନ୍ତି।

# ପ୍ରେରିତ ସଙ୍ଗୀତ

## ରାଗିଣୀ ଭୈରବୀ – ଝାମ୍ପତାଳ

ପରମପଦ ଚିନ୍ତମନ ଧରମ ପଥ କରରେ ସାର।
ଆଶା ନିଗଡ଼େ ଜଡ଼େ ଶରୀର, ସଂସାରୁ କେହ୍ନେ ହୋଇବୁ ପାର ॥ ଘୋଷା ॥
ଚରମ ଦଶା ହୃଦରେ ରଖ, ପ୍ରବଳ ରିପୁ ଷଡ଼ ଉପେଖ,
ସଖା ଧରମ ବଦନ ଦେଖ, ମଣ ସକଳ ଏଥି ଅସାର।୧।
ଆମ୍ଭ ଅଳପ ଦିନ ବିଦେଶୀ, ବେପାର କରେ ବିଦେଶେ ଆସି,
ଲାଭ ନ ଦିଶେ, ମୂଳ ବିନାଶେ, ବୃଥାରେ ପାଞ୍ଚେ ମିଥ୍ୟା ବେପାର।୨।
ସର୍ବଦା ଏହି ସଂକଳ୍ପକର, ବଦନେ ପରଂବ୍ରହ୍ମ ଉଚାର
ଗମିଲେ ଧନ ସଙ୍ଗେ ନ ଯିବ, ସଖା ସୁହୃଦ ବନ୍ଧୁ କାହାର।୩।
ଇନ୍ଦ୍ରିୟ ସୁଖେ ସଦା ମୋହିତ, ନ ଚିନ୍ତ ନିଜ ହିତ ଅହିତ,
ସମୟ ଶେଷ ନ ହୁଅ ନାଶ, ଭାବନା କର ମୁଁ ଅଟେ କାର।୪।

## ସିନ୍ଧୁ ଭୈରବୀ– ତାଳ ଯତ

କିଂଧନେ ଜଗତ ନାଥ, ସର୍ବ ଧନ ମୟରେ
ଅନାଥ ଜନଙ୍କ ନାଥ ତାଙ୍କୁ କର ଉଦୟରେ ॥ ଘୋଷା ॥
ଯାର କୃପାବସେ ଜ୍ଞାନ, ଯା କୃପାରେ ଧନମାନ
ନ ଚିହ୍ନେ ତାହାଙ୍କୁ ଜନ କି ଆଶ୍ଚର୍ଯ୍ୟ ହାୟରେ ॥ ୧ ॥
ବାଲ୍ୟ ଯୁବା କାଳ ଶେଷ, ବୃଦ୍ଧାବସ୍ଥା ପରବେଶ
ଯଦି ମୃତ୍ୟୁ ଧରେ କେଶ, ଅଛି କି ଉପାୟରେ ॥ ୨ ॥
ବୃଥା ଏ ସମ୍ପଦ ଚିନ୍ତା, ବୃଥା ଏ ପୁତ୍ର ବନିତା
ପରଂବ୍ରହ୍ମ ନାମ ଧରି, ଯଦି ଜୀବ ଯାୟରେ ॥ ୩ ॥

# ସମ୍ବାଦ

ଏହି ଫେବୃୟାରି ମାସ ୨୨ ତାରିଖ ବେଳ ୪ ଘଣ୍ଟା ସମୟରେ ବାଲେଶ୍ୱର ଅଦାଲତ କଚେରି ଠାରେ କେତେ ଗୋଡ଼ିଏ ମାଲ ନିଲାମ ହେଉଥିଲା । ସେଠାରେ ଜଣେ ଲୋକ ଆପଣା କୁରତା ପାକିଟିରେ ଟ.୧୪ଙ୍କା ରଖି ଅନ୍ୟମନସ୍କ ହୋଇ ଛିଡ଼ା ହୋଇଥିଲେ ସେଠାରେ କିଞ୍ଚିତ୍ ଗୋଳମାଳ ହୋଇଥିଲା । ଜଣେ ମଦତି ତାହା ଦେଖି ଅଜ୍ଞାତରେ କାଢ଼ିନେଲା । ବାବୁ ପରେ ଦେଖିଲେ ଯେ ଟଙ୍କା ନାହିଁ ଖୋଜିବାକୁ ଲାଗିଲେ । ଚୋର ଅଧେ ଟଙ୍କା ସଙ୍ଗୀକୁ ଦେଲା ଅନ୍ୟାର୍ଦ୍ଧରୁ ଟ.୬ଙ୍କା ଆପଣା କୌପିନୀ ମଧ୍ୟରେ ବାହ୍ୟ ଦ୍ୱାରଠାରେ ରଖି ଉପରେ ଖଣ୍ଡେ କନା ବେଢ଼ି ଦେଲା । ଆଉ ଗୋଟିଏ ଟଙ୍କା ଘେନି ଖଟିରେ ଉପସ୍ଥିତ ହୋଇ ବୋଇଲା ଚାରିଅଣାରୁ ମଦତ ଦେ ବାକି ଫେରାଇ ଦେ । ଦୋକାନୀ ବୋଇଲା ତୁ ଆଜି ଟଙ୍କା କେଉଁଠୁ ପାଇଲୁ ? ଏହା ଶୁଣି ସେଠାରେ ଜଣେ ପଠାଣ ବସିଥିଲା ସେ ତାହାକୁ ଧରି ଲୋଗା ଝାଡ଼ିବାରୁ ଟଙ୍କା ବାହାରିଲା । ଚୋର ଧରା ହୋଇ ବିଚାରାଧୀନ ଅଛି କି ହେବ ପରେ ଜଣାଇବୁଁ । ଧନ୍ୟ ମଦତ୍ !!

—

# ଉତ୍କଳଦର୍ପଣ ।

---

## ଇଟାଲୀୟ ଯୁବା ।

ଅନ୍ୟପ୍ରକାଶିତ ପତ୍ରରୁ ।

ଜେନୋଆ ନଗରର ଧନଶାଳୀ ନବାବିମାନେ ଯେଉଁ ଚିତ୍ରକରଙ୍କୁ ଯେଉଁ ମହିଳାମାନଙ୍କର ଛବି ନିମନ୍ତେ ଆଦେଶ ଦେଇ ଥିଲେ ତନ୍ମଧ୍ୟରେ ଲରାନାମ୍ନୀ ଗୋଟିଏ ରୂପବତୀ ବାଳିକା ଥିଲା । ସେହି ବାଳିକାର ଛବି ପ୍ରସ୍ତୁତ କରିବା ନିମନ୍ତେ ଚିତ୍ରକରଙ୍କଠାରୁ ଆଜ୍ଞା ପାଇଲୁଁ । ସେହି ସୁନ୍ଦରୀ କୁମାରୀ କୌଣସି ମଠରେ ଶିକ୍ଷାସମାପ୍ତି କରନ୍ତେ ଆପଣା ଛବି ପ୍ରସ୍ତୁତ କରାଇବା ନିମନ୍ତେ ମୋଠାରେ ଉପସ୍ଥିତ ହେଲା । ଅମ୍ଭେ ପ୍ରଥମରେ ତାହାକୁ ଏକ ପୁରାତନ ପ୍ରାସାଦର ଗବାକ୍ଷ ନିକଟରେ ବସିବାର ଦେଖି ଥିଲୁଁ । ଉଜ୍ଜ୍ୱଳ ସୂର୍ଯ୍ୟକିରଣ ତାହାର ବଦନରେ ପଡ଼ି ମୁଖକାନ୍ତି ଅଧିକ ଉଜ୍ଜ୍ୱଳ କରୁ ଥିଲା । ଯେଉଁ ସ୍ଥାନରେ ସେ ବସିଥିଲା ସେହି ସ୍ଥାନରୁ ପତ୍ରସମୂହର ଜାଲବନ୍ଧରେ ମଣ୍ଡଣୀ ହୋଇ ସୂର୍ଯ୍ୟ ରଶ୍ମି ଶିରରେ ରକ୍ତବର୍ଣ୍ଣ ପଡ଼ି ସେଥିର ରକ୍ତିମା ବୃଦ୍ଧି ହେଉଥିଲା । ସେହି ଲାବଣ୍ୟବତୀର ବୟଃକ୍ରମ ଷୋଡ଼ଶ ବର୍ଷ । ରୂପର କଥା ଅବା କଣ କହିବୁଁ । ଦେଖିଲାକ୍ଷଣି ବୋଧ ହେଲା ଯେ ସୌନ୍ଦର୍ଯ୍ୟ, ନମ୍ରତା, ଲଜ୍ଜା ଏବଂ ଯୌବନ ଏହି ସମସ୍ତେ ଏକମୂର୍ତ୍ତି ଧରି ଉଦିତ ହୋଇ ଅଛନ୍ତି । ଯେତେବେଳେ ସେହି ମୋହିନୀମୂର୍ତ୍ତି ଆମ୍ଭ ଆଖିରେ ପଡ଼ିଲା, ଅମ୍ଭେ ସେସମୟରେ ମୋହିତ ହେଲୁଁ । କବି ଏବଂ ଚିତ୍ରକରମାନେ ଜାଣନ୍ତି ଯେ, ତାଙ୍କ ମନରେ କେବେ କେବେ ଏମନ୍ତ ଅନିର୍ବଚନୀୟ ଭାବର ଉଦୟ ହୁଏ ଯେ ସେମାନେ କେହି ହିଁ ନିଜକୁ ବୁଝାଇ ଅଥବା

'ଉତ୍କଳଦର୍ପଣ' ପତ୍ରିକାର ଗୋଟିଏ ପୃଷ୍ଠା

**ପ୍ରଥମ ବର୍ଷ ଚତୁର୍ଥ ସଂଖ୍ୟା**
**ଏପ୍ରିଲ, ୧୮୭୩**

# ମାତୃଭାଷାରେ ବିଦ୍ୟାନୁଶୀଳନ

ଆମ୍ଭେମାନେ ଅଦ୍ୟ ଯେଉଁ ପ୍ରସ୍ତାବ ଲେଖିବାକୁ ଉଦ୍ୟତ ହୋଇଅଛୁଁ, ତାହା ଅତୀବ ଗୌରବାନ୍ୱିତ, ତତ୍‌ସଙ୍ଗରେ ଆମ୍ଭମାନଙ୍କର ସାମାଜିକ ଏବଂ ନୈତିକ ସମୁଦାୟ ମଙ୍ଗଳ ଘନିଷ୍ଠ ରୂପେ ସମ୍ବନ୍ଧ । କିନ୍ତୁ ଆକ୍ଷେପର ବିଷୟ ଯେ ଅସ୍ମଦେଶୀୟ ଲୋକମାନେ ଏହି ମହୀୟାନ ବିଷୟର ଗୌରବ ଉପଲବ୍ଧି କରିବାକୁ ନିତାନ୍ତ ପରାଙ୍ମୁଖ । ଆହୁରି ବିସ୍ମୟର ବ୍ୟାପାର ଏହି ଯେ କୃତବିଦ୍ୟ ସମ୍ପ୍ରଦାୟଙ୍କର ମଧ୍ୟ ଏଥିରେ ଆଦର ଏବଂ ଶ୍ରଦ୍ଧା ଲକ୍ଷିତ ହୁଏ ନାହିଁ । ଉପର୍ଯ୍ୟୁକ୍ତ ଔଦାସୀନ୍ୟର ନିରାକରଣାର୍ଥ ଆମ୍ଭେମାନେ ଲେଖନୀ ଧାରଣ କଲୁଁ । ଏହି ଉଦ୍ଦେଶ୍ୟ କଥଞ୍ଚିତ ସାଧିତ ହେଲେ ଆପଣାକୁ ଚରିତାର୍ଥ ମଣିବୁଁ ।

ପ୍ରଥମତଃ ବିଦ୍ୟା ଶବ୍ଦରୁ କି ଅର୍ଥ ପ୍ରତିପାଦନୀୟ, ତାହା ଅଗ୍ରେ ବିଚାର କରିବାର ଉଚିତ । ମାନବବୁଦ୍ଧି-ଅର୍ଜିତ ଗ୍ରନ୍ଥବିନିହିତ ଜ୍ଞାନସମଷ୍ଟିକୁ ବିଦ୍ୟାସଂଜ୍ଞା ପ୍ରଦତ୍ତ ହୁଏ । ଏଥିରେ ଅସାଧାରଣ ଧୀଶକ୍ତିସମ୍ପନ୍ନ ମନୁଷ୍ୟମାନଙ୍କର ଗଭୀର ଚିନ୍ତା ସମସ୍ତ ବିନ୍ୟସ୍ତ ହୋଇଥାଏ । ଯେଉଁ ନୀତିଶାସ୍ତ୍ର ଅପହରଣ, ବଳାତ୍କାର, ହତ୍ୟା ପ୍ରଭୃତି କର୍ମର ଅନ୍ୟାଯ୍ୟତା ଏବଂ ପରୋପକାର, ଗୁରୁଭକ୍ତି, ପରସତ୍ୱରକ୍ଷା ପ୍ରଭୃତି କାର୍ଯ୍ୟର ନ୍ୟାଯ୍ୟତା ପ୍ରତିପାଦନ କରେ; ଯେଉଁ ଦର୍ଶନଶାସ୍ତ୍ର ଆମ୍ଭମାନଙ୍କ ବୁଦ୍ଧିର ଜଟିଳ ପ୍ରକ୍ରିୟାବଳୀର ତତ୍ତ୍ୱ ପ୍ରକାଶ କରେ; ନ୍ୟାୟ ସୂତ୍ର, ଆତ୍ମତତ୍ତ୍ୱ ଏବଂ ଈଶ୍ୱର ଜ୍ଞାନ ପ୍ରଭୃତି ଗୁରୁତମ ବିଷୟର ବ୍ୟାଖ୍ୟାନ କରେ; ଯେଉଁ ପ୍ରାକୃତିକ ବିଜ୍ଞାନ ବିବିଧ ରୂପ ଗ୍ରହଣ କରି ମନୁଷ୍ୟକୁ ନାନାବିଧ ସୁଖ ସ୍ୱଚ୍ଛନ୍ଦତା ପ୍ରଦାନ କରେ; ଯେଉଁ ଇତିବୃତ ଭୂତପୂର୍ବ ମନୁଷ୍ୟଙ୍କ ଉନ୍ନତି ଏବଂ ଅବନତିର ସହସ୍ର ସହସ୍ର ଦୃଷ୍ଟାନ୍ତ ଦର୍ଶାଇ ଆମ୍ଭମାନଙ୍କ ଧର୍ମ ଏବଂ ସୁଖ ବର୍ଦ୍ଧନର ଉପାୟ ଅବଧାରଣ କରେ; ଯେଉଁ କବିତା ନୀତିତତ୍ତ୍ୱମାନଙ୍କୁ ଉଦ୍ଦୀପନ କରେ ଏବଂ ସୌନ୍ଦର୍ଯ୍ୟର ବହୁବିଧ ଛବି ଉଦ୍ଭାବନ କରି ମନୁଷ୍ୟ ମନକୁ ମୁଗ୍ଧ କରେ; ଯେଉଁ ବ୍ୟବହାର ଶାସ୍ତ୍ରଦ୍ୱାରା ଦେଶର ରୀତି, ନୀତି ସଂଶୋଧିତ ହୁଏ, ସେ ସମସ୍ତ ବିଦ୍ୟାରୂପ ମହୀରୂହର ଭିନ୍ନ ଭିନ୍ନ ଶାଖା ମାତ୍ର ।

ଇଂଲଣ୍ଡର ଜଣେ ବିଖ୍ୟାତ ଦାର୍ଶନିକ କହିଅଛନ୍ତି ଯେ, ସଂସାରର ସାର ପଦାର୍ଥ ମନୁଷ୍ୟ ଏବଂ ମନୁଷ୍ୟର ସାରପଦାର୍ଥ ମନ । ଉପର୍ଯ୍ୟୁକ୍ତ ବାକ୍ୟ ନିହିତ ମହାସତ୍ୟ ସମସ୍ତ ମନୁଷ୍ୟଙ୍କ ମାନସ ମନ୍ଦିରରେ ଚିର ଦେଦୀପ୍ୟମାନ ଥିବାର ଉଚିତ । ଯେପର୍ଯ୍ୟନ୍ତ ଏହି କଥାର ସାରବତ୍ତା ଆମ୍ଭମାନଙ୍କ ହୃଦୟରେ ଉପଲବ୍ଧ ହେବ ନାହିଁ, ସେ ପର୍ଯ୍ୟନ୍ତ ଆମ୍ଭମାନଙ୍କ ଉନ୍ନତି କାର୍ଯ୍ୟ କଦାପି ସୁଚାରୁରୂପେ ସମ୍ପନ୍ନ ହୋଇ ନ ପାରେ । ସେହି ଦେଶ ଧନ୍ୟ, ଯହିଁରେ ଶ୍ରେଷ୍ଠବୁଦ୍ଧି ଲୋକେ ଜନ୍ମ ଗ୍ରହଣ କରନ୍ତି । ଯେଉଁ ଦେଶର ଭୂମି

ଅତ୍ୟନ୍ତ ଉର୍ବର ଏବଂ ସର୍ବ ପ୍ରକାର ଶସ୍ୟୋତ୍ପାଦନାର୍ଥ ନିତାନ୍ତ ଉପଯୋଗୀ, ଯାହାର ଜଳବାୟୁ ଏବଂ ନୈସର୍ଗିକ ବସ୍ତୁ ସମୁଦାୟ ପରମରମଣୀୟ, ଯେଉଁ ସ୍ଥାନର ଜନ୍ତୁଗଣ ଅନ୍ୟ ଦେଶୀୟ ଜନ୍ତୁ ଅପେକ୍ଷା ଶ୍ରେଷ୍ଠ, ସେହି ଦେଶ ଯଦି ଶ୍ରେଷ୍ଠଧୀ-ବ୍ୟକ୍ତି ବିରହିତ ହୁଏ, ତେବେ ଆମ୍ଭେମାନେ କଦାପି ତାହାର ଗୌରବ ସ୍ୱୀକାର କରି ପାରୁ ନାହିଁ । ଆଜି ପର୍ଯ୍ୟନ୍ତ ପୃଥିବୀର କୌଣସି ଅଞ୍ଚଳରେ ଏହି ମହତ୍ ସତ୍ୟର ସମ୍ପୂର୍ଣ୍ଣ ଆଦର ଲକ୍ଷିତ ହୁଏ ନାହିଁ । ଅନ୍ୟ ଦେଶର କଥା କି କହିବା, ସଭ୍ୟତାଭିମାନୀ ଇଉରୋପୀୟମାନେ ଏ ବିଷୟରେ କିୟତ୍ ପରିମାଣରେ ମନୋଯୋଗୀ ମାତ୍ର । ବାହ୍ୟ ସୌନ୍ଦର୍ଯ୍ୟ ସମ୍ପାଦନାର୍ଥ ସମସ୍ତେ ତତ୍ପର । ସୁରମ୍ୟ ଅଭ୍ରଙ୍କଷ ଅଟ୍ଟାଳିକାଦି ନିର୍ମାଣରେ ସେମାନେ ଯେତେ ନୈପୁଣ୍ୟ ଏବଂ ଅଧ୍ୟବସାୟ ପ୍ରକାଶ କରନ୍ତି ମନର ଉନ୍ନତି ସାଧନ ବିଷୟରେ ତଦୁର୍ଦ୍ଧ ମାତ୍ର ପ୍ରକାଶ କରନ୍ତି ନାହିଁ । ସୁଖର ବିଷୟ ଯେ କାଳକ୍ରମେ ଏହି ଭ୍ରମ ନିରାକୃତ ହେଉଅଛି । ମନୁଷ୍ୟର ମନ ସର୍ବ ପ୍ରକାର ବହିଃଶୋଭାର ମୂଳ ହେତୁ । ଏହି ସତ୍ୟର ପ୍ରଭା କ୍ରମଶଃ ସମସ୍ତଙ୍କ ମନରେ ଜାଜ୍ୱଲ୍ୟ ହୋଇ ଆସୁଅଛି । ମାନସୋନ୍ନତି ସାଧନ ଯେ ମନୁଷ୍ୟ ଜୀବନର ମୁଖ୍ୟ ଉଦ୍ଦେଶ୍ୟ ତାହା ସର୍ବବାଦୀ ସମ୍ମତ । ତାହାକୁ ଏଠାରେ ବହୁଳରୂପେ ବ୍ୟାଖ୍ୟା କରିବାର ଆମ୍ଭମାନଙ୍କ ଉଦ୍ଦେଶ୍ୟ ନୁହେଁ ।

ବର୍ତ୍ତମାନ ବିଦ୍ୟାନୁଶୀଳନର ପ୍ରୟୋଜନ ବ୍ୟାଖ୍ୟା କରିବାକୁ ଆମ୍ଭେମାନେ ପ୍ରବୃତ୍ତ ହେଲୁଁ । ମନୁଷ୍ୟବୁଦ୍ଧି ବିଦ୍ୟାନୁଶୀଳନ ଦ୍ୱାରା ଯେତେଦୂର ଉନ୍ନତ ଏବଂ ସମ୍ମାର୍ଜ୍ଜିତ ହୋଇପାରେ ଏମନ୍ତ ଅନ୍ୟ କୌଣସି ଉପାୟ ଦ୍ୱାରା ନୁହେଁ । ମନୁଷ୍ୟ ସାମାଜିକ ଜୀବ । ଆସଙ୍ଗ ଲିପ୍ସା ହେତୁରୁ ମନୁଷ୍ୟମାନେ ପରସ୍ପର ଭାବ ବିନିମୟ କରିବାକୁ ଅଭିଳାଷ କରନ୍ତି । ଏହି ଅଭିଳାଷ ମାନସୋନ୍ନତିର ଗୋଟିଏ ପ୍ରଧାନ କାରଣ । ଯେ ପରିମାଣରେ ମନୁଷ୍ୟ ସ୍ୱଚିନ୍ତା ଅନ୍ୟ ବ୍ୟକ୍ତି ନିକଟରେ ପ୍ରକାଶ କରିବାକୁ ଯତ୍ନ କରେ, ସେହି ପରିମାଣରେ ତାହାର ବୁଦ୍ଧି ସାରବାନ୍ ଏବଂ ସମ୍ମାର୍ଜ୍ଜିତ ହୁଏ । କେବଳ ନିଭୃତ ଚିନ୍ତା ମାନସୋନ୍ନତିର ଏକମାତ୍ର କାରଣ ନୁହେଁ । ଯେତେବେଳେ ଆତ୍ମାର ଉଚ୍ଚତମ ଚିନ୍ତା ସମସ୍ତ, ବୁଦ୍ଧିମାନ୍ ବ୍ୟକ୍ତି ବାକ୍ୟରେ ମୂର୍ତ୍ତିମନ୍ତ କରି ଅନ୍ୟ ବ୍ୟକ୍ତି ମନରେ ପ୍ରତିପନ୍ନ କରାଇ ଦିଅନ୍ତି, ତେତେବେଳେ ତାହାଙ୍କ ଆତ୍ମା ବିସ୍ତାରିତ ଏବଂ ସରଳ ହୁଏ । ଯେପର୍ଯ୍ୟନ୍ତ ଅନ୍ୟର ଶିକ୍ଷା ଅଥବା ସନ୍ତୋଷାର୍ଥ ଆମ୍ଭେମାନେ କୌଣସି ବିଷୟ ଲେଖିବାକୁ ପ୍ରବୃତ୍ତ ନ ହେଉଁ ସେ ପର୍ଯ୍ୟନ୍ତ ଆମ୍ଭମାନଙ୍କ ତଦ୍ୱିଷୟକ ଜ୍ଞାନ ପ୍ରାୟ ସୁଚାରୁରୂପେ ସ୍ଫୁଟ ହୋଇ ନ ଥାଏ । ଅନ୍ୟ ବ୍ୟକ୍ତିମାନେ ତାହାର ସ୍ପଷ୍ଟ ଉପଲବ୍ଧି କରିପାରିବେ ଏହି ଅଭିପ୍ରାୟରେ ଆମ୍ଭେମାନେ ନାନା ଅନୁସନ୍ଧାନରେ ପ୍ରବୃତ୍ତ ହେଉଁ; ଏଣୁ ଆମ୍ଭର ଅସ୍ପଷ୍ଟ ଚିନ୍ତା ସମୁଦାୟ ଉଜ୍ଜ୍ୱଳ ହୋଇଯାଏ, ଅନେକ ମହାସତ୍ୟ ଆବିଷ୍କୃତ ହୁଏ ଏବଂ ମାନସର ଚିନ୍ତାଶୀଳତା ଉତ୍ପାଦିତା ଆଉ ବର୍ଦ୍ଧିତା ହୁଏ । ଏଥିରୁ ସ୍ପଷ୍ଟ ପ୍ରମାଣ ମିଳୁଅଛି ଯେ, ବିଦ୍ୟାନୁଶୀଳନ ଦ୍ୱାରା ବୁଦ୍ଧି ଶକ୍ତିର ଉନ୍ନତି ସାଧିତ ହୁଏ, ଏବଂ ତାହାର

ସବଳତା ସମ୍ପାଦିତ ହୁଏ । କବିକାଳିଦାସପ୍ରଣୀତ ଶକୁନ୍ତଳା ନାଟକ ଏହି ବିଷୟର ଉତ୍ତମ ଉଦାହରଣ ସ୍ଥଳ । ଆଶ୍ରମଲଲାମଭୂତା, ସରଳା, ପ୍ରେମମୟୀ ଶକୁନ୍ତଳାର ଛବି ମନରେ ପଡ଼ିଲେ କାହାର ମନ ମୋହିତ ହୁଏ ନାହିଁ ? ଶକୁନ୍ତଳାର ପ୍ରଥମ ରାଜଦର୍ଶନ ସମ୍ଭୂତ ପ୍ରେମାବିର୍ଭାବ, ପଶ୍ଚାତ୍ ଉପବନମଧ୍ୟେ ମିଳନ, ଗନ୍ଧର୍ବବିବାହ, ବିରହାବସ୍ଥା, ପତିଗୃହ ଗମନକାଳୀନ ଆଶ୍ରମବର୍ଦ୍ଧିତ ତରୁଲତାଦିର ସମ୍ବୋଧନ, ସ୍ୱାମିକର୍ତ୍ତୃକ ପରିବର୍ଜନ, ପୁନର୍ମିଳନ, ରାଜାର ପୁତ୍ରମୁଖ ସନ୍ଦର୍ଶନ, ଏ ଅଂଶମାନଙ୍କୁ ପାଠ କରି କିଏ କାଳିଦାସର ଅଦ୍ଭୁତ ଶକ୍ତିର ଭୂୟୋଭୂୟଃ ପ୍ରଶଂସା ନ କରି କ୍ଷାନ୍ତ ହୋଇପାରେ ? କିନ୍ତୁ ଯଦି କାଳିଦାସ ତାହାଙ୍କ ମନୋଦିତ ଶକୁନ୍ତଳାର ଛବି ଜନସମାଜ ନିକଟରେ ଅର୍ପଣ କରିବାକୁ ସଚେଷ୍ଟ ହୋଇ ନ ଥାନ୍ତେ, ତାହା ହେଲେ ତାଙ୍କ ଅଦ୍ଭୁତଶକ୍ତି କେଉଁ କାର୍ଯ୍ୟକୁ ଆସନ୍ତା ? ସାହିତ୍ୟ ଚର୍ଚ୍ଚା ଯେ ବୁଦ୍ଧି ବୃତ୍ତିର ଧାତ୍ରୀସ୍ୱରୂପ ଏଥି ଉତ୍ତାରେ କିଏ ଅସ୍ୱୀକାର କରିବ ?

ବିଦ୍ୟାନୁଶୀଳନଦ୍ୱାରା ଯେ କେବଳ ବ୍ୟକ୍ତିବିଶେଷର ଉପକାର ହୁଏ ଏମନ୍ତ ନୁହେ । ଏତଦ୍ଦ୍ୱାରା ଜନସମାଜର ଅବସ୍ଥା ଏବଂ ଚରିତ୍ର ସଂଶୋଧିତ ହୁଏ ଏବଂ ମନୁଷ୍ୟଜାତି ମହତ୍ତ୍ୱ ଏବଂ ସଭ୍ୟତା ପଦବୀ ଆରୋହଣ କରନ୍ତି । ପାଠକ ! ମାନବ ଶିରୋଭୂଷଣା ଏହି ପୃଥିବୀ ଆଡ଼କୁ ଥରେ ନେତ୍ରପାତ କର, ଏ ବିଷୟରେ ତୁମ୍ଭର ଆଉ ସନ୍ଦେହ ରହିବ ନାହିଁ । ଏହି କଥା ନିର୍ଣ୍ଣୟକରଣାର୍ଥ ଇତିହାସ ପ୍ରଧାନ ଅବଲମ୍ବନ । ପୃଥିବୀର ଯେ ସମସ୍ତ ଜାତି ମହତ୍ ଏବଂ ଶ୍ରୀବୃଦ୍ଧିଶାଳୀ ହୋଇଅଛନ୍ତି, ସେମାନଙ୍କ ଇତିବୃତ୍ତ ପାଠ କର । ପ୍ରାଚୀନ ଗ୍ରୀସ୍, ରୋମ, ଭାରତବର୍ଷ ଏବଂ ଆଧୁନିକ ଇଂଲଣ୍ଡ, ଜର୍ମାନୀ, ଫ୍ରାନ୍ସ, ଆମେରିକା ଏହାର ଉଦାହରଣସ୍ଥଳ ।

ବିଦ୍ୟାର ପ୍ରଭାବ କି ବିଚିତ୍ର ! ଏହା ବଳରେ ଆକାଶର ସୁରସୁନ୍ଦରୀ ବାର୍ତ୍ତାବହରୂପେ ମନୁଷ୍ୟର ସେବା କରୁଅଛନ୍ତି, ଶକଟ ଏବଂ ପୋତରେ ସଂଯୋଜିତ ହୋଇ ଦୂରତ୍ୱ ବିନାଶ କରୁ ଅଛି ଏବଂ ନୟନାତୀତ ବହୁ ଲକ୍ଷ କ୍ରୋଶ ଦୂରବର୍ତ୍ତୀ ନକ୍ଷତ୍ରମାନଙ୍କ ପରିମାଣ ଅବଧାରିତ ହେଉଅଛି । ଯେଉଁ ଦେଶରେ ବିଦ୍ୟାଚର୍ଚ୍ଚା ବହୁଳରୂପେ ହୁଏ, ଯହିଁରେ ଅସାଧାରଣ ଧୀଶକ୍ତି ସମ୍ପନ୍ନ ବ୍ୟକ୍ତି ଅଧିବାସକରେ ତତ୍ରତ୍ୟ ଲୋକମାନଙ୍କ ମନରେ ଉଦ୍ଦୀପନା ଏବଂ ଯଶୋଭିଳାଷ ସର୍ବଦା ଜାଗ୍ରତ ଥାଏ । ଅତଏବ ସେମାନେ ସ୍ୱାଧୀନତାପ୍ରିୟ ଏବଂ ଉତ୍କର୍ଷାଭିଳାଷୀ ହୋଇ ମହତ୍ତ୍ୱ ଲାଭ କରିବାକୁ ସମର୍ଥ ହୁଅନ୍ତି ।

ବର୍ତ୍ତମାନ ଆମ୍ଭେମାନେ ବିଦ୍ୟାର ମାହାତ୍ମ୍ୟ କିୟତ୍ ପରିମାଣରେ କୀର୍ତ୍ତନ କଲୁଁ । ଅସ୍ମଦ୍ଦେଶୀୟ ଜନସାଧାରଣଙ୍କ ମନରେ ଜ୍ଞାନାର୍ଜନ ବାସନାରୂପ ବୀଜ କି ପ୍ରକାରେ ରୋପିତ ହେବ, ବର୍ତ୍ତମାନ ତାହା ଆମ୍ଭର ଅନୁସନ୍ଧେୟ । ଇତିହାସ ପାଠକଲେ ଜଣାଯାଏ ଯେ, ସମାଜରେ କୌଣସି ପ୍ରକାର ନବ ପରିବର୍ତ୍ତନ ନ ଘଟିଲେ କୌଣସି ଜାତି ମଧ୍ୟରେ

ଉକ୍ତ ବାସନା ଚରିତାର୍ଥ ହୋଇପାରେ ନାହିଁ । ଇଂଲଣ୍ଡ ଏବଂ ଫ୍ରାନ୍ସ ଦେଶର ରାଜ୍ୟ ବିପ୍ଳବ, ଆମେରିକାର ସ୍ୱାଧୀନତା ଲାଭ, ଭାରତବର୍ଷରେ ଚୈତନ୍ୟ ଧର୍ମ ସଂସ୍ଥାପନ ଇତ୍ୟାଦି ଉପଯୁକ୍ତ ମତର ପୋଷକ ଅଟନ୍ତି । ବର୍ତ୍ତମାନ ଆମ୍ଭମାନଙ୍କ ମଧ୍ୟରେ କୌଣସି ଅନୁକୂଳ ପରିବର୍ତ୍ତନ ଲକ୍ଷିତ ହେଉ ଅଛି କି ନାହିଁ ଦେଖିବାର ଆବଶ୍ୟକ । ସୌଭାଗ୍ୟ କ୍ରମେ ଇଂଲଣ୍ଡୀୟ ବିଦ୍ୟାନୁଶୀଳନ ହେତୁରୁ ଭାରତବର୍ଷର ସର୍ବ ଅଞ୍ଚଳରେ ଏକ ନୂତନ ଆଭ୍ୟନ୍ତରିକ ବିପ୍ଳବ ଉପସ୍ଥିତ ହୋଇଅଛି । ଏଥିରେ ଭାରତବର୍ଷୀୟ ଯେଉଁ ଜାତିମାନେ କଟିବନ୍ଧନ ପୂର୍ବକ ବୀରତା ସହକାରେ ଅଜ୍ଞାନତିମିର ବିନାଶ କରି ଜ୍ଞାନାଲୋକ ବିସ୍ତାର କରିବେ, ସେହିମାନେ ପରିଣାମେ ସ୍ୱଦେଶକୁ ବହୁକାଳ ସ୍ଥାୟୀକଳଙ୍କରୁ ମୁକ୍ତ କରିବେ ଏବଂ ମହତ୍ ଜାତିଶ୍ରେଣୀରେ ଭୁକ୍ତ ହେବେ । ପୁଣି ଯେଉଁମାନେ ଶିଥିଳୋଦ୍ୟମ ହୋଇ ଔଦାସ୍ୟ ଅବଲମ୍ବନ କରିବେ, ସେମାନଙ୍କ ପୁନରୁତ୍ଥାନର ସମ୍ଭାବନା ନାହିଁ । ଯେ ସଭ୍ୟତା ପ୍ରଭାକର ପ୍ରଥମେ ଭାରତରେ ଉଦିତ ହୋଇ ପାଶ୍ଚାତ୍ୟ ଅଞ୍ଚଳକୁ ପ୍ରସ୍ଥାନ କରିଥିଲା, ତାହାର ପ୍ରଭା ପୁନର୍ବାର ଏଠାରେ ବିକୀର୍ଣ୍ଣ ହେଉଅଛି । ହେ ସ୍ୱଦେଶବତ୍ସଳ ପୁରୁଷ ବୃନ୍ଦ ! ଏହି ସମୟ କାର୍ଯ୍ୟର ସମୟ । ଆଉ ବିଳମ୍ବ କରନା । ମାତୃଭାଷାର ଉନ୍ନତି ସାଧନ କରି ଏବଂ ରତ୍ନଗର୍ଭା ଭାରତଭୂମିର ମୁଖ ଉଜ୍ଜ୍ୱଳ କର ।

## କାଳିଦାସ

### ପୂର୍ବ ପ୍ରକାଶିତ ଉତ୍ତାରୁ ।

ମାତ୍ର ଏହି ହେଲେ ସବୁ ହେଲା, କେବଳ ଏହିପରି ହେଲେ କୌଣସି ପୁସ୍ତକ ନାଟକ ପଦବାଚ୍ୟ ହୋଇପାରେ ଏମନ୍ତ ନୁହେ, ଅନେକ ଉପନ୍ୟାସରେ ଏପରି ଅଛି । ମାତ୍ର ଉପନ୍ୟାସ ଏବଂ ନାଟକ କଣ ଏକା ? କେବଳ ଉଲ୍ଲିଖିତ ବିଷୟମାନ ଥିଲେ ଯେବେ କୌଣସି ଗ୍ରନ୍ଥ ନାଟକ ପଦବାଚ୍ୟ ହୁଅନ୍ତା ତେବେ କାଦମ୍ବରୀକୁ ନାଟକ କହିପାରନ୍ତୁ । ମାତ୍ର ତାହା ନୁହେ । ଉପନ୍ୟାସରେ କଥୋପକଥନର ଅନ୍ତରାଳ ମାନଙ୍କରେ କବି ସ୍ୱୟଂ ପାଠକଙ୍କ ସଙ୍ଗେ ସାକ୍ଷାତ୍ କରନ୍ତି । ଘଟନାର ସ୍ଥାନ, ସମୟ, ଆନୁସଙ୍ଗିକ ଅବସ୍ଥାଦି ସ୍ୱୟଂ ବୋଲନ୍ତି । ନାଟକ ରଚୟିତାଙ୍କର ଏ ସୁବିଧା ନାହିଁ, ମାତ୍ର ତାଙ୍କର ଏହି ଅଭାବ ପୂର୍ଣ୍ଣ ହେବାର ଉତ୍କୃଷ୍ଟ ଉପାୟ ଅଛି । ନାଟକ ଅଭିନୟ ଉଦ୍ଦେଶ୍ୟରେ ରଚିତ ହୁଏ । ଅତଏବ ସ୍ଥାନ, ପରିଚ୍ଛଦ ଏବଂ ଅନ୍ୟାନ୍ୟ ଆନୁସଙ୍ଗିକ ବିଷୟମାନ ନାଟ୍ୟଶାଳାରେ ବିଦ୍ୟମାନ ଥାଏ । ଉପନ୍ୟାସର ନାୟକ ଉପନାୟକମାନଙ୍କ ସଙ୍ଗେ ଆମ୍ଭମାନଙ୍କର ଭେଟ ହୁଏ ନାହିଁ; ସୁତରାଂ ସେମାନଙ୍କ ଅବସ୍ଥାଦି କବି ଯେବେ ନ ବର୍ଣ୍ଣିବେ ଆମ୍ଭେମାନେ କାହୁଁ ଜାଣିବା ! ଏଣୁ "ଶକୁନ୍ତଳା

ରୋଦନ କରୁଁ କରୁଁ କହିଲେ'' ''ଜମ୍ବୁକ ବିଷଣ୍ଣ ବଦନରେ ଉତ୍ତରିଲା'' ''ଏହା ଶୁଣି ରାମ ନିତାନ୍ତ କାତର ହେଲେ'' ''ମହାଶ୍ୱେତା ଶିବାଳୟ ପାଖରେ ବୀଣା ବଜାଇ କରୁଣ ସ୍ୱରରେ ଗୀତ ଗାଉଥିଲେ ।'' ଉପନ୍ୟାସ କର୍ତ୍ତାମାନେ ସ୍ୱୟଂ ଏହିପରି ବିଷୟମାନ ପାଠକଠାରେ ଜଣାଣ କରନ୍ତି । ମାତ୍ର ଦୃଶ୍ୟ କାବ୍ୟ ଅଭିନୟବେଳେ ଦର୍ଶକ ଶକୁନ୍ତଳାଙ୍କୁ ସ୍ୱୟଂ କାନ୍ଦିବାର ଦେଖନ୍ତି, ସ୍ୱୟଂ ଜମ୍ବୁକର ମୁଖ ବିବର୍ଣ୍ଣତା ଦେଖନ୍ତି, ସ୍ୱୟଂ ରାମଚନ୍ଦ୍ରଙ୍କର କାତରତା ଦେଖନ୍ତି, ଅନୁକୃତ ଶିବାଳୟ ପାଖରେ ଅନୁକୃତ ମହାଶ୍ୱେତାଙ୍କର ବୀଣାଝଙ୍କାରମିଶ୍ରିତ କରୁଣ ସଙ୍ଗୀତ ସ୍ୱୟଂ ଶ୍ରବଣ କରନ୍ତି । ସୁତରାଂ ସେହି ବିଷୟମାନ ନାଟକ ରଚୟିତାଙ୍କର ବର୍ଣ୍ଣିବାର ପ୍ରୟୋଜନ ହୁଏ ନାହିଁ ।

ଗ୍ରୀକ୍ ଦେଶୀୟ ଅଳଙ୍କାର ଗୁରୁ ଏରିଷ୍ଟଟଲ ନାଟକ ରଚନା ସମ୍ବନ୍ଧେ କେତେ ଗୋଡ଼ିଏ ନିୟମ ନିର୍ଦ୍ଦେଶ କରି ଅଛନ୍ତି । ଆଧୁନିକ ପଣ୍ଡିତମାନଙ୍କର ବିବେଚନାରେ ସେହି ନିୟମମାନ ଅପ୍ରଶସ୍ତ ହେଲେହେଁ ସେଥିର ଉଲ୍ଲେଖ କରୁଅଛୁଁ । ଆମ୍ଭମାନଙ୍କର ଉଦ୍ଦେଶ୍ୟ ଏହି କି ସେହି ନିୟମ ଏବଂ ସେଥିର ପ୍ରତିବାଦ ପାଠକଙ୍କ ଅଗ୍ରତେ ଥୋଇଲେ ସେହି ନିୟମମାନ ପ୍ରସ୍ତାବର ବିଷୟୀଭୂତ ମହାକବି କିପାଇଁ ଭାଙ୍ଗି ଅଛନ୍ତି ପାଠକେ ସେଥିର କାରଣ ଜାଣିପାରିବେ ।

ଆରିଷ୍ଟଟଲ କହନ୍ତି ନାଟକ ରଚୟିତାଙ୍କର ଏହି ତିନୋଟି ନିୟମ ଅନୁସରି ଚଳିବାର ଉଚିତ । ପ୍ରଥମ ଗୋଟିଏ ଘଟନା ଗ୍ରନ୍ଥଯାକ ବ୍ୟାପିବ, ଦ୍ୱିତୀୟତଃ ଏକ ସ୍ଥାନରେ ସବୁ ଘଟିବାର ଉଚିତ, ତୃତୀୟତଃ ଏକ ସମୟରେ ସବୁ ସରିବାର ଉଚିତ ।

ଏଥକୁ ଆଧୁନିକ ପଣ୍ଡିତମାନେ ଏହି ପ୍ରତିବାଦ କରନ୍ତି । ନାଟକରେ ଗୋଟିଏ ମୁଖ୍ୟ ଉଦ୍ଦେଶ୍ୟ ଘେନି ମୁଖ୍ୟ ଘଟନା ଥିବ । ସେହି ଘଟନାର ଆଦ୍ୟ; ମଧ୍ୟ, ପ୍ରାନ୍ତ ଥିବ; ମାତ୍ର ଅନେକ ଉପଘଟନାମାନ ମଧ୍ୟ ସନ୍ନିବିଷ୍ଟ ହେବାର ଉଚିତ । ତାହା ନ ହେଲେ ପ୍ରକୃତିର ବିରୋଧ ଘଟିବ । ସଂସାରେ ଯେଉଁ ଘଟନାମାନ ଘଟୁ ଅଛି ସେଥିରୁ ଗୋଟିଏ ସୁଦ୍ଧା ସ୍ୱତନ୍ତ୍ର ଅବା ନିରବଲମ୍ବ ନୁହଇ । ଆଜିଯାଏ ଯେତେଗୋଡ଼ିଏ ଉତ୍କୃଷ୍ଟ ନାଟକ ରଚିତ ହୋଇଅଛି ସେଥିର ଅଧିକାଂଶ ଏହି ପ୍ରତି ମତର ସମର୍ଥକ ଅଟନ୍ତି ।

ଦ୍ୱିତୀୟତଃ । ଆରିଷ୍ଟଟଲଙ୍କ ମତେ ନାଟକର ଏକସ୍ଥାନିକତା ରଖିବାର ବିଧେୟ; ହେତୁକି ଦର୍ଶକମାନେ ପ୍ରଥମ ଅଭିନୟ ବେଳେ ନାଟ୍ୟଶାଳାକୁ କୌଣସି ବିଶେଷ ସ୍ଥଳୀ କଳ୍ପନା କରି ସେଠାରେ ଘଟନାମାନ ଘଟୁଥିବାର ଦେଖନ୍ତି କ୍ରମଶଃ ମନୋଯୋଗ ପ୍ରଗାଢ଼ ହେବା ଯୋଗୁଁ କୃତ୍ରିମ ସ୍ଥଳୀକୁ ପ୍ରକୃତ ଘଟନାସ୍ଥଳୀ ମଣନ୍ତି । ଏଥକୁ ସେହି ସ୍ଥଳୀ ପରିବର୍ତ୍ତରେ ତାହାକୁ ଆନସ୍ଥଳୀ ବୋଇଲେ ଦର୍ଶକବୃନ୍ଦର ସେହି ସଭଗଭ୍ରମ ଭାଙ୍ଗିଯାଏ । ସୁତରାଂ ରସଭଙ୍ଗ ହୁଏ । ପଣ୍ଡିତ ଚୂଡ଼ାମଣି ଜନସନ ଏହି ଯୁକ୍ତିର ସୁନ୍ଦର ପ୍ରତିଯୁକ୍ତି କରିଅଛନ୍ତି । ତାହାଙ୍କର ପ୍ରତିଯୁକ୍ତିର ମର୍ମ ଏହି,

ଯେବେ ଆମ୍ଭମାନଙ୍କର କଳ୍ପନା ମନକୁ ତ୍ରେତାଯୁଗ ଯାଏ ଅଯୋଧ୍ୟାସରିକି ନେଇପାରେ, ସେଥିପରେ ଅଯୋଧ୍ୟାରୁ ଗୋଦାବରୀକୂଳକୁ ନେବାର କିଛି ବିଚିତ୍ର ନୁହେଁ । ମନର ଗତି ବିଜୁଳିକୁ ବଳେ, ମୁହୂର୍ତ୍ତମଧ୍ୟରେ ଅନନ୍ତ କାଳାର୍ଣ୍ଣବ ସନ୍ତରି ଆସେ । ମୁହୂର୍ତ୍ତ ମଧ୍ୟରେ ତ୍ରିଭୁବନ ବୁଲିଆସେ, ଏହା ସବୁବେଳେ ସବୁ ବିଷୟରେ ସଭିଏଁ ସ୍ୱୀକାର କରନ୍ତି । ମନର ଯେବେ ଏଡ଼େ ଶକ୍ତି ଅଛି କବିତା ସେଥିର ଫଳଭାଗୀ ନ ହେବେ କିପାଁ ?

ତୃତୀୟତଃ । ଘଟନାର ପ୍ରକୃତକାଳ ଅଭିନୟର କାଳରୁ ବଳିବ ନାହିଁ ବଳିଲେ ପ୍ରକୃତିର ବିରୁଦ୍ଧ ହେବ, ଏହି ଯୁକ୍ତିର ସୁଦ୍ଧା ସମୀଚୀନ ପ୍ରତିଯୁକ୍ତି ନିର୍ଦ୍ଦେଶ ହୋଇଅଛି ।

କେହି କେହି ଭାଳନ୍ତି ଯେ ଅଭିନୟବେଳେ ଦର୍ଶକମାନେ ଆତ୍ମବିସ୍ମୃତ ହୁଅନ୍ତି । ନାଟକର ଘଟନାମାନ ଯେତେବେଳେ ପ୍ରକୃତ ଘଟୁଥିବାର ଜଣାଯାଏ । ମାତ୍ର ଏ ବିଷମ ଭ୍ରମ ଅଟେ । ଅଭିନୟ ଦେଖି ଲୋକେ ଯେଡ଼େ ମୁଗ୍ଧ ହେଉନ୍ତୁ ପଛକେ ''ଏହା ପ୍ରକୃତି ନୁହେଁ ଅନୁକୃତି'' । ଏହି ଭାବ ମନମଧ୍ୟରେ ନିରନ୍ତର ଜାଣିଥାଏ । ଅଭିନୀତ ଘଟନାମାନ ଯେତେ ପ୍ରକୃତି ବୋଲି ଅନୁଭୂତ ହୁଅନ୍ତା ନୃତ୍ୟାଭିନୟର ଅନେକ ସ୍ଥଳରେ ଦୁର୍ବିଷହ କଷ୍ଟ ସଞ୍ଜାତ ହୁଅନ୍ତା । ଅରଣ୍ୟରେ ସୀତା ଯେତେବେଳେ ଗୋଦାବରୀ ଜଳରେ ପ୍ରାଣତ୍ୟାଗ କରିବାକୁ ଯାଉଅଛନ୍ତି ଉଦାରମତି ନାଗାନନ୍ଦ ସର୍ପମାନଙ୍କୁ ବଞ୍ଚାଇବା ପାଇଁ ଯେତେବେଳେ ଭୀଷଣ ଗରୁଡ଼କବଳରେ ଆତ୍ମବିସର୍ଜନ କରୁଅଛନ୍ତି, କରାଳ ଅଗ୍ନିଶିଖା ମଧ୍ୟରେ ବନ୍ଧା ହୋଇ ସାଗରିକା ଯେତେବେଳେ ବିଳାପ କରୁଅଛନ୍ତି ପ୍ରକୃତମଣି ସେତେବେଳେ କିଏ ସ୍ଥିରନେତ୍ରରେ ଅନାଇ ରହିବ । ଫଳତଃ ଅଭିନୟକୁ କେହି କେବେ ପ୍ରକୃତ ଘଟନା ମଣନ୍ତି ନାହିଁ । ଅଭିନୟ ଦର୍ଶନରେ ଯେଉଁ ପ୍ରୀତି ଉପୁଜେ ତାହା ଜାଗ୍ରତସ୍ୱପ୍ନ ପ୍ରାୟ । ସେତେବେଳେ କେହି ଜ୍ୟୋତିଷ ପରି ସମୟ ମାଗୁ ନ ଥାନ୍ତି । ସମୟର ଜ୍ଞାନ ପ୍ରୀତି ପ୍ରଭାବରୁ ବିଲୁପ୍ତ ହୋଇଯାଏ । ଯେତେବେଳେ ଆମ୍ଭେମାନେ ନିଷ୍କର୍ମା ହୋଇ ବସିଥାଉଁ ମୁହୂର୍ତ୍ତ ଘଡ଼ିକପରି ପ୍ରତିଭାତ ହୁଏ କାର୍ଯ୍ୟରେ ବ୍ୟସ୍ତ ଥିଲେ, ଉତ୍ସବରେ ରତ ଥିଲେ, ଘଣ୍ଟାକ ମୁହୂର୍ତ୍ତ ପରି ପ୍ରତିଭାତ ହୁଏ । ବର୍ତ୍ତମାନ କାଳରେ ତ ଏହିପରି । ଅତୀତ କାଳର ଏଥିର ସମ୍ପୂର୍ଣ୍ଣ ବିପରୀତ । ଯେଉଁ କାଳ ଆଳସ୍ୟରେ ନୀତ ହୋଇ ଥିଲା ତାହା ଦୀର୍ଘ ହେଲେ ସୁଦ୍ଧା ପଛକୁ ମନେ ପଡ଼ିଲା ବେଳେ ଅଳ୍ପ ଦିଶେ । ଯେଉଁ କାଳ ଆମୋଦ ଉତ୍ସବାଦିରେ ଯାପିତ ହୋଇଥିଲା ଅଳ୍ପ ହେଲେ ସୁଦ୍ଧା ପଛକୁ ମନେ ପଡ଼ିଲାବେଳେ ଦୀର୍ଘ ଦିଶେ । ଫଳେ ଘଡ଼ିର କାଳ-ପରିମାଣ ମନର କାଳ ପରିମାଣ ଏଦୁହେଁ ଏକା ନୁହନ୍ତି । ପ୍ରବୃତ୍ତିମାର୍ଗରେ ଗତି ଘେନି ମନ ସମୟ କଳନା କରେ । ମଧରେ ସୁଦୀର୍ଘ ଜଡ଼ ଅନ୍ତରାଳ ଥିଲେ ହେଁ ସଙ୍କୁଚିତ ହୋଇ ବିନ୍ଦୁପରି ହୋଇଯାଏ । କୌଣସି ବିଷୟରେ ଆମ୍ଭେମାନେ ଆଗ୍ରହଯୁକ୍ତ ହୋଇ ବ୍ୟାପୃତ ଅଛୁଁ

ଏମନ୍ତ ସମୟରେ ଯେବେ ନିଦ୍ରା ଆସେ ନିଦ୍ରା ଭାଙ୍ଗିଲାକ୍ଷଣି ପୁଣି ସେହି ବିଷୟରେ ବ୍ୟାପୃତ ହେଉଁ । ଅନ୍ତରାଳବର୍ତ୍ତୀ ସମୟ ଫଳକ ଭିତରେ ପାସୋରି ପକାଉଁ । ନାଟକାଭିନୟରେ ମଧ ସେହିପରି । ଦୁଇ ଘଟନା ମଧରେ ଯେଉଁ ସମୟ ବ୍ୟବଧାନ ଥାଏ ତାହା ଶୀଘ୍ର ବିସ୍ମୃତି ଗର୍ଭରେ ପଡ଼େ ।

ଭାରତବର୍ଷୀୟ ଆଳଙ୍କାରିକମାନଙ୍କର ଉତ୍ପୀଡ଼ନରେ ମଧ୍ୟ ନାଟକର ବିଶେଷ କ୍ଷତି ହୋଇଅଛି । ଏମାନେ ସାହିତ୍ୟ ସଂସାରର ଯେତେ ଇଷ୍ଟ ସାଧି ଅଛନ୍ତି ସେତେ ଅନିଷ୍ଟ ମଧ ସାଧିଅଛନ୍ତି । କବିମାନଙ୍କର ଉଚ୍ଛୃଙ୍ଖଳତାର ପ୍ରତିବିଧାନ କରିବାର ଏମାନଙ୍କର ଅଭିପ୍ରାୟ ଥିଲା । ମାତ୍ର ଉଚ୍ଛୃଙ୍ଖଳତା ସଙ୍ଗେ ସଙ୍ଗେ ପ୍ରାକୃତିକ ସ୍ଫୂର୍ତ୍ତିର ମଧ ବିନାଶ ସାଧିଲେ । ଏମାନେ ଗୋଟିଏ ନିୟମ ନିର୍ଦ୍ଦେଶ କଲେ ଯେ ନାଟକର ପରିମାଣ ଅଶୁଭ ହେବ ନାହିଁ । ଏ ନିୟମ ଆପାତତଃ ଭଲ ଦିଶେ ମାତ୍ର ସୂକ୍ଷ୍ମରୂପରେ ଦେଖିଲେ କେହି କଦାପି ଏହାକୁ ସମୀଚୀନ ବୋଲିବେ ନାହିଁ ।

ମନୁଷ୍ୟ ଯାହା କରେ ଆପଣା ଇଚ୍ଛାରୁ କରେ । ମାତ୍ର ଫଳ ତାହାର ଆୟତ ନୁହଇ । ସବୁ କାର୍ଯ୍ୟର ପରିମାଣ ଈଶ୍ୱର ଇଚ୍ଛାଧୀନ ଅଟେ । ଏଥିପାଇଁ କୌଣସି ମହାଜନ କହିଅଛନ୍ତି;

"ଉପର୍ଯ୍ୟୁପରି ବୁଦ୍ଧିନାଂ ଚରନ୍ତୀଶ୍ୱର ବୁଦ୍ଧୟଃ"*

ମନୁଷ୍ୟମାନେ ଗୋଟିଏ ଉଦ୍ଦେଶ୍ୟ ଘେନି କୌଣସି ଅନୁଷ୍ଠାନ କରନ୍ତି, ସେଥିରେ କେତେ ବିଘ୍ନ ଘଟେ, କେତେ ଅନ୍ତରାୟ ଉପସ୍ଥିତ ହୁଏ, କେତେ ଆଡ଼କୁ ତାହାର ଫଳ ବ୍ୟାପେ ଏହା ଆଗୁଁ କେହି କଳିପାରେ ନାହିଁ । ଏହା ସମସ୍ତେ ଜାଣନ୍ତି, ଏ ଘେନି ଆମ୍ଭ ଦେଶରେ ଗୋଟିଏ ବାକ୍ୟ ସମସ୍ତଙ୍କ ତୁଣ୍ଡେ ଶୁଣାଯାଏ;

"ପଛେ ଦଇବ ଯାହା କରୁ" ।

ଏଥକୁ ସବୁ ନାଟକର ପରିଣାମ ଶୁଭ କଲେ ଦୈବ ନିୟତିର ବିରୁଦ୍ଧ ହୁଏ ଏବଂ ଘଟନାଗୋଡ଼ିକ ସଂସାରରୁ ଗୃହୀତ ହେବାପରି ଦିଶେ ନାହିଁ । କେହି ଅବା ଏମନ୍ତ କହିବେ ଯେଉଁ ଘଟନାମାନଙ୍କର ପରିଣାମ ବାସ୍ତବରେ ଶୁଭ ହୋଇଥିଲା ସେହି ଘଟନାମାନଙ୍କୁ ଘେନି ନାଟକ ବିରଚିତ ହୋଇଅଛି । ମାତ୍ର ଏ ଉକ୍ତିର କୌଣସି ବିଶ୍ୱସ୍ତ ସମର୍ଥକ ନାହିଁ । ପାଠକେ ଉତ୍ତର ରାମଚରିତ ଦେଖିଲେ ଜାଣିପାରିବେ ।

ନାଟକ କାହାକୁ କହନ୍ତି, କି ହେଲେ, କଣ ଥିଲେ ନଟକ ଉତ୍କୃଷ୍ଟ ହୁଏ, କି ନ ହେଲେ କଣ ନ ଥିଲେ ନାଟକ ଅପକୃଷ୍ଟ ହୁଏ, ଆମ୍ଭେମାନେ ଏତେବେଳଯାଏ ଏହି ବିଚାରରେ ପ୍ରବୃତ୍ତ ଥିଲୁଁ । ବିଚାର ଦୀର୍ଘ ହେଲେହେଁ ପ୍ରସଙ୍ଗାଧୀନ ଅଟେ ।

(କ୍ରମଶଃ)

---

* ସମସ୍ତଙ୍କ ବୁଦ୍ଧି ଉପରେ ଈଶ୍ୱରଙ୍କର ବୁଦ୍ଧି ବିଚରୁ ଅଛି ।

# ସ୍ତୋତ୍ର ।

ଏ ଅନନ୍ତ ବିଶ୍ୱ ତୁମ୍ଭ ମହିମା କୀର୍ତ୍ତନ
ଅଶେଷ ପ୍ରକାରେ, ବିଭୋ କରେ ଅନୁକ୍ଷଣ ।।
ତୁମ୍ଭ ଜ୍ୟୋତି ଯୋଗୁଁ ଚନ୍ଦ୍ର ତାରକା ଭାସ୍କର
ମଣ୍ଡନ୍ତି ଶୁଭ ଆଲୋକେ ନିଜ କଳେବର ।।
ଦିବସ ରଜନୀ ପୁଣି ଋତୁ ପରମ୍ପରା
ନିତ୍ୟ ଆବର୍ତ୍ତନଶୀଳ ରମଣୀୟ ଧରା ।।
ସୁନୀଳ ଗଗନ, ସିନ୍ଧୁ ରତନ ନିଳୟ
ଦରଶନେ ଦେଉଛନ୍ତି ତୁମ୍ଭ ପରିଚୟ ।।
ତୁମ୍ଭର ବିଶାଳ ପ୍ରୀତି ରମ୍ୟ ବସନ୍ତରେ
ଅବତରି ଧରାତଳେ ଆନନ୍ଦ ବିତରେ ।।
ତାରାମୟ ଗଗନକୁ ବିଦ୍ରୁମକୁ ବଳି
ମନୋଜ୍ଞ ପଲ୍ଲବ ଫୁଲେ ଶୋଭେ ବନସ୍ଥଳୀ ।।
ତରୁଡାଳେ ବସି ପିକ ତୁମ୍ଭ ପ୍ରେମଗୀତ
ମନୋହର ତାନେ ଗାଇ ରମେ ଲୋକ ଚିତ୍ତ ।।
ତୁମ୍ଭ ପରିମଳ ଘେନି ମଳୟ ପବନ
ବିଭୁଙ୍କ ପ୍ରସାଦ ବୋଲି କରେ ବିତରଣ ।।
ନିଦାଘରେ ତାପେ ଆଉ ତେଜେ ବିଭୂଷିତ
ତୁମ୍ଭର ମହିମା, ନାଥ, ହୁଅଇ ଉଦିତ ।।
ତୁମ୍ଭ ରବି ଏବେ ବୁଣେ ଖର ରଶ୍ମିରାଶି
ତହୁଁ ପରିଣାମେ ସୁଖ ଭୁଞ୍ଜେ ଧରାବାସୀ ।।
ବରଷାରେ ଘନମାଳା ଭୀମ ବେଶ ଧରି
ଗଗନେ ଘୋଟନ୍ତି ତୁମ୍ଭ ଆଜ୍ଞା ଅନୁସରି ।।
ଭୀଷଣ କୁଳିଶ ନାଦ, ଚପଳା ସ୍ଫୁରଣ
ତୁମ୍ଭ ଉପସ୍ଥିତି, ପ୍ରଭୋ, କରନ୍ତି ଘୋଷଣ ।।
ପ୍ରଚଣ୍ଡ ପ୍ରତାପେ ଏବେ ବହେ କଲ୍ଲୋଳିନୀ
ସିନ୍ଧୁ ସଙ୍ଗେ କରିବାକୁ ତୁମ୍ଭ ଜୟ ଧ୍ୱନି ।।
ଶରଦେ ବିମଳ ନଭେ ଚନ୍ଦ୍ରମା ବିମଳ
ପ୍ରଫୁଲ୍ଲ କୁସୁମ ରାଜି ସ୍ୱଚ୍ଛ ନଦୀ ଜଳ ।।

କେଦାରରେ ପକ୍ୱଶାଳୀ, ଜୀବ ହିତକର
ପ୍ରକାଶନ୍ତି ତୁମ୍ଭ ପ୍ରେମ ଅସୀମ ସୁନ୍ଦର ।।
ହେମନ୍ତ ଶିଶିରକାଳେ ତୁମ୍ଭର ଆଦେଶେ
ପ୍ରକୃତି ସାଜଇ ଅତି ଦୀନ ହୀନ ବେଶେ ।।
ଜଣାଏ ମାନବ ବର୍ଗେ ସମସ୍ତ ନଶ୍ୱର
ଚିରସ୍ଥାୟୀ ନୁହେ କିଛି ଜଗତ ଭିତର ।।
ସକଳ ଋତୁ ଏ ତୁମ୍ଭ ଆଜ୍ଞା ଅନୁସରି
ଚଳନ୍ତି ନିୟତି ଚକ୍ରେ ବିଭୋ ଏହିପରି ।।

## ପ୍ରେରିତ

ମାନ୍ୟବର ଶ୍ରୀଯୁକ୍ତ ଉତ୍କଳ ଦର୍ପଣ ସମ୍ପାଦକ ମହାଶୟ......ସମୀପେଷୁ

ସମ୍ପାଦକ ମହାଶୟ !

ଆପଣ ନୂଆ ସମ୍ପାଦକ । ଆପଣଙ୍କର ଦୋଷଗୁଣ ଅବଧି ଭଲ ରୂପରେ ଜାଣି ନାହୁଁ । ଅନେକ ସମ୍ପାଦକଙ୍କର ଏପରି ରୀତି ଯେ ଯାହା ସଙ୍ଗେ ପରିଚୟ ନାହିଁ, ବନ୍ଧୁତା ନାହିଁ, ଏପରି ଲୋକର ରଚନା ନିଜ ପତ୍ରସ୍ଥ କରନ୍ତି ନାହିଁ । କେହି କେହି ସମ୍ପାଦକ ନିଜ ଗ୍ରାମବାସୀମାନଙ୍କର ପତ୍ର ବ୍ୟତୀତ ଅନ୍ୟ ପତ୍ରରେ କଟାକ୍ଷପାତ କରନ୍ତି ନାହିଁ । କେହି କେହି ସମ୍ପାଦକ ସ୍ୱୟଂ ନିଜ ପତ୍ରିକାରେ ପତ୍ର ପ୍ରେରକ ରୂପେ ଅବତୀର୍ଣ୍ଣ ହୁଅନ୍ତି । ତେଣୁ ପତ୍ରିକାରେ ଅନ୍ୟ ଲୋକେ ସ୍ଥାନ ପାଇପାରନ୍ତି ନାହିଁ । ଆପଣ ସେହି ଧର୍ମାକ୍ରାନ୍ତ ବା ଅନ୍ୟ ଧର୍ମାକ୍ରାନ୍ତ ଏଥର ଜାଣିବୁ । ଆମ୍ଭର କୌଣସି ନବବନ୍ଧୁ ରଚନା ବିଷୟରେ ଆମ୍ଭର ଉପଦେଶ ପ୍ରାର୍ଥନା କରିଥିଲେ । ତାହାଙ୍କୁ ଆମ୍ଭେ ଯାହା ଯାହା ଲେଖିଅଛୁଁ ତାହାର ପ୍ରତିଲିପି ନିମ୍ନରେ ଦେଲୁଁ । ଏହା ଆପଣଙ୍କର ପତ୍ରରେ ଥିବାର ବିହିତ । ସ୍କୁଲରେ ପଣ୍ଡିତ ମହାଶୟଙ୍କ ଘଣ୍ଟା ଯେବେ ନ ଥାଆନ୍ତା ଛାତ୍ରମାନଙ୍କର ଧୈର୍ଯ୍ୟ ଲୋପ ହୁଅନ୍ତା । ସଂବାଦପତ୍ରରେ ଲଘୁ ବିଷୟ ଯେବେ ନ ଥିବ ନିରବଚ୍ଛିନ୍ନ ଗୁରୁ ପ୍ରସ୍ତାବମାନ ପଢ଼ି ପାଠକେ ବିରକ୍ତ ହେବେ ।

୧୪/୩/୭୩ } ଆପଣଙ୍କର ସଦାବଶମ୍ବଦ
ଭଦରଖ } ସାହିତ୍ୟାନୁରାଗୀ

"He lashed the vice but spared the name"

ମିତ୍ର ! ଉତ୍କଳ ଭାଷାର ସମ୍ପ୍ରତି ଶୈଶବାବସ୍ଥା ଉତ୍କଳ ଦେଶରେ ବିଦ୍ୱାନ୍ ବିରଳ ଦେଖାଯାଆନ୍ତି ସୁତରାଂ ଲେଖକ ବେଶି କାହୁଁ ହେବେ । ଅତଏବ ଯେ ଯେମନ୍ତ

ପୁସ୍ତକ ଲେଖନ୍ତୁ କିଛି ଦିନ ନିମନ୍ତେ ଅବଶ୍ୟ ତାହାଙ୍କୁ ଆଦର ଓ ପ୍ରତିଷ୍ଠା ମିଳିବ। ତୁମ୍ଭେ ଯେ ଲେଖକ ହେବାକୁ ବ୍ରତୀ ହୋଇଅଛ ଏ ସଂବାଦ ମୋହର ବଡ଼ ପ୍ରୀତିକର ଅଟେ। ମୋହର ଏକାନ୍ତ ବାଞ୍ଛା ତୁମ୍ଭକୁ ଶୀଘ୍ର ଲବ୍ଧପ୍ରତିଷ୍ଠ ଦେଖିବି। ମୋତେ ଉପଦେଶ ପ୍ରାର୍ଥନା କରିଅଛ। ମୁଁ ସେ ବିଷୟରେ ସ୍ୱୟଂ ପଟୁ ନୁହେ, ମାତ୍ର ଦେଶର ରୀତି ଗତି ଦେଖି ଯାହା ଜ୍ଞାତ ହୋଇଅଛି ତଦନୁଯାୟୀ ତୁମ୍ଭର ମଙ୍ଗଳ ଓ ଉତ୍କର୍ଷ ସାଧନ ନିମନ୍ତେ ନିମ୍ନ କଥାଗୁଡ଼ିକ ଲେଖୁଅଛି। ସେ କଥାଗୁଡ଼ିକ ଅନୁସରି ଚଳିଲେ ୧୦ ବର୍ଷର ଖ୍ୟାତି ବର୍ଷକରେ ମିଳିବ।

ଏକା ବେଳକେ ପୁସ୍ତକ ରଚନାରେ ପ୍ରବୃତ୍ତ ହେବାର ଭଲ ନୁହେଁ। ସଂବାଦପତ୍ରିକା ନବ ଲେଖକଙ୍କର ବ୍ୟାୟାମ ସ୍ଥଳୀ। ତେଣୁ ସଂବାଦପତ୍ରରେ ପ୍ରବନ୍ଧ ଲେଖିବାର ଅଭ୍ୟାସ କର। କାହାରି ପ୍ରଶଂସାସୂଚକ ପ୍ରବନ୍ଧ ଲେଖିଲେ ଶୀଘ୍ର ପ୍ରତିଷ୍ଠାଲାଭର ସମ୍ଭାବନା ନାହିଁ। କାହାରି ଚରିତ୍ରକୁ ଆକ୍ରମଣ କଲେ, କାହାରି ନାମରେ ଗ୍ଳାନି ସୂଚକ ପ୍ରବନ୍ଧ ଲେଖିଲେ, ନିରୀହ ଲୋକଙ୍କୁ କୌଶଳପୂର୍ବକ କାମୁଡ଼ିଲେ, ଶୀଘ୍ର ପ୍ରତିଷ୍ଠା ଲଭିବ। ବୈଦ୍ୟ କୌଣସି ରୋଗୀକୁ ଆରୋଗ୍ୟ କରି ଯେ ପ୍ରତିଷ୍ଠା ଲଭି ନ ପାରନ୍ତି ବିଲୁଆ ଜଣକୁ କାମୁଡ଼ି ସେଥିରୁ ଦଶଗୁଣ ପ୍ରତିଷ୍ଠା ଲଭଇ। କୌଣସି ଲୋକର ଚରିତ୍ରରେ କଳଙ୍କ ଆରୋପ କରିପାରିଲେ ତୁମ୍ଭକୁ ଲୋକେ ସାହସୀ ଓ ଦୁଷ୍ଟଦଳନ ବୋଲିବେ। ଯେଉଁ ପ୍ରବନ୍ଧଗୋଡ଼ି ଲେଖିବ ସେଥିରେ ''ଦେଶୋନ୍ନତି'', ''ମହାନୁଭାବ'', ''ସଭ୍ୟତା'', ''ସାମାଜିକ'', ''ମାତୃଭାଷା'' ପ୍ରଭୃତି ଶବ୍ଦମାନ ପର୍ଯ୍ୟାପ୍ତରୂପେ ବ୍ୟବହାର କରିବ। ପ୍ରବନ୍ଧ ତଳେ ଆପଣା ନାମ ସମ୍ପୂର୍ଣ୍ଣ ଲେଖିବ ନାହିଁ। କେବଳ ନାମର ଓ ସଞ୍ଜ୍ଞାର ପ୍ରଥମ ଅକ୍ଷର ଲେଖିବ। ସେହି ଅକ୍ଷରଗୁଡ଼ିକ ଇଂରାଜୀରେ ଲେଖିଲେ ଆହୁରି ପୁରୁଷାର୍ଥ ହେବ। ଇଂରାଜୀ ବର୍ଣ୍ଣମାଳା ଜଣା ନଥିଲେ ନିଜ ନାମ ଓ ପଦର ପ୍ରଥମ ଅକ୍ଷର ଶୀଘ୍ର ଶିଖି ପ୍ରତ୍ୟେକ ପ୍ରବନ୍ଧ ତଳେ ସେହି ଅକ୍ଷରମାନ ଦେବ। ଉଡ଼ିୟାରେ ସମଗ୍ର ନାମ ଦେଲେ ତୁମ୍ଭର ଇଂରାଜୀରେ ଅନଭିଜ୍ଞତା ପ୍ରକାଶ ହେବ। ଉଡ଼ିୟାରେ ଯେବେ ସାଠରେ ସ୍ୱାକ୍ଷର କରିବ ସେଥିରେ ବରଂ କିଞ୍ଚିତ୍ ପ୍ରତିଷ୍ଠାର ସମ୍ଭାବନା। ମାତ୍ର ଇଂରାଜୀରେ ସାଠରେ ଦସ୍ତଖତ କଲେ ନିକଟରେ ନ ହେଉ, ଦୂରରେ ଜଣେ ଇଂରାଜୀ ଭାଷାବିତ୍ ବୋଲି ପରିଚିତ ହେବ। ସାଠରେ ଦସ୍ତଖତ କରିବାର ଆହୁରି ଗୋଟିଏ ଉପକାର ଅଛି। ସାଠରେ ଦସ୍ତଖତ କଲେ ଲେଖକଙ୍କୁ ଜାଣିବା ନିମନ୍ତେ ପାଠକଙ୍କର ଆଗ୍ରହ ଜାତ ହୁଏ, ତେଣୁ ତୁମ୍ଭକୁ ଜାଣିବା ନିମନ୍ତେ ସମସ୍ତେ ଅନୁସନ୍ଧିତ୍ସୁ ହେବେ।

ଇଂରାଜୀ ଓ ସଂସ୍କୃତଭାଷା ଅନେକ ଶ୍ରମରେ, ଅନେକ କାଳରେ ଆୟତ୍ତ ହୁଏ। ମାତ୍ର ସେହି ପରିଶ୍ରମ ନ କରି ସେହି କାଳକ୍ଷେପ ନ କରି ଯେବେ ଇଂରାଜୀଜ୍ଞାତାର

ଓ ସଂସ୍କୃତଜ୍ଞତାର ପ୍ରତିଷ୍ଠା ମିଳିଲା ତେବେ ଏତେ ପରିଶ୍ରମରେ ଫଳ କ'ଣ । ଯେମାନେ ତୁମ୍ଭକୁ ଭଲ ରୂପେ ଜାଣନ୍ତି ସେମାନଙ୍କଠାରେ ଭାଷାରେ ତୁମ୍ଭର ପ୍ରକୃତ ବ୍ୟୁତ୍ପତ୍ତି ନ ଥିଲେ ପ୍ରତିଷ୍ଠା ଲଭି ପାରିବ ନାହିଁ । ମାତ୍ର ତୁମ୍ଭେ ଇଂରାଜୀ ଓ ସଂସ୍କୃତ ଜାଣ, ବିଦେଶୀୟମାନଙ୍କର ଏହି ସଂସ୍କାର ଜାତ କରାଇବା ନିମନ୍ତେ ତୁମ୍ଭର ଯେବେ ଉଦ୍ଦେଶ୍ୟ ଥିବ (ଏପରି ଉଦ୍ଦେଶ୍ୟ ଥିବାର ଉଚିତ) ତେବେ ନିମ୍ନ କୌଶଳ ଅବଲମ୍ବନ କଲେ ତୁମ୍ଭର ବାସନା ଚରିତାର୍ଥ ହେବ । ଯେଉଁ ଶ୍ଳୋକର ଅର୍ଥ ଜାଣ, ଏବଂ ପ୍ରସଙ୍ଗତଃ ସେହି ଶ୍ଳୋକର ବ୍ୟବହାର ଯେବେ ଆବଶ୍ୟକ ହେବ ପ୍ରବନ୍ଧ ମଧ୍ୟରେ ସେହି ଶ୍ଳୋକକୁ ସନ୍ନିବେଶିତ କରିବ । ସନ୍ନିବେଶିତ କରି ପୁଣି ପାଠକମାନଙ୍କଠାରେ ଏହିପରି ନମ୍ରୋକ୍ତି କରି କ୍ଷମା ପ୍ରାର୍ଥନା କରିବ ''ସଂସ୍କୃତାନଭିଜ୍ଞ ପାଠକେ ସଂସ୍କୃତ ଶ୍ଳୋକର ବ୍ୟବହାର ଦେଖି ବିରକ୍ତ ହୋଇ ପାରନ୍ତି । ଏଣୁ କରି ଭାଷାରେ ତାହାର ଅନୁବାଦ ଟୀକାରୂପରେ ସନ୍ନିବିଷ୍ଟ ହେଲା'' । ପ୍ରବନ୍ଧ ଲେଖୁ ଲେଖୁ ପ୍ରସଙ୍ଗତଃ ବେକନ, ସେକ୍ସପିଅର, ମେକଲେ, ଶିବନ ପ୍ରଭୃତିଙ୍କର ନାମର ଉଲ୍ଲେଖ କରିବ । କୌଣସି ଇଂରାଜୀଜ୍ଞ ବନ୍ଧୁର ସାହାଯ୍ୟ ନେଇ ଉକ୍ତ ଗ୍ରନ୍ଥକାରମାନଙ୍କ ଗ୍ରନ୍ଥରୁ ୩/୪ ଉକ୍ତିର ଅର୍ଥ ଜାଣି ସତେ ଇଂରାଜୀ ଜାଣି ଲେଖିଲା ପରି ପ୍ରସଙ୍ଗତଃ ସେଗୁଡ଼ିକ ବ୍ୟବହାର କରିବ । କେହି କେହି ସମ୍ବାଦପତ୍ର ସମ୍ପାଦକ ଇଂରେଜୀର ସମ୍ପୂର୍ଣ୍ଣ ଅରଣୀ ହୋଇ ସୁଦ୍ଧା ଲେଖନ୍ତି ''ଟାଇମସ ବୋଲନ୍ତି–'' ''ମିରର ବୋଲନ୍ତି–'' । ଏମାନଙ୍କର ଉଦାହରଣ ଅନୁସରି ଚଳିଲେ ବିଶେଷରେ ତୁମ୍ଭେ ଇଂରାଜୀଜ୍ଞ ବୋଲି ପ୍ରତିଷ୍ଠିତ ହେବ । ଇଂରାଜୀରେ Dictionary of classical quotations ନାମକ ଖଣ୍ଡିଏ ପୁସ୍ତକ ଅଛି । ସେଥିରେ ଗ୍ରୀକ୍ ଓ ଲାଟିନ ଗ୍ରନ୍ଥକାରମାନଙ୍କ ସଂସାର ଓ ଜ୍ଞାନଗର୍ଭ ଉକ୍ତି ଗୁଡ଼ିକ ବର୍ଣ୍ଣମାଳାକ୍ରମେ ବିନ୍ୟସ୍ତ ହୋଇଅଛି ଏବଂ ପ୍ରତ୍ୟେକ ଉକ୍ତିର ଇଂରାଜୀ ଅନୁବାଦ ମଧ୍ୟ ଅଛି । ଯେବେ ଇଂରାଜୀ ଜାଣିଥାଆନ୍ତ, ତେବେ ସେହି ପୁସ୍ତକ ପ୍ରସାଦରୁ ବିଦେଶରେ ଗ୍ରୀକ୍ ଓ ଲାଟିନ୍ ଭାଷାମାନଙ୍କରେ ବ୍ୟୁପନ୍ନ ବୋଲି ପରିଚିତ ହୋଇପାରନ୍ତ, ହେଲେ ହେଁ କୌଣସି ଇଂରାଜୀଜ୍ଞ ସାହାଯ୍ୟରେ ସେ ପ୍ରତିଷ୍ଠାସୁଦ୍ଧା ଅସୁଲଭ ନୁହେଁ । ବିଦେଶୀୟ ବ୍ୟକ୍ତି ତୁମ୍ଭର ରଚନା ଦେଖି ତୁମ୍ଭକୁ ଇଂରାଜୀଜ୍ଞ ବୋଲି ଜାଣନ୍ତି, ହଠାତ୍ ଯେବେ (ଦୈବ ନ କରୁ) ସେ ତୁମ୍ଭ ଦେଶକୁ ଆସିବେ ସେତେବେଳେ ଯେବେ ତୁମ୍ଭର ଅଜ୍ଞତା ପ୍ରକାଶ ହେବ ତେବେ ତୁମ୍ଭେ ଅପ୍ରତିଭ ହେବ । ମାତ୍ର ଲଜ୍ଜାକୁ ପରିତ୍ୟାଗ କଲେ ଲୋକେ ତ୍ରିଲୋକ ବିଜୟୀ ହୁଅନ୍ତି । ଏକା ଲଜ୍ଜାକୁ ଛାଡ଼ିଲେ ଯେବେ ଅନେକ ସୁବିଧା ମିଳିବ ଶୀଘ୍ର ନିର୍ଲଜ୍ଜତାର ଶରଣ ପଶିବ । ତେତେବେଳେ ତୁମ୍ଭେ ଆତ୍ମସମର୍ଥନ ନିମନ୍ତେ ଏହିପରି ଯୁକ୍ତି ଅବଲମ୍ବନ କରିବ ''ଟାଇମସ ଅମୁକେଇ କଥା ବୋଲନ୍ତି ମୁଁ ଏହା ଲେଖିଥିଲି । ଟାଇମସ ପଢ଼ି ଲେଖିଥିଲି ଅବା ଅନ୍ୟ କୌଣସି

ସୂତ୍ରରୁ ତାହା ଜାଣି ଲେଖିଥିଲି ସେ ବିଷୟ ସହିତ ଏହାର କୌଣସି ସମ୍ପର୍କ ନାହିଁ । ମୁଁ ଯାହା ଲେଖିଅଛି ତାହା ସତ୍ୟ ହେଲେତ ହେଲା'' ।

ସମ୍ବାଦପତ୍ରରେ ରଚିତ ପୁସ୍ତକମାନଙ୍କର ସମାଲୋଚନା କରିବ । ଯେଉଁ ଗ୍ରନ୍ଥକାରଙ୍କ ଗ୍ରନ୍ଥର ସମାଲୋଚନା କରିବ ତାହାଙ୍କୁ ନବଲେଖକ ଶ୍ରେଣୀରେ ଭୁକ୍ତ କରି ବିଦ୍ରୂପ କରିବ । ଅନ୍ୟକୁ ନବ୍ୟ ବୋଇଲେ ''ତୁମ୍ଭେ ପ୍ରାଚୀନତ୍ୱର ଅତଏବ ପ୍ରବୀଣତ୍ୱର ଖ୍ୟାତିକୁ ଲଭିବ । ସେହି ସୁବିଧାରେ ବାଲେଶ୍ୱରର ଗ୍ରନ୍ଥକାରମାନଙ୍କୁ ନିନ୍ଦା କରିବ, ପୁସ୍ତକର ସମାଲୋଚନା ବେଳେ ନିରବଚ୍ଛିନ୍ନ ନିନ୍ଦା ଲେଖିବ ନାହିଁ । ହେତୁକି ତେମନ୍ତ କଲେ ଲୋକେ ତୁମ୍ଭକୁ ବିଦ୍ୱେଷୀ ବୋଲିବେ । ମାତ୍ର ତା ସହିତରେ ପ୍ରଶଂସା ବା ନିନ୍ଦା କଲେ ଲୋକେ ତୁମ୍ଭକୁ ନିରପେକ୍ଷ ବୋଲିବେ । ପ୍ରଥମରେ ପ୍ରଶଂସା କଲେ ସମସ୍ତେ ପାଞ୍ଚିବେ ଯେ କାହାରି ଅନିଷ୍ଟ ଆଚରିବା ତୁମ୍ଭର ଅଭିପ୍ରେତ ନୁହେଁ । ପଛକୁ ନିନ୍ଦା କରିବ, ଆଉ ସେହି ନିନ୍ଦା ଅନିଚ୍ଛାପୂର୍ବକ ଅଗତ୍ୟା କରୁଅଛ ଏହିପରି ଛଳ କରିବ । ସମାଲୋଚନା ଏମନ୍ତ ଭଙ୍ଗୀରେ ଲେଖିବ ଯେ ଏକା ତୁମ୍ଭେ ଲେଖନୀ ଧାରଣ କଲ୍ଲେ ଉତ୍କଳର ସମଗ୍ର ଅଭାବ ନିରାକୃତ ହେବ, କେବଳ ତୁମ୍ଭେ ଲେଖିଲେ ଉତ୍କଳର ପ୍ରକୃତ ଉପକାର ହେବ । ଅନ୍ୟାନ୍ୟ ଲୋକେ ଯେ ଗ୍ରନ୍ଥକାର ହେବାର ଚେଷ୍ଟା କରନ୍ତି ଏହା ସେମାନଙ୍କର ଆସ୍ପର୍ଦ୍ଧା ବିନୁ ଆନ କିଛି ନୁହଇ । ସେମାନେ ତୁମ୍ଭ ହାତରେ ଉତ୍କଳ ସରସ୍ୱତୀଙ୍କୁ ସମର୍ପି ଦେଇ ନିଶ୍ଚିନ୍ତ ଥାଉନ୍ତୁ ।

ଲୋକେ ସଭ୍ୟ ହେଲେ ଗୋଟିଏ ସମୃଦ୍ଧିଶାଳୀ ଭୂତକାଳ କଳ୍ପନା କରି ବର୍ତ୍ତମାନକୁ ସେଥି ସଙ୍ଗେ ତୁଳନା କରି ବିଳାପ କରନ୍ତି । ଭୂତକାଳ ପ୍ରତି ଶ୍ରଦ୍ଧା ଓ ବର୍ତ୍ତମାନର ନିନ୍ଦା ବିଜ୍ଞତା ଓ ବହୁଜ୍ଞତାର ପରିଚାୟକ ଅଟେ । ଅତଏବ ମୋହର ଉପଦେଶ ଏହି କି ଉଡ଼ିଶ୍ୟାର ପ୍ରାଚୀନ ସମୟର ବହୁ ବିସ୍ତୃତ ବର୍ଣ୍ଣନା କରିବ, ବର୍ତ୍ତମାନର ନିନ୍ଦା କରିବ । ଉତ୍କଳୀୟମାନେ ପୂର୍ବକାଳରେ ପଣ୍ଡିତ ଶୂର, ବଳିଷ୍ଠ ଥିବାର ଲେଖିବ । ଏହି ପ୍ରସଙ୍ଗ ଲେଖିବା ବେଳେ ଭାଷାର ଯଥେଷ୍ଟ ଆଡ଼ମ୍ବର କରିବ । ''ଉତ୍କଳର ସୌଭାଗ୍ୟ ରବି ଅସ୍ତମିତ ହୋଇଅଛି । ଦୁର୍ଭାଗ୍ୟରୂପ ତମୋମୟୀ ରଜନୀ ସମ୍ପ୍ରତି ଭାରତ ଶିରୋଭୂଷଣା ଉତ୍କଳ ଭୂମିକୁ ଗ୍ରାସ କରିଅଛି ।'' ମତେ ଆସୁ ନାହିଁ, ଏହିପରି ଲେଖିବ । ବାଲ୍ମୀକି ରାମାୟଣରେ ପୁଷ୍ପକର ବର୍ଣ୍ଣନା କରିଅଛନ୍ତି ବୋଲି ଅନେକ ଲୋକେ ସେହି ବର୍ଣ୍ଣନାରୁ ଏହି ସିଦ୍ଧାନ୍ତ କରନ୍ତି ଯେ ଭାରତବର୍ଷର ପ୍ରାଚୀନ ଲୋକେ ବ୍ୟୋମଯାନ ନିର୍ମାଣ କୌଶଳ ଜାଣିଥିଲେ । ଉତ୍କଳୀୟ କୌଣସି କବିର କୌଣସି ଉକ୍ତିର ସେହି ରୂପ କ୍ଲିଷ୍ଟ ଅର୍ଥ କରି ଉତ୍କଳୀୟମାନେ ପୂର୍ବରେ ଟେଲିଗ୍ରାଫ ଜାଣିଥିଲେ ଏହା ଯେବେ ଆବିଷ୍କାର କରିପାରିବ ତାହା ହେଲେ ତୁମ୍ଭର ଅସୀମ ପୁରୁଷାର୍ଥ ହେବ ।

ବଙ୍ଗାଳୀ ଶିକ୍ଷକମାନଙ୍କଠାରେ *ବିଦ୍ୱେଷିତା ଦେଶହିତୈଷିତାର ଗୋଟିଏ ପ୍ରଧାନ ପରିଚାୟକ ଅଟେ । ଯେ ଯେଉଁ ପରିମାଣରେ ବଙ୍ଗାଳୀ ଶିକ୍ଷକମାନଙ୍କୁ ନିନ୍ଦା କରିବେ, ବିଦ୍ୱେଷ କରିବେ ସେ ସେହି ପରିମାଣରେ ଦେଶହିତୈଷୀ ବୋଲି ପ୍ରତିଷ୍ଠିତ ହେବେ । ବାସ୍ତବରେ ବଙ୍ଗାଳୀ ଶିକ୍ଷକମାନେ ଉଡ଼ିଶ୍ୟାର ଅତ୍ୟନ୍ତ ଅନିଷ୍ଟ ସାଧୁଅଛନ୍ତି । ସେମାନେ ଉଡ଼ିଶ୍ୟାରେ ନ ଥିଲେ ଉଡ଼ିଶ୍ୟାରେ କଣ କର୍ମ ଚଳିପାରିବ ନାହିଁ ? ଉତ୍କଳୀୟମାନେ ମୁନଶଫ ହୋଇ ଅଛନ୍ତି, ଡିପୋଟିକଲେଟର ହୋଇ ଅଛନ୍ତି । ମାଷ୍ଟରି କର୍ମ ଅବା ଏମନ୍ତ କଉଁ ବଡ଼ କର୍ମ ଯେ ଏମାନେ ନ ପାରିବେ । ଅତଏବ ସଂବାଦ ପତ୍ରରେ ଯେଉଁ ପ୍ରବନ୍ଧ ଲେଖିବ ସେଥିରେ ବଙ୍ଗାଳୀ ଶିକ୍ଷକମାନଙ୍କୁ ଉଡ଼ିଶ୍ୟାରୁ ତଡ଼ିଦେବା ନିମନ୍ତେ ରାଜପୁରୁଷମାନଙ୍କୁ ଦୃଢ଼ରୂପେ ଅନୁରୋଧ କରିବ ।

ସମ୍ବାଦପତ୍ରିକାରେ କିଛିଦିନ ଯୁଦ୍ଧ କଲା ଉତ୍ତାରୁ ପୁସ୍ତକ ରଚନାରେ ପ୍ରବୃତ୍ତ ହେବ । କୌଣସି ବଙ୍ଗଳା ଗ୍ରନ୍ଥକୁ ଉଡ଼ିୟା ଅନୁବାଦ କରିବାର ସବୁଠାରୁ ସହଜ ଉପାୟ ଅଟେ । ବିଶୁଦ୍ଧ ଉଡ଼ିୟା ଲେଖିବାର ତୁମ୍ଭର ଯେବେ ଇଚ୍ଛା ଥିବ କଚେରିର କାଗଜାତ ପଢ଼ିଲେ ସେ ବିଷୟରେ ଶୀଘ୍ର ପଟୁତା ଲଭିବ । ସାଧାରଣର ଏହି ସଂସ୍କାର ଯେ ବଙ୍ଗଳାରୁ ଉଡ଼ିୟା ଭାଷା ଯେ ପରିମାଣରେ ବିସଦୃଶ ହେବ ସେ ଉଡ଼ିୟା ସେହି ପରିମାଣରେ ବିଶୁଦ୍ଧ ଅଟେ । ସାଧୁ ବଙ୍ଗଭାଷାକୁ ସାଧୁ ଉତ୍କଳଭାଷାରେ ଅନୁବାଦ କଲେ ଦୁହିଁଙ୍କର ଅନେକ ସାଦୃଶ୍ୟ ଥାଏ; ମାତ୍ର ଉଡ଼ିଆରେ କଚେରି ଭାଷା ମିଶାଇଲେ ସେହି ସାଦୃଶ୍ୟ ହ୍ରାସକୁ ଲଭେ, ଏଥିପାଇଁ କେହି ଜଡ଼ ଲେଖକ କଚେରି ସରସ୍ୱତୀର ଆରାଧନା କରି ବିଶୁଦ୍ଧ ଉଡ଼ିଆ ଲେଖକର ପ୍ରତିଷ୍ଠା ଲଭିଅଛନ୍ତି ।

ଉଲ୍ଲିଖିତ କାରଣରୁ "ସମୟ" ପରିବର୍ତ୍ତରେ "ସମୟା" "ଉପରିସ୍ଥ" ପରିବର୍ତ୍ତରେ "ଉପରନ୍ତ" "ନିମିତ୍ତ" ପରବର୍ତ୍ତରେ "ନିମନ୍ତ" "ଉପମା" ପରିବର୍ତ୍ତେ "ଉପାମା" "ଆଶ୍ଚର୍ଯ୍ୟାନ୍ୱିତ" ପରିବର୍ତ୍ତରେ "ତାଟଙ୍କା", "ମଧ୍ୟେ" ପରିବର୍ତ୍ତରେ "ମଇଧ୍ୟେଁ" "ଭାଜନ" ପରିବର୍ତ୍ତରେ "ଭାର୍ଜନ" ବ୍ୟବହାର କରିବ । ମୁଁ କେତେଗୁଡ଼ିଏ ଉଦାହରଣ କହିଲି; ଉତ୍କଳର ଆଧୁନିକ ସାହିତ୍ୟରେ ବ୍ୟୁତ୍‌ପତି ଲଭିଲେ ଅନ୍ୟ ଅନ୍ୟ କଥାମାନ ଆପେ ଆସିବ ।

ଯେଉଁ ପୁସ୍ତକ ଅନୁବାଦ କରିବ ସେଥିର ଭୂମିକାରେ ସ୍ୱକୀୟ ସ୍ୱାର୍ଥଶୂନ୍ୟତା ଓ ବିନୟବତ୍ତାର ବିଶେଷ ଆଡ଼ମ୍ବର କରିବ । ପ୍ରତିଷ୍ଠା ଯଶ ଅବା ଅର୍ଥ ଲଭିବା ନିମନ୍ତେ ତୁମ୍ଭେ ପୁସ୍ତକ ଲେଖି ନାହଁ କେବଳ କୌଣସି ଅଭାବ ନିରାକରଣ ତୁମ୍ଭର ଉଦ୍ଦେଶ୍ୟ ଅଟେ ଏହି ପରି ଛଳ କରିବ । ଅନ୍ତରେ ସ୍ୱାର୍ଥ ବାହାରେ ହିତାହିତ ଜ୍ଞାନ

* ଅର୍ଥାତ୍ ଯେଉଁମାନେ ସୁବର୍ଣ୍ଣରେଖାର ଉତ୍ତରେ ଜନ୍ମିଥିବାର ଦୋଷରେ ଦୋଷୀ ଅଟନ୍ତି । (ସ)

ଅନୁସରି ଚଳିବ । 'ମାଦୃଶ ଲେଖକର ଗ୍ରନ୍ଥରେ ଅନେକ ଭ୍ରମ ଲକ୍ଷିତ ହେବାର ସମ୍ଭାବନା ପାଠକେ କ୍ଷମା କରିବେ'' ଏହିପରି ନମ୍ରୋକ୍ତି କରିବ । ଭୂମିକାରେ ପ୍ରଚଳିତ ଶିକ୍ଷା ପ୍ରଣାଳୀ ଉପରେ ଦୋଷାରୋପ କରିବ, ସେହି ପ୍ରସଙ୍ଗରେ ଶିକ୍ଷକମାନଙ୍କୁ ମଧ୍ୟ ଦୁଇ ଚାରି କଟୁକ୍ତି କରିବ, ଏବଂ ତୁମ୍ଭର ଆବିଷ୍କୃତ ନୂଆ ପ୍ରଣାଳୀର ଉପଯୋଗିତା ପ୍ରତିପାଦନ କରିବ । ଭୂମିକା ତଳେ କେବଳ ଆପଣା ନାମ ଦେଇ କ୍ଷାନ୍ତ ହେବ ନାହିଁ । ଗ୍ରାମ, ପରଗନା* ମଧ ଲେଖିବ । ହେତୁକି ଏମନ୍ତ କଲେ ତୁମ୍ଭର ଜୀବନ ବୃତ୍ତାନ୍ତ ରଚୟିତାମାନଙ୍କର ଅନେକ ସୁବିଧା ହେବ । ଗ୍ରାମର ନାମ ନିର୍ଦ୍ଦେଶର ଆହୁରି ଗୋଟିଏ ଫଳ ଅଛି । ତୁମ୍ଭ ସଙ୍ଗେ ସଙ୍ଗେ ତୁମ୍ଭର ଗ୍ରାମ ସୁଦ୍ଧା ବିଶ୍ୱବିଖ୍ୟାତ ହେବ ।

''କୁସୁମ ପରଶେ ପଟ ନିସ୍ତରେ''

ଏପରି ଅଜାଣିତ ସ୍ଥାନରେ ଏଡ଼େ ଲୋକ ଜନ୍ମଗ୍ରହଣ କରିଥିଲେ ବୋଲି ଲୋକେ ଆଶ୍ଚର୍ଯ୍ୟାନ୍ୱିତ ହେବେ । ପଦ୍ମକୁ ''ପଙ୍କଜ'' ବୋଇଲେ ଆହୁରି ଭଲ ହେବ । ଷ୍ଟାଟଫୋର୍ଡ଼ରେ ସେକ୍ସପିଅର ଜନ୍ମିଥିଲେ ବୋଲି କେତେ ଲୋକ ଆଗ୍ରହପୂର୍ବକ ଷ୍ଟାଟଫୋର୍ଡ଼ ଦେଖିବାକୁ ଯାଆନ୍ତି । ତୁମ୍ଭର ଗ୍ରାମକୁ ମଧ୍ୟ ସେହି ରୂପେ ଅନେକ ଲୋକ ଯିବେ । କାଳିଦାସ ପ୍ରଭୃତି କବିମାନେ ନିଜ ଗ୍ରନ୍ଥରେ ନିଜ ଜନ୍ମସ୍ଥାନର ନାମ ନିର୍ଦ୍ଦେଶ କରି ନାହାନ୍ତି । ସେମାନେ ଯାହା ରଚିଥିଲେ ତାହା ଯେ ଏପରି ପ୍ରତିଷ୍ଠା ଲଭିବ ଏହା ସେମାନଙ୍କୁ ଜଣା ନ ଥିଲା । ସେମାନେ ଅସଭ୍ୟ ଥିଲେ । ମାତ୍ର ତୁମ୍ଭେତ ଜାଣ ତୁମ୍ଭର ପୁସ୍ତକ ବିଶ୍ୱବିଖ୍ୟାତ ହେବ, ତେବେ ଜନ୍ମସ୍ଥଳୀର ନାମ କିପାଁ ନିର୍ଦ୍ଦେଶ ନ କରିବ ?

ସୁବିଧାକ୍ରମେ ଭୂମିକାରେ ବାଲେଶ୍ୱରୀ ଓଡ଼ିଆର ନିନ୍ଦା ଲେଖିବ, କଟକୀ ଓଡ଼ିଆକୁ ବିଶୁଦ୍ଧ ଓଡ଼ିଆ ବୋଲିବ । ଏମନ୍ତ ନ କଲେ କେହି ତୁମ୍ଭର ଭାଷାକୁ ବିଶୁଦ୍ଧ ଓଡ଼ିଆ ବୋଲିବେ ନାହିଁ ।

ଛାନ୍ଦ ଗୀତ ରଚନା ସବୁଠାରୁ ଯଶସ୍କର ଅଟେ । କାରଣ ଗଦ୍ୟତ ଖାଲି ''କଥା ଗୁଡ଼ାଏ'' । ତେଣୁ ଗଦ୍ୟ ସମସ୍ତେ ଲେଖିପାରନ୍ତି । ଓଡ଼ିଆ ଛାନ୍ଦ ଗୀତ ପରି କବିତା ମହୀମଣ୍ଡଳରେ ନାହିଁ । ସେଥିରେ ପୁଣି ଯମକ ପଦ୍ୟମାନ ଥିଲେ ମଣି କାଞ୍ଚନ ହେଲା । କେହି କେହି ଅରସିକ ଲୋକ ଭାବକୁ ପ୍ରଧାନ କରି ଘେନନ୍ତି । ମାତ୍ର ତେମନ୍ତ ଅରସିକ ଉପଦେଷ୍ଟାର ବାକ୍ୟରେ କର୍ଣ୍ଣପାତ କରିବ ନାହିଁ । ଛାନ୍ଦ ଗୀତ ରାଗଧରି ବୋଇଲେ ଯେଡ଼େ ମଧୁର ଲାଗଇ, କୌଣସି କବିତା ତେମନ୍ତ ମଧୁର ଲାଗିବ ନାହିଁ । ମିତ୍ରାକ୍ଷର ଛାନ୍ଦ ଗୀତର ଗୌରବ ରକ୍ଷାରେ ସବୁବେଳେ ତତ୍ପର ଥିବ । ଏଠାରେ ବଙ୍ଗଳାଦେଶରେ ଅମିତ୍ରାକ୍ଷର କବିତାରୁ ସର୍ଜନା ହେବାରୁ ବଙ୍ଗ

* ଭଉଁରିଆ ନମ୍ବର ଦେଲେ ଆହୁରି ଭଲ ହେବ । (ସ)

କବିତାର ମାଧୁରୀ ଲୁପ୍ତ ହେଲାଣି । ଉତ୍‌କଳରେ ସେପରି ଆଶଙ୍କାର କାରଣ ନାହିଁ । ହେତୁକି ଉତ୍କଳ ସାହିତ୍ୟାନୁରାଗୀମାନେ ଏମନ୍ତ ଅରସିକ ନୁହନ୍ତି ଯେ ଅମିତ୍ରାକ୍ଷର ପଦ୍ୟରେ ସେମାନଙ୍କର ଶ୍ରଦ୍ଧା ଜାତ ହେବ ।

କବି ହେବାର ତୁମ୍ଭର ଯେବେ ବାସନା ଥିବ ପ୍ରଥମରେ ଚୌପଦୀର ରଚନା ଅଭ୍ୟାସ କରିବ । ଚୌପଦୀରେ ଆଦିରସର ପ୍ରାଚୁର୍ଯ୍ୟ ରଖିବ । ମୁକ୍ତ ହସ୍ତରେ ‘‘ନୀବି’’ ‘‘ମାର’’ ‘‘ଉରଜ’’ ‘‘କୋକିଳ ବଚନା’’ ‘‘ଏଣୀ ନୟନା’’ ‘‘ଭ୍ରମରକେଶୀ’’ ‘‘କମ୍ବୁକଣ୍ଠୀ’’ ପ୍ରଭୃତି ଶବ୍ଦମାନ ବ୍ୟବହାର କରିବ । କବିମାନଙ୍କର ସରସ୍ୱତୀ ଉଚ୍ଛୃଙ୍ଖଳ ଅଟନ୍ତି । ସୁତରାଂ ଯେତେଥର ପାରିବ, ଯେତେଥର ପ୍ରୟୋଜନ ହେବ, ଯେତେଥର ସୁବିଧା ହେବ, ବ୍ୟାକରଣ ନିୟମ ଲଙ୍ଘନ କରିବ । କାବ୍ୟ ଲେଖିବା ବେଳେ ବର୍ଣ୍ଣନୀୟ ବିଷୟପ୍ରତି ବିଶେଷ ଦୃଷ୍ଟି ନ ରଖି, ପର୍ବତବର୍ଣ୍ଣନ, ସନ୍ଧ୍ୟା ବର୍ଣ୍ଣନ, ପ୍ରଭାତ ବର୍ଣ୍ଣନ, ରୂପବର୍ଣ୍ଣନ ଅଧିକ ପରିମାଣରେ କରିବ । ଉପେନ୍ଦ୍ର ଭଞ୍ଜଙ୍କୁ ଆଦର୍ଶରୂପରେ ଥୋଇ ଲେଖିବ । ଦୀନ କୃଷ୍ଣଙ୍କୁ ଆଦର୍ଶ କରିବା ନିମନ୍ତେ କହନ୍ତି । ମାତ୍ର ଉତ୍କଳର ସହୃଦୟ ଗୋଷ୍ଠୀରେ ଭଞ୍ଜୀୟ ରଚନାର ସମଧିକ ଗୌରବ ହେତୁକି ସେଥିରେ ଅଧିକ ଗାମ୍ଭୀର୍ଯ୍ୟ ଅଛି । ଏମନ୍ତ ଲେଖିବ ଯେ ପ୍ରତି ଚରଣରେ ୮।୧୦ ଥର ଅଭିଧାନ ଉଲଟାଇବାର ପ୍ରୟୋଜନ ହେବ । ମାତ୍ର ମୋହର ଗୋଟିଏ କଥା ରଖିବ, ଯେଉଁ କାବ୍ୟ ଗ୍ରନ୍ଥମାନ ରଚିବ ସ୍ୱୟଂ ସେଥିର ଟୀକା ମଧ୍ୟ ଲେଖିବ ।

ବର୍ତ୍ତମାନ ଯାହା ମନରେ ପଡ଼ିଲା ଲେଖିଲି । ପଛକୁ ଆହୁରି ଲେଖିବି । କାର୍ଯ୍ୟାନ୍ତର ଉପସ୍ଥିତ ହେବାରୁ ଲେଖନୀକୁ ବିଶ୍ରାମ ଦେଲି । ତୁମ୍ଭର ଅଭୀଷ୍ଟ ସିଦ୍ଧି ହେଉ ଏହା ମୋହର ଏକାନ୍ତ ଅଭିଳାଷ ।

ତୁମ୍ଭର ନିତ୍ୟ ହିତାକାଂକ୍ଷୀ

## ରହସ୍ୟ

ଜଣେ ପରୀକ୍ଷକ ଜଣେ ପଣ୍ଡିତଙ୍କୁ ବଙ୍ଗଳା ନୀତିବୋଧରୁ ପରୀକ୍ଷା କରୁଥିଲେ । ପରୀକ୍ଷକ ପ୍ରଶ୍ନ କଲେ ‘‘ପଣ୍ଡିତ ମହାଶୟ ! କାଉଁଣ୍ଟ ପଡ଼ସ୍କି ବିୟେନାହଇତେ ଶକଟାରୋହଣେ ସସ୍ତ୍ରୀକ ଡ୍ରାକୋ ଯାତ୍ରା କରିଲେନ । ଇହାର ଅର୍ଥ କି’’ ପଣ୍ଡିତ କିଛି କାଳ ଭାବି ବୋଇଲେ ‘‘ତିନି ବିଏ ନାହଇତେ ନାହଇତେ ସସ୍ତ୍ରୀକ ଶକଟାରୋହଣେ ଯାଇତେ ଛିଲେନ ।’’ ପରୀକ୍ଷକ ହସି ବୋଇଲେ ‘‘ସେ କି ମହାଶୟ ? ବିଏ ନା ହଇତେ ହଇତେ ସସ୍ତ୍ରୀକ ? ପଣ୍ଡିତ ମୌନୀ ହୋଇ ରହିଲେ, ପଛକୁ ଭାବି ବୋଇଲେ ‘‘ହାଁ ମହାଶୟ ଇଂରେଜେଦେର ସେ ରୂପ ହଏ ଥାକେ !’’

ଜଣେ ବ୍ରାହ୍ମଣ ପଣ୍ଡିତ ଜଣେ ସାହେବଙ୍କୁ ପଢ଼ାଉଥିଲେ । ସାହେବଙ୍କ ହତାରେ ଗୋଟିଏ ଷଣ୍ଢ ଚରୁଥିଲା । ସାହେବ ହସ୍ତ ଦେଖାଇ ବୋଇଲେ "ପଣ୍ଡିତେ ! ତୁମ୍ଭର ଦେବତା ଚରୁଛନ୍ତି ଦେଖୁଛଟିକି" ? ପଣ୍ଡିତ "ହଁ ତାହାଙ୍କୁ କିପାଁଇ ଆଣିଅଛନ୍ତି" ? ସାହେବ ହସ୍ତ ଦେଖାଇ ବୋଇଲେ "ଦ୍ୱିଖଣ୍ଡ କାରଣ" । ପଣ୍ଡିତ "ରାମ ! ରାମ ! ଆପଣ ପୁଣ୍ୟାତ୍ମା, ଏପରି କହିବେତ ଆଉ–" ସାହେବ ହସି ବୋଇଲେ "ନା ତୁମ୍ଭେମାନେ ଜାଣ ନାହିଁ, ପରମେଶ୍ୱର ଆମ୍ଭମାନଙ୍କ ଆହାର ନିମନ୍ତେ ସେମାନଙ୍କୁ ସର୍ଜନା କରିଅଛନ୍ତି, ମାଂସ ରାଶୀକୃତ କରି ଠାକରେ ରଖିଲେ ପଚିଯିବ ଏଥି ନିମନ୍ତେ ଟିକେ ଟିକେ ଜୀବନ ଦେଇ ଏମାନଙ୍କୁ ଛାଡ଼ି ଦେଇ ଅଛନ୍ତି ।"

ଜଣକର ତିନି ଗୋଟି ସନ୍ତାନ ଥିଲେ । ପ୍ରଥମଟି କିଛି ଲେଖାପଢ଼ା ଶିଖି ନ ଥିଲେ କେବଳ ଆମୋଦରେ ଦିନ ଗମୁ ଥିଲେ । ଦ୍ୱିତୀୟ, ତୃତୀୟ ଅତିଶୟ ବିଷୟଜ୍ଞ ଓ କର୍ମଠ ଥିଲେ । ଗୃହସ୍ଥ ଆପଣାକୁ ଆସନ୍ନ ମୃତ୍ୟୁ ଜାଣି ଦ୍ୱିତୀୟ, ତୃତୀୟ ଦୁଇ ପୁତ୍ରକୁ ଡାକି ବିଷୟ ବିଭାଗ କରି ଦେଲେ ବୋଇଲେ "ତୁମ୍ଭେ ଦୁଇ ଜଣ ଏହି ବିଷୟମାନ ଭୋଗ କରିବ । ତୁମ୍ଭେ ଦୁଇଜଣ ସବୁବେଳେ ଆଜ୍ଞାବହ ଥିଲ" । ପୁତ୍ରଦ୍ୱୟ କହିଲେ "ନା ପିତଃ ! ଆମ୍ଭମାନଙ୍କର ସେଥିରେ ପ୍ରୟୋଜନ ନାହିଁ ତୁମ୍ଭେ ଦୀର୍ଘଜୀବୀ ହୋଇ ତାହା ଭୋଗ କର । ପୁଣି ଗୃହସ୍ଥ ଜ୍ୟେଷ୍ଠ ପୁତ୍ରକୁ ଡାକି ବୋଇଲେ "ତୁ ମୋତେ ଚିରକାଳ ବିରକ୍ତ କରିଅଛୁ ମୁଁ ତୋତେ କିଛି ବିଷୟ ଦେବି ନାହିଁ, ତୁ ଏହି ଅଣାକ ପଇସା ନେ ଏଥିରେ ଖଣ୍ଡେ ଦଉଡ଼ି କିଣି ଆଣି ଫାଶି ଦେଇ ମରିବୁ" । ସେ ବୋଇଲା "ନା ପିତଃ ମୋହର ସେଥିରେ ପ୍ରୟୋଜନ ନାହିଁ ତୁମ୍ଭେ ଦୀର୍ଘଜୀବୀ ହୋଇ ତାହା ଭୋଗ କର ।"

ଦୁଇଜଣ ମତୁଆଲା ହୋଇ ଏକ ପୁଷ୍କରିଣୀ ପାର୍ଶ୍ୱ ଦେଇ ଯାଉଥିଲେ । ପୁଷ୍କରିଣୀ ପାର୍ଶ୍ୱରେ ଗୋଟିଏ ତାଳଗଛ ଥିଲା । ଜଣେ ତାହା ସଙ୍ଗୀକୁ ପଚାରିଲା ପୁଷ୍କରିଣୀରେ ଯେବେ ନିଆଁ ଲାଗିବ ମାଛମାନେ କଣ କରିବେ" । ସେ ବୋଇଲା, "ଏହି ତାଳଗଛରେ ଚଢ଼ିବେ ।" ଆନ ବ୍ୟକ୍ତି ବୋଇଲା "ଦୁଃ ସେମାନେ କଅଣ ଗୋରୁ ?" ।

## ବିବିଧ ସଂବାଦ

ସ୍ଥାନୀୟ ରାଜପୁରୁଷମାନଙ୍କ ଉପରେ ସ୍କୁଲ ପର୍ଯ୍ୟବେକ୍ଷଣ ଭାରାର୍ପଣର ଆଦ୍ୟ ଶୁଭଫଳ ଫଳିଅଛି । ଗତ ଝଟିକାରେ ବାଲେଶ୍ୱର ଜିଲ୍ଲାସ୍ଥିତ କେତେଗୁଡ଼ି ସ୍କୁଲଗୃହର ବିଶେଷ କ୍ଷତି ହୋଇଥିବାରୁ ଆମ୍ଭମାନଙ୍କର ସୁଯୋଗ୍ୟ ମେଜେଷ୍ଟ୍ରେଟ ବିଶେଷ ଯତ୍ନ

କରି ସେମାନଙ୍କର ସଂସ୍କାର ନିମନ୍ତେ ସରକାରର ଅର୍ଥ ସାହାଯ୍ୟ ମଞ୍ଜୁର କରାଇ ଅଛନ୍ତି । ପ୍ରଶଂସିତ ମହାତ୍ମା ଯତ୍ନ କରିନଥିଲେ ଏ ସାହାଯ୍ୟ କଦାପି ମିଳି ନ ଥାଆନ୍ତା । ଶିକ୍ଷାସଂକ୍ରାନ୍ତ ବିଷୟର ଭାର ସ୍ଥାନୀୟ ରାଜପୁରୁଷମାନଙ୍କଠାରେ ବର୍ତ୍ତିବାରୁ ଆମ୍ଭେମାନେ ଯେପରି ଆହ୍ଲାଦିତ ହୋଇଅଛୁଁ, ବୀମ୍‌ସ ମହୋଦୟଙ୍କ ହାତରେ ବର୍ତ୍ତିବାରୁ ତତୋଽଧିକ ଆହ୍ଲାଦିତ ହୋଇଅଛୁଁ ।

ଆମ୍ଭେମାନେ ଆନନ୍ଦସହିତ ସ୍ୱୀକାର କରୁଅଛୁଁ ଯେ ଆମ୍ଭମାନଙ୍କ ପତ୍ରିକା ପରିବର୍ତ୍ତରେ ରାଜସାହୀ ସଂବାଦ ଓ ବାଲେଶ୍ୱର ସଂବାଦ ବାହିକାର ସମ୍ପାଦକ ଅନୁଗ୍ରହ କରି ରୀତିମତ ସେମାନଙ୍କ ପତ୍ରିକା ପଠାଇ ଅଛନ୍ତି ।

କଲିକତା ମହାନଗରରେ ପୂର୍ବତନ ଯେଉଁ ହିନ୍ଦୁ କଲେଜ ଥିଲା ବର୍ଷ କୁଡ଼ିଏ ହେଲା ତାହା ଭାଙ୍ଗି ଦୁଇଟା କାଲେଜ ହୋଇଥିଲା । ଗୋଟିକର ନାମ ପ୍ରେସିଡେନ୍‌ସି କାଲେଜ ଆଉ ଗୋଟିକର ନାମ ମେଟ୍ରପଲିଟାନ କଲେଜ । ପ୍ରେସିଡେନ୍‌ସି କାଲେଜର ଖରଚ ନିର୍ବାହ ଓ ରକ୍ଷଣାବେକ୍ଷଣ ପରିଦର୍ଶନ ପ୍ରଭୃତିର ଭାର ଗଭର୍ଣ୍ଣମେଣ୍ଟ ଗ୍ରହଣ କରିଥିଲେ ଆଉ ମେଟ୍ରପଲିଟନ କାଲେଜର କାର୍ଯ୍ୟ ଓ ରକ୍ଷଣଭାର କଲିକତାସ୍ଥ ଧନାଢ଼୍ୟ ବାବୁମାନେ ନେଇଥିଲେ, ଆଦ୍ୟ କାଲେଜ ଏପର୍ଯ୍ୟନ୍ତ କ୍ରମଶଃ ଉନ୍ନତି ପ୍ରାପ୍ତ ହୋଇଅଛି ଅନ୍ତିମ ବିନଷ୍ଟ ହୋଇଯାଉଅଛି, କିନ୍ତୁ ପ୍ରେସିଡେନସି କାଲେଜ ଉନ୍ନତିଶୀଳ ହେଲେ ସୁଦ୍ଧା ଏପର୍ଯନ୍ତ ପୁରୁଣା ହିନ୍ଦୁ କାଲେଜ କ୍ଷୁଦ୍ର ଗୃହରେ ହେଉଅଛି । ଆମ୍ଭମାନଙ୍କର ବର୍ତ୍ତମାନ ଲେଫ୍‌ଟନେଣ୍ଟ ଗବର୍ଣ୍ଣର ଏହି ମହତ୍ କାଲେଜର ଗୃହପାଇଁ ତିନି ଲକ୍ଷ ଟଙ୍କା ଖରଚ ମଞ୍ଜୁର କରିଅଛନ୍ତି ।

ବିଗତ ଫେବୃୟାରି ମାସର ତା ୨୬ ରିଖରେ ସେହି ଗୃହର ବୁନିୟାଦ ଭିତ୍ତିର ଆଦ୍ୟ ପ୍ରସ୍ତର ସ୍ଥାପିତ ହେଲା । ଭାରତବର୍ଷର ବର୍ତ୍ତମାନ ଗଭର୍ଣ୍ଣର ଜେନେରାଲ ଲର୍ଡ଼ ନର୍ଥ ବ୍ରୁକ୍ ସ୍ୱହସ୍ତରେ ସେହି ପଥର ମେସ୍‌ନିକ ମତେ ଭିତ୍ତିତଳେ ନ୍ୟସ୍ତ କଲେ ପ୍ରସ୍ତର ତଳେ ଗୋଟିଏ ଗାତ ଭିତରେ ଏଦେଶସ୍ଥ ଅନେକ ଖବର କାଗଜ ଏ ଦେଶ ପ୍ରଚଳିତ ସବୁ ମୁଦ୍ରା ଓ ତାରିଖ ପ୍ରଭୃତି ଖୋଦିତ ଖଣ୍ଡେ ଧାତୁପଟ୍ଟା ଗୋଟାଏ ବୁଁତଲରେ ଭର୍ତ୍ତି କରି ଉକ୍ତ ମହୋଦୟ ରଖିଲେ । ଏଥି ଉତ୍ତାରୁ ସେ ଗୋଟିଏ ମନୋହର ବକ୍ତୃତା କଲେ । ତଦନନ୍ତର ଆମ୍ଭମାନଙ୍କର ଲେଫ୍‌ଟନେଣ୍ଟ ଗବର୍ଣ୍ଣର ତାହା ବାଦ ଲଡ଼ ପାଦଡ଼ି ସର ରିଚାର୍ଡ଼ ଟେମ୍ପଲ ରାଜା ଯତୀନ୍ଦ୍ର ମୋହନ ଠାକୁର ବାବୁ କେଶବଚନ୍ଦ୍ର ସେନ ପ୍ରଭୃତି କେତେଜଣ ମହତ୍ ମହତ୍ ଲୋକ ବକ୍ତୃତା କଲେ । ଅବଶେଷ ଲେଫ୍‌ଟନେଣ୍ଟ ଗବର୍ଣ୍ଣର ମହୋଦୟ କାଲେଜର ଅଧ୍ୟକ୍ଷ, ଅଧ୍ୟାପକ ଓ ଛାତ୍ରମାନଙ୍କର ନାମରେ ଗବର୍ଣ୍ଣରଜେନେରାଲ ବାହାଦୁରଙ୍କୁ ଧନ୍ୟବାଦ ଦେଲା ଉତ୍ତାରୁ ସମସ୍ତେ ଚାଲିଗଲେ ।

—

**ପ୍ରଥମ ବର୍ଷ ଷଷ୍ଠ ସଂଖ୍ୟା**
**ଜୁନ୍, ୧୮୭୩**

# ଇଟାଲୀୟ ଯୁବା

## ପୂର୍ବପ୍ରକାଶିତ ଉତ୍ତାରୁ

ଆମ୍ଭେ ଅଳସ ସ୍ୱଭାବ ନ ଥିଲୁଁ । ଯେତେବେଳେ ଯାହା ଉତ୍ତମ ମଣୁଥିଲୁଁ ସେହି କ୍ଷଣି ତାହା ସମ୍ପାଦିବାକୁ ଲବମାତ୍ର ବିଳମ୍ବ କରୁ ନ ଥିଲୁଁ । କି ଉପାୟଦ୍ୱାରା ସେହି ମଠରୁ ପଳାଇବୁଁ ଏହି ବିଷୟ ଘେନି ସର୍ବଦା ଚିନ୍ତିତ ଥିଲୁଁ । ସୌଭାଗ୍ୟକ୍ରମେ ସୁଯୋଗ ମିଳିଲା । ଆମ୍ଭେ ସେହି ସୁଯୋଗରେ ମଠତ୍ୟାଗ କଲୁଁ । ମଠତ୍ୟାଗ ଅନ୍ତେ ନେପଲସ୍‌କୁ ଗଲୁଁ । ନଗରରେ ପ୍ରବେଶ ହୋଇ ନଗର ଶୋଭା ଦେଖି ଚମତ୍କୃତ ହେଲୁଁ । ଏଡ଼େ ଗହଳ ଆମ୍ଭେ କେଉଁଠାରେ ଦେଖି ନ ଥିଲୁଁ । ସୁନ୍ଦର ହର୍ମ୍ୟମାଳା, ଫଳଫୁଲ ଶୋଭିତ ଉଦ୍ୟାନ, ନାଗରିକମାନଙ୍କର ବିଚିତ୍ର ବେଶଭୂଷା, ବିସ୍ତୃତରାଜଦାଣ୍ଡ, ସୁଚାରୁ-ପଣ୍ୟଦ୍ରବ୍ୟ ଏହିସବୁ ଦେଖି ଆମ୍ଭର ଅକଥନୀୟ ଆନନ୍ଦ ଜାତ ହେଲା । ପ୍ରତିଜ୍ଞାକଲୁଁ ଯେ ପୁଣି ସେହି ଭୟଙ୍କର ମଠକୁ ଯିବୁଁ ନାହିଁ ।

ପିତାଙ୍କ ଘର କେଉଁଠାରେ ଅବସ୍ଥିତ ଥିଲା ଆମ୍ଭେ ତାହା ଜାଣିନଥିଲୁଁ । ନାଗରିକମାନଙ୍କୁ ପଚାରିବାରୁ ସେମାନେ ତାହାଙ୍କ ବାସସ୍ଥାନ ଦେଖାଇ ଦେଲେ । ବହୁ କଷ୍ଟରେ ପିତାଙ୍କ ନିକଟବର୍ତ୍ତୀ ହେଲୁଁ । ହେତୁକି ତାଙ୍କ ଗୃହରେ ଥିବା ଭୃତ୍ୟମାନେ ଆମ୍ଭକୁ ଶୀଘ୍ର ଚିହ୍ନିପାରିଲେ ନାହିଁ । ପୁଣି ଆମ୍ଭେ ସନ୍ୟାସୀ ପରିଚ୍ଛଦ ପିନ୍ଧିଥିଲୁଁ । ଆମ୍ଭ ପିତା ମଧ୍ୟ ଆମ୍ଭକୁ ଚିହ୍ନି ନ ପାରିଲେ । ଆମ୍ଭେ ପିତାଙ୍କ ଗୋଡ଼ତଳେ ପଡ଼ି ବିନୟ ବାକ୍ୟରେ ଆପଣା ପରିଚୟ ଦେଲୁଁ ଏବଂ ଏହି ପ୍ରାର୍ଥନା କଲୁଁ ଯେ ପୁଣି ଯେମନ୍ତ ସେହି ମଠକୁ ପ୍ରେରିତ ନ ହେବୁଁ ।

ପିତାଙ୍କର ପୁତ୍ରଠାରେ ଯେପରି ବ୍ୟବହାର କରିବା ଉଚିତ ଆମ୍ଭ ପିତା ଆମ୍ଭଠାରେ ସେପରି ବ୍ୟବହାର କଲେ ନାହିଁ । ପ୍ରଭୁ ଆଶ୍ରିତଠାରେ ଯେପରି ବ୍ୟବହାର କରନ୍ତି ଆମ୍ଭଠାରେ ତାଙ୍କ ବ୍ୟବହାର ସେହିପରି ଦେଖିଲୁଁ । ଆମ୍ଭେ ମଠରେ ଯେ ସମସ୍ତ ଦୁଃଖଭୋଗ କରିଥିଲୁଁ ତାହାଙ୍କଠାରେ ସମସ୍ତ ନିବେଦନ କଲୁଁ କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ତହିଁରେ ତାହାଙ୍କର କିଛିମାତ୍ର ଦୁଃଖ ନ ଜନ୍ମିଲା । ଶେଷକୁ ସେ କହିଲେ ଆମ୍ଭକୁ ଅନ୍ୟ କୌଣସି କାର୍ଯ୍ୟରେ ନିଯୁକ୍ତ କରିବା ନିମନ୍ତେ ଚେଷ୍ଟିତ ହେବେ । ତାହାଙ୍କ ଅନୁରାଗଶୂନ୍ୟ ଆଚରଣ ଦେଖି ଆମ୍ଭେ ଅତ୍ୟନ୍ତ ଦୁଃଖିତ ହେଲୁଁ । ଆମ୍ଭେ ସ୍ୱୟଂ ଅତ୍ୟନ୍ତ ସରଳ ପ୍ରକୃତି ଥିଲୁଁ । ବାପା-ଯେବେ ଆମ୍ଭଠାରେ ଅଳ୍ପମାତ୍ର ସ୍ନେହ ପ୍ରକାଶ କରିଥାନ୍ତେ ପ୍ରଫୁଲ୍ଲ ଚିତ୍ତରେ ତାହାଙ୍କ ଆଜ୍ଞାବହ ହୋଇଥାନ୍ତୁ । ତାହାଙ୍କ ନିଷ୍ଠୁର ଆଚରଣରେ ଅତ୍ୟନ୍ତ

ବିରକ୍ତ ହେଲୁଁ । ତାହାଙ୍କଠାରେ ପୂର୍ବ ଅଭକ୍ତି ପୁନରୁଜ୍ଜୀବିତ ହେଲା । ପୂର୍ବରେ ତାଙ୍କୁ ଦେଖିଲାକ୍ଷଣି ଯେପରି ଶଙ୍କିତ ହେଉଥିଲୁଁ ଏବେ ସୁଦ୍ଧା ସେହିପରି ଶଙ୍କିତ ହେଲୁଁ ।

ପିତୃସ୍ନେହ କ୍ରମଶଃ ଅନ୍ତଃକରଣରୁ ବିରୋହିତ ହେଲା । ଜ୍ୟେଷ୍ଠ ସହୋଦର ବାପାଙ୍କର ଅତି ପ୍ରିୟପାତ୍ର ଥିଲେ । କିରୂପେ ତାହାଙ୍କର ଉତ୍ତମ ହେବ ବାପା ଏହି ଚିନ୍ତାରେ ସର୍ବଦା ଚିନ୍ତିତ ଥିଲେ । ଜ୍ୟେଷ୍ଠ ସହୋଦର ମଧ୍ୟ ବାପାଙ୍କର ସେହି ନିଷ୍ଠୁର ଭାବର ଉତ୍ତରାଧିକାରୀ ହେଲେ । ଆମ୍ଭଠାରେ ଭାଇପରି ବ୍ୟବହାର ନ କରି ପ୍ରଭୁ ଭୃତ୍ୟଠାରେ ଯେ ରୂପ କରଇ ସେହିପରି କଲେ । ଆମ୍ଭେ ସ୍ୱଭାବତଃ ଅଭିମାନୀ ଥିଲୁଁ ତେଣୁ ଏପରି ଆଚରଣ ସହି ନ ପାରିଲୁଁ । ବାପାଙ୍କ ପ୍ରତି ଆମ୍ଭର ସ୍ୱାଭାବିକ ଭୟ ଥିଲା, ଏଥି ନିମନ୍ତେ ତାହାଙ୍କ ନିର୍ଦ୍ଦୟ ଆଚରଣ ସହୁଥିଲୁଁ କିନ୍ତୁ ଜ୍ୟେଷ୍ଠଙ୍କଠାରେ ସେପରି ଭୟ ନ ଥିଲା । ପୁଣି ସେ ବୟସରେ ଆମ୍ଭର ଜ୍ୟେଷ୍ଠ ଥିଲେ କିନ୍ତୁ ଆମ୍ଭଠାରୁ ତାଙ୍କର ବିଦ୍ୟାବୁଦ୍ଧି ଅଧିକ ନ ଥିଲା । ଗୃହର ଦାସମାନେ ଦେଖିଲେ ଯେ ପିତାଙ୍କଠାରେ ଆମ୍ଭର ଆଦର ହେଲା ନାହିଁ । ଏହା ଦେଖି ସେମାନେ ସୁଦ୍ଧା ଆମ୍ଭକୁ ତୁଚ୍ଛ ମଣିଲେ । ଏହିରୂପେ ସ୍ୱବନ୍ଧୁମାନଙ୍କଦ୍ୱାରା ଅପମାନିତ ହୋଇ ଆମ୍ଭେ ହତାଶ ହେଲୁଁ । ବିମର୍ଷ ଆମ୍ଭର ହୃଦୟରାଜ୍ୟକୁ ଅଧିକାର କଲା, ମନ ଅଗାଧ ଦୁଃଖ ସାଗରରେ ବୁଡ଼ିଲା । ସର୍ବଦା ମୌନାବଲମ୍ବୀ ହୋଇ ରହିଲୁଁ । କେବେହେଁ ପ୍ରଫୁଲ୍ଲ ବଦନରେ ବାକ୍ୟାଳାପ କରୁନଥିଲୁଁ । ଏହିରୂପେ ବିରକ୍ତିକର ଅତିଥିପରି କେତେ ଦିନ ପିତ୍ରାଳୟରେ ଗମିଲୁଁ । ସମସ୍ତେ ଆମ୍ଭକୁ ଘୃଣା କରୁଥିଲେ ପୁଣି ଆମ୍ଭ ଦୁଃଖାନଳରେ ସାନ୍ତ୍ୱନାଜଳ ଢାଳିବାକୁ ସେଠାରେ ଜଣେ ସୁଦ୍ଧା ନଥିଲା । ଆମ୍ଭକୁ ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ ପ୍ରାୟ ଦିଶିଲା ।

ଦିନେ ପୂର୍ବୋକ୍ତ ମଠର ଜଣେ ସନ୍ନ୍ୟାସୀ ପିତ୍ରାଳୟରେ ପ୍ରବେଶ ହେଲେ । ତାହାଙ୍କୁ ଦେଖିଲାକ୍ଷଣି ଆମ୍ଭେ ଅତ୍ୟନ୍ତ ଶଙ୍କିତ ହେଲୁଁ ସେ ଆମ୍ଭକୁ ଦେଖି ଯେମନ୍ତ ଦେଖି ନାହାନ୍ତି ଏହିପରି ଛଳ କଲେ । ଏଥିରେ ଆମ୍ଭର ଭୟ ଅଧିକ ପ୍ରବଳ ହେଲା । ବସ୍ତୁତଃ ଆମ୍ଭ ମନଃ ଏପରି ଚଞ୍ଚଳ ହୋଇଥିଲା ଯେ ଅଳ୍ପ କଥାକୁ ଡରୁଥିଲୁଁ । ଦିନକରେ ବାପାଙ୍କର ଜଣେ ପ୍ରିୟ ଅନୁଚର ଆମ୍ଭକୁ ବିସ୍ତର ଗାଳି ଦେଲା । ତାହାର ସେହି ଅନ୍ୟାୟ ତିରସ୍କାର ଶୁଣି ଆମ୍ଭେ କୋପରେ ଜ୍ୱଳିଗଲୁଁ, ସେହିକ୍ଷଣି ତାକୁ ବାଡ଼େଇଲୁଁ । ଦୁର୍ଭାଗ୍ୟବଶତଃ ସେହି ସମୟରେ ବାପା ସେଠାରେ ଉପସ୍ଥିତ ହେଲେ । ଆମ୍ଭେ କିପାଁ କ୍ରୁଦ୍ଧ ହୋଇ ଥିଲୁ ଏବଂ କିହେତୁରୁ ତାହାକୁ ପ୍ରହାର କଲୁଁ ସେ ବିଷୟର ଯଥାର୍ଥହେତୁଁ ଅନୁସନ୍ଧାନ ନ କରି ଆମ୍ଭକୁ ତିରସ୍କାର କଲେ । ମନକୁ ଯାହା ଆସିଲା କହିଲେ । କେତେ ଦୁର୍ବାକ୍ୟ ପ୍ରୟୋଗ କଲେ । କ୍ରୋଧରେ ତାହାଙ୍କ ଆଖିରୁ ଅଗ୍ନିକଣା ନିର୍ଗତ ହେଲା ପ୍ରାୟ ଦିଶିଲା । ଆମ୍ଭେ ଦେଖିଲୁ ଯେ ସେ ଆମ୍ଭଠାରେ ଅତ୍ୟନ୍ତ ଘୃଣାଜନକ ବ୍ୟବହାର କଲେ । ଆମ୍ଭେ କଦାଚ ଏମନ୍ତ କୁବ୍ୟବହାର ଯୋଗ୍ୟ ନ ଥିଲୁଁ । ଆମ୍ଭେ ଦେଖିଲୁଁ ଯେ ଆମ୍ଭର ଉପଯୁକ୍ତ ମର୍ଯ୍ୟାଦା ହେଲାନାହିଁ । ଆମ୍ଭ ସଦ୍‌ଗୁଣମାନଙ୍କର ଆଦର ହେଲା ନାହିଁ । ବାପାର ଏହି ଅନ୍ୟାୟ

ବିଚାର ଦେଖି ଆମ୍ଭେ ଯତପରୋନାସ୍ତି ବିରକ୍ତ ହେଲୁଁ । ଆମ୍ଭର ସ୍ୱାଭାବିକ ଭୟ ଭାଙ୍ଗିଗଲା । ତତ୍‌କ୍ଷଣାତ୍ ବ୍ୟଗ୍ର ହୋଇ ଉତ୍ତର ଦେଲୁଁ । କୋପରେ ଆମ୍ଭ ଗଣ୍ଡସ୍ଥିତ ଓ ଆଖି ରକ୍ତବର୍ଣ୍ଣ ହେଲା । ଅଳ୍ପକାଳରେ ମଧ୍ୟ ସମସ୍ତ ଦୁଃଖ ମନେ ପଡ଼ିଲାରୁ ନୟନରୁ ଲୋତକ ଝରିଲା । ଏହା ଦେଖି ବାପା କ୍ରୁଦ୍ଧ ପୁଣି ଚମତ୍କୃତ ହେଲେ ଏବଂ ସେଠାରୁ ଚାଲିଗଲେ । ଆମ୍ଭେ ସୁଦ୍ଧା ମୌନୀହୋଇ ସେଠାରୁ ଅନ୍ୟସ୍ଥାନକୁ ଗଲୁ ।

ଅଳ୍ପଦିନ ଉତ୍ତାରେ ଗୋଟିଏ ଭୟାବହ ବ୍ୟାପାର ଦେଖିଲୁଁ ଯେଉଁ ସନ୍ନ୍ୟାସୀ ଆମ୍ଭ ପିତ୍ରାଳୟକୁ ଆସିଥିଲେ ତାଙ୍କ ସହିତରେ ଆମ୍ଭକୁ ମଠକୁ ପଠାଇବା ନିମନ୍ତେ ବାପା ଗୋପନରେ ମନ୍ତ୍ରଣା କରୁଥିଲେ । ଆମ୍ଭେ ଶୀଘ୍ର ଏହା ବୁଝିପାରିଲୁଁ । ସେଠାରୁ ପଳାଇବା ନିମନ୍ତେ ବ୍ୟଗ୍ର ହେଲୁଁ । ଜନ୍ମଘରର ମମତା ତ୍ୟାଗକରି ସେହି ରାତିରେ ପ୍ରସ୍ଥାନ କଲୁଁ । ସେହି ବନ୍ଦରରୁ ଖଣ୍ଡିଏ ଜାହାଜ ସ୍ଥାନାନ୍ତରକୁ ଯାଉଥିଲା । ଜାହାଜରେ ଚଢ଼ିଲୁଁ । ଜାହାଜ କି ଆଶ୍ରୟରେ କେଉଁଠାକୁ ଯାଉଅଛି ଏହାର କିଛିମାତ୍ର ଅନୁସନ୍ଧାନ ନ କଲୁଁ । ଯେଉଁ ଦିଗକୁ ଯାଉ ଅବା ଯେଉଁ ସ୍ଥାନକୁ ଯାଉ ଯମାଳୟ ପରି ସେହି ମଠଠାରୁ ସେସ୍ଥାନ ଉତ୍ତମହେବ ଆମ୍ଭର ଏହି ବିଶ୍ୱାସ ହେଲା । ମନ ଏମନ୍ତ ବିକୃତ ହୋଇଯାଇଥିଲା ଯେ ସେହି ସମୟରେ କର୍ତ୍ତବ୍ୟ ଜ୍ଞାନଶୂନ୍ୟ ହେଲୁଁ । ଅଦୃଷ୍ଟରେ ଯାହା ଘଟିବାର ଥିବ ଘଟିବ । ଏହି ସାହସ ଯଷ୍ଟି, ଅବଲମ୍ବନ କରି ଚାଲିଲୁଁ । ସେହି ଜାହାଜ ଜେନୋୟାନଗରକୁ ଯାଉଥିଲା । ଆମ୍ଭେ କେତେଦିନ ଉତ୍ତାରେ ସେଠାରେ ପହୁଞ୍ଚିଲୁଁ ।

ଜେନୋୟାରେ ପ୍ରବେଶ ହୋଇ ନଗର ମୁଖରେ ଚାଲିଲୁଁ । ଯାଉଁ ଯାଉଁ କେଉଁ ସ୍ଥାନରେ ମନୋହର ପ୍ରାସାଦମାଳା, କେଉଁ ସ୍ଥାନରେ ଉଚ୍ଚ ଦେବମନ୍ଦିର, କେଉଁ ସ୍ଥାନରେ ସୁରମ୍ୟ ପୁଷ୍ପରେ ଶୋଭିତ ଉଦ୍ୟାନମାନ ଦେଖି ଅତିଶୟ ପ୍ରୀତ ହେଲୁଁ ! ମାତ୍ର କେଉଁଠାକୁ ଯିବୁ କଣ କରିବୁଁ, କିଛିହିଁ ସ୍ଥିର କରିପାରିଲୁଁ ନାହିଁ । ସେଠାରେ ଆମ୍ଭର କେହି ପରିଚିତ ଲୋକ ନ ଥିଲେ । ଯାହାହେଉ ଆଉ ସେହି ମଠର ଯନ୍ତ୍ରଣା ଭୋଗ କରିବାକୁ ହେବ ନାହିଁ । ଏହି ଚିନ୍ତାରେ କିଞ୍ଚିତ ସୁସ୍ଥ ହେଲୁଁ । ଅନନ୍ତର ନଗର ମଧ୍ୟରେ ପ୍ରବେଶ ହୋଇ ନାଗରିକମାନଙ୍କର ଗୃହରଚନା କୌଶଳ ଦେଖି ଚମତ୍କୃତ ହେଲୁଁ । ସେହି ସ୍ଥାନର ବହୁମୂଲ୍ୟ ବସ୍ତ୍ରଧାରିଣୀ ପ୍ରସନ୍ନବଦନା, ସୁନ୍ଦରୀମାନଙ୍କୁ ଦେଖି ଆମ୍ଭର ସ୍ଥିର ବିଶ୍ୱାସ ହେଲା ଯେ ଜେନୋୟା ନିବାସୀମାନେ ଅତ୍ୟନ୍ତ ସୁଖୀ ଅଟନ୍ତି । ଏମନ୍ତ ଉତ୍ତମସ୍ଥାନକୁ ଆସିଅଛୁଁ ଏହା ଭାବି ଆନନ୍ଦ ରସରେ ଅଭିଷିକ୍ତ ହେଲୁଁ ।

ଅଳ୍ପଦିନ ମଧ୍ୟରେ ଆମ୍ଭର ସେହି ସୁଖକର ଭ୍ରମ ଭାଙ୍ଗିଗଲା । ଆମ୍ଭଠାରେ ଯେଉଁ ଅଳ୍ପ ମୁଦ୍ରା ଥିଲା ତାହା ଶୀଘ୍ର ସରିଗଲା । ଅଭାବଜନିତ କଷ୍ଟ ଆମ୍ଭେ ଏତେଦିନଯାଏ ଅନୁଭବ କରି ନଥିଲୁଁ ଏଣିକି ସେହି କଷ୍ଟରେ ପଡ଼ିବାକୁ ହେଲା । ମୁଦ୍ରାଭାବରୁ ଯେ ଏପରି କ୍ଳେଶ ହୁଅଇ କଦାଚ ଏମନ୍ତ ଭାବିନଥିଲୁଁ । ଏଥିପୂର୍ବରେ ଆମ୍ଭର ଅଭାବ ହୋଇନଥିଲା । ସଂସାରରେ କିପ୍ରକାର ଚଳିବାକୁ ହୁଏ ତାହା ମଧ୍ୟ ଆମ୍ଭେ ସମ୍ପୂର୍ଣ୍ଣ ଅଜ୍ଞାତ

ଥିଲୁଁ । ଏହି ସମୟରେ ଆମ୍ଭ ଉପରେ ଯେମନ୍ତ ଦୁଃଖ ପଡ଼ିଲା ତାହା ବାକ୍ୟରେ କହି ନୁହଇ । ଭିକ୍ଷୁକ ପ୍ରାୟ ରାଜଦାଣ୍ଡରେ ବୁଲିବାକୁ ଲାଗିଲୁଁ । ସେହି ପ୍ରାସାଦଶ୍ରେଣୀର ଶୋଭା ଆମ୍ଭ ନେତ୍ରର ପ୍ରୀତିକର ହେଲା ନାହିଁ । କାତର ହୋଇ ଏହିରୂପେ ଭ୍ରମଣ କରୁ କରୁ ହଠାତ୍ ଏକ ସୁନିର୍ମିତ ଗିରିଜା ନିକଟରେ ପହଞ୍ଚିଲୁ ।

ଜଣେ ପ୍ରସିଦ୍ଧ ଚିତ୍ରକର ସେହି ଗିରିଜାର ପ୍ରାଚୀରରେ ଚିତ୍ରପଟ ସଂଲଗ୍ନ କରୁଥିଲେ । ଆମ୍ଭେ ଚିତ୍ରବିଦ୍ୟାରେ କିଞ୍ଚିତ୍ ନୈପୁଣ୍ୟ ଲଭିଥିଲୁଁ । ସେଥିନିମନ୍ତେ ଉତ୍ତମ ଛବି ଦେଖିବାକୁ ଆମ୍ଭର ଅତ୍ୟନ୍ତ ସ୍ପୃହା ହେଉଥିଲା । ସେହି ଚିତ୍ରପଟକୁ ଦେଖି ଅତ୍ୟନ୍ତ ଆହ୍ଲାଦିତ ହେଲୁଁ । ସେଥିମଧ୍ୟରେ ଖଣ୍ଡିଏ ଚିତ୍ର ସର୍ବୋତ୍କୃଷ୍ଟ ହୋଇଥିଲା । ତହିଁରେ କଳଙ୍କଶୂନ୍ୟା ଉଦାରଚରିତ୍ରା କୌଣସି ରୂପବତୀ ଲଳନାର ପ୍ରତିମୂର୍ତ୍ତି ଅଙ୍କିତ ହୋଇଥିଲା । ସେହି ଚିତ୍ର ଯେତେବେଳେ ଆମ୍ଭ ନେତ୍ରରେ ପଡ଼ିଲା ସେତେବେଳେ ଆମ୍ଭ ହର୍ଷର ସୀମା ନ ରହିଲା । ଆମ୍ଭେ ଚମତ୍କୃତ ହୋଇ ସ୍ଥିର ଦୃଷ୍ଟିରେ ତାହାକୁ ଦେଖିବାକୁ ଲାଗିଲୁ । କପୋଳଦ୍ୱୟ ହର୍ଷରେ ପ୍ରଫୁଲ୍ଲିତ ହେଲା । ଏହା ଦେଖି ସେହି ଚିତ୍ରକର ପ୍ରୀତହୋଇ ଆମ୍ଭ ନିକଟକୁ ଆସି ଆମ୍ଭର ପରିଚୟ ପଚାରିଲେ, ଆମ୍ଭେ ସେହି ସମୟରେ ବନ୍ଧୁହୀନ ହୋଇଥିଲୁଁ, ବିଶେଷତଃ ସେହି ଚିତ୍ରକରଙ୍କ ଆଗ୍ରହ ଦେଖି ପରିଚୟ ନ ଦେଇ ରହିପାରିଲୁଁ ନାହିଁ ।

ଆମ୍ଭ ନାମ ଓ ପଦବୀ ଛାଡ଼ି ଆଉସବୁ ବିଷୟ ସେହି ଚିତ୍ରକରକୁ ଜଣାଇଲୁଁ । ସେ ମନୋଯୋଗୀ ହୋଇ ସମସ୍ତ ବିବରଣ ଶୁଣିଲେ । ଅନନ୍ତର ଅନୁଗ୍ରହପୂର୍ବକ ତାଙ୍କଘରେ ଆମ୍ଭକୁ ବାସସ୍ଥାନ ଦେଲେ । ଆମ୍ଭେ ଅତିମାତ୍ର ତାହାଙ୍କର ପ୍ରିୟପାତ୍ର ହେଲୁଁ ଏବଂ ତାଙ୍କ ନିକଟରୁ ଚିତ୍ର ବିଦ୍ୟା ଶିକ୍ଷା କରିବାକୁ ଆରମ୍ଭ କଲୁଁ । ସେହି ବିଦ୍ୟାରେ ଆମ୍ଭର ପଟୁତା ଦେଖି ସେ ଚମତ୍କୃତ ହେଲେ ଏବଂ ଆମ୍ଭର ବିସ୍ତର ପ୍ରଶଂସା କଲେ । ତାହାଙ୍କ ପ୍ରଶଂସା ଶୁଣି ଆମ୍ଭ ଉତ୍ସାହ ବଢ଼ିଲା । ଆଃ ! ତାଙ୍କ ଘରେ ଆମ୍ଭେ କେତେ ସୁଖରେ କାଳ ଗମି ଥିଲୁଁ । କୌଣସି ବିଷୟର ଅଭାବ ନଥିଲା, ଦୁଃଖର କ୍ଲେଶମାତ୍ର ନଥିଲା । ଆଃ ! ସେଦିନ କି ଆଉ ଫେରି ଆସିବ ! ପୂର୍ବର ସବୁ ଦୁଃଖ ପାସୋରିଲୁ । ସେହି ମଠ ଆମ୍ଭ ହୃଦୟ କ୍ଷେତ୍ରରୁ ଅପସୃତ ହେଲା । ମନ ମହତ୍ ଏବଂ ଉତ୍ତମ ଭାବରେ ପରିପୂର୍ଣ୍ଣ ହେଲା । ସବୁବେଳେ ଉତ୍ତମ ଉତ୍ତମ ବାକ୍ୟ; ଉତ୍ତମ ଉତ୍ତମ ଉପନ୍ୟାସାଦି ପଢ଼ି ଯଥେଷ୍ଟ ଆନନ୍ଦ ପ୍ରାପ୍ତ ହେଲୁଁ । ନବ ପରିଚିତମାନଙ୍କ ସହିତ ମିଷ୍ଟାଳାପ, ସେମାନଙ୍କ ରୀତି, ନୀତି ଦର୍ଶନରେ ରତ ହେଲୁଁ । ଅବସର ବେଳେ ଉଦ୍ୟାନ ଭ୍ରମଣ କରି ପ୍ରକୃତି ଦେବୀଙ୍କର ମନୋହର ଶୋଭା ଦେଖି ଆତ୍ମାକୁ ପରିତୃପ୍ତ କରୁଥିଲୁଁ । ପୁଣି ଆମ୍ଭର କଳ୍ପନା ଶକ୍ତି ଅତିଶୟ ବଳବତୀ ଥିଲା ଏଥିନିମନ୍ତେ ଅଳ୍ପ ସୁନ୍ଦର ବସ୍ତୁ ସୁଦ୍ଧା ଆମ୍ଭର ପ୍ରୀତିକର ହେଉଥିଲା । ଆମ୍ଭ ଗୃହସ୍ୱାମୀ ଅତି ଉଦାର ସ୍ୱଭାବ ଥିଲେ । ତାଙ୍କ କୃପାରୁ ଆମ୍ଭେ ମହୀରେ ସ୍ୱର୍ଗସୁଖ ଭୋଗ କରୁଥିଲୁଁ । ସେ

ଜେନୋୟା ନିବାସୀ ନ ଥିଲେ । ନଗରର ଧନୀମାନେ ତାଙ୍କ ଚିତ୍ର ନୈପୁଣ୍ୟର ପ୍ରଶଂସା ଶୁଣି କେତେ ଗୋଡ଼ିଏ ଚିତ୍ର ପ୍ରସ୍ତୁତ କରାଇବା ନିମନ୍ତେ ତାଙ୍କୁ ସେହି ନଗରକୁ ଅଣାଇଥିଲେ । ତାଙ୍କ ଶାରୀରିକ ଅସୁସ୍ଥତା ଏବଂ ଦୌର୍ବଲ୍ୟ ହେତୁରୁ ସେ ଅନେକ ସମୟରେ ଶିଷ୍ୟମାନଙ୍କୁ ଚିତ୍ର କରିବାର ଭାର ଦେଉଥିଲେ । ତାଙ୍କ ବିବେଚନାରେ ଶିଷ୍ୟମାନଙ୍କ ମଧ୍ୟରେ ଆମ୍ଭେ ସର୍ବୋତ୍କୃଷ୍ଟ ଥିଲୁଁ ବିଶେଷତଃ ସ୍ତ୍ରୀମାନଙ୍କ ଚିତ୍ର ଲେଖିବାରେ ଆମ୍ଭେ ଅତ୍ୟନ୍ତ ପଟୁ ଥିଲୁଁ । ଯେତେବେଳେ କୌଣସି ସୁନ୍ଦରୀ ରମଣୀର ଛବି ଚିତ୍ରିବାର ଆବଶ୍ୟକ ହେଉଥିଲା ସେ ସେକର୍ମର ଭାର ଆମ୍ଭକୁ ଦେଉଥିଲେ । ପୁଣି ସେହି ଚିତ୍ରକରଙ୍କର ଆମ୍ଭଠାରେ ସମ୍ପୂର୍ଣ୍ଣ ବିଶ୍ୱାସ ଥିଲା । ସମସ୍ତ ଲୋକଙ୍କ ସାକ୍ଷାତ୍‌ରେ ଆମ୍ଭ ସଦ୍‌ଗୁଣର ବିସ୍ତର ପ୍ରଶଂସା କରୁଥିଲେ । ଗୋଡ଼ାଏ କଣ କହିବୁଁ ଆମ୍ଭଠାରେ ତାଙ୍କର ଏଡ଼େ ସ୍ନେହ ଥିଲା ଯେ ଅଳ୍ପକାଳ ନିମନ୍ତେ ସୁଦ୍ଧା ଆମ୍ଭେ ତାଙ୍କ ନୟନର ଆଗୋଚର ହେଲେ କାତର ହେଉଥିଲେ । କ୍ରମଶଃ

# ବିବେକୀ

## କେଉଁ କେଉଁ ବିଷୟ ମାନ ବିଳମ୍ବରେ ଶିକ୍ଷା ହୁଏ

ସମସ୍ତଙ୍କର ଏହା ମନରେ ରଖିବାର ଉଚିତ ଯେ ରୁଚି ବିଷୟରେ ସମସ୍ତଙ୍କର ଏକମତ ହୋଇପାରିବ ନାହିଁ । ଖଣ୍ଡିଏ ପୋଥି ପଢ଼ି ତୁମ୍ଭେ ଅତ୍ୟନ୍ତ ପ୍ରୀତ ହେଲ । ତୁମ୍ଭ ଜାଣିବାରେ ଏମନ୍ତ ପୋଥି ଆଉ ନାହିଁ । ସେ ପୋଥି ଖଣ୍ଡି ଯେ ପଢ଼ି ନାହିଁ ତାହାକୁ ତୁମ୍ଭେ ଦୁର୍ଭାଗ୍ୟ ମଣୁ ଅଛ । ମଫସଲର ଦରିଦ୍ର ଲୋକ କେବେ ସନ୍ଦେଶର ସ୍ୱାଦ ପାଇ ନାହିଁ ତୁମ୍ଭେ ବଡ଼ଲୋକ, ନଗରନିବାସୀ, ପ୍ରତିଦିନ ସନ୍ଦେଶ ଖାଉଅଛ । ପାଟିରେ ପକାଇ ସ୍ୱାଦ ନେଲାବେଳେ ''ଯେମାନେ ଏମନ୍ତ ପଦାର୍ଥର ସ୍ୱାଦ ନ ପାଇଲେ ସେମାନଙ୍କର ଜନ୍ମ ବିଫଳ'' ଏହା ଭାଳୁଅଛ । ତୁମ୍ଭର ଜଣେ ବିଦ୍ୱାନ୍ ବନ୍ଧୁ ତୁମ୍ଭ ଘରକୁ ଆସିଲେ । ଯେଉଁ ପୋଥିଖଣ୍ଡ ପଢ଼ି ତୁମ୍ଭେ ଏଡ଼େ ପ୍ରୀତ ହୋଇଥିଲ ସେହି ପୋଥି କଥା ବନ୍ଧୁଙ୍କୁ କହିଲ । ବନ୍ଧୁ ସେ ପୋଥି ପଢ଼ିଅଛନ୍ତି ମାତ୍ର ତୁମ୍ଭେ ପଢ଼ି ଯେତେ ପ୍ରୀତ ହୋଇଅଛ ସେ ପଢ଼ି ତେମନ୍ତ ପ୍ରୀତ ହୋଇ ନାହାନ୍ତି ବରଂ ବିରକ୍ତ ହୋଇଅଛନ୍ତି । ଏଥିପାଇଁ ତାଙ୍କୁ କଣ ଦୂଷିବ ? ତାଙ୍କର ମନ୍ତବ୍ୟ ଶୁଣି ତାଙ୍କଠାରେ ତୁମ୍ଭର କୋପ ଜାତ ହୋଇଅଛି । ବାହାରେ ଉପରୋଧର କିଛି କହୁ ନାହିଁ । ମାତ୍ର ଏଡ଼େ ନିର୍ବୋଧ ଜାଣିଥିଲେ ମୁଁ ଏହା ସଙ୍ଗେ ବନ୍ଧୁତା କରିନଥାନ୍ତି ଆଉ ଏହାସଙ୍ଗେ କଥା କହିବି ନାହିଁ'' ଅନ୍ତରେ ଏହିତା ଭାଳୁଅଛ । ତୁମ୍ଭର ପ୍ରିୟ ଗ୍ରନ୍ଥର ମାଧୁରୀ ସେ କିପାଁ ଅବା ବୁଝି ନ ପାରିଲେ ଏହା ଭାବି ଚମତ୍କୃତ ହେଉଅଛ ।

# ଧନଞ୍ଜୟ ସିଂହ

## (ଦ୍ୱିତୀୟ ପରିଚ୍ଛେଦର ଅଂଶବିଶେଷ)

ନା, ତାଙ୍କର ବ୍ୟୟର ସୀମା ରହିଲା ନାହିଁ । ଦେଶର ଆୟପ୍ରତି ତାହାଙ୍କର ଦୃଷ୍ଟି ନ ଥିଲା । ସେ ଅତ୍ୟନ୍ତ ବିଳାସୀ ଓ ଲମ୍ପଟ ଥିଲେ । ସୁନ୍ଦରୀ ହୋଇ ତାଙ୍କ ଆଖିରେ ପଡ଼ିଲେ କଳଂକିନୀ ହେବାକୁ କାହାରି ବିଳମ୍ବ ହେଉ ନ ଥିଲା । ତେଣୁ ନଗରବାସୀମାନେ ଆପଣା ପତ୍ନୀ ଓ କନ୍ୟାମାନଙ୍କର ସତୀତ୍ୱ ରକ୍ଷା ନିମନ୍ତେ ସବୁବେଳେ ଶଙ୍କିତ ଥିଲେ ।

ଗଙ୍ଗାଧରଙ୍କ ତଳେ ବିକ୍ରମ ସିଂହ ନାମକ ଜଣେ କର୍ମଚାରୀ ଥିଲେ । ବିକ୍ରମ ଅତ୍ୟନ୍ତ ଅର୍ଥ ପିଶାଚ ଥିଲେ । ତାହାଙ୍କର ଧର୍ମ ଓ ଲୋକ ଭୟ ନ ଥିଲା । ରାଜାଙ୍କଠାରେ ଯେଉଁ ଦୁର୍ଗୁଣ ଥିଲା ସେହି ଦୁର୍ଗୁଣମାନଙ୍କୁ ଚରିତାର୍ଥ କରାଇବା ନିମନ୍ତେ ଅନ୍ୟ ଯେଉଁ ଦୁର୍ଗୁଣମାନଙ୍କର ଆବଶ୍ୟକ ସେସବୁ ବିକ୍ରମଠାରେ ଥିଲା । ତେଣୁ ଅଳ୍ପଦିନ ମଧ୍ୟରେ ବିକ୍ରମ ରାଜାଙ୍କର ପ୍ରିୟପାତ୍ର ହେଲେ । ନିମ୍ନ କର୍ମଚାରୀ, ପ୍ରଭୁଙ୍କର ପ୍ରିୟ ହେଲେ ଉପରିସ୍ଥ କର୍ମଚାରୀର ମର୍ଯ୍ୟାଦା ହ୍ରାସକୁ ଲଭେ । ବିକ୍ରମ ରାଜାଙ୍କର ପ୍ରିୟପାତ୍ର ହେଲେ । ଗଙ୍ଗାଧରଙ୍କର ମର୍ଯ୍ୟାଦାର ଊଣା ହେଲା । ରାଜାଙ୍କ ନିକଟରେ ଗଙ୍ଗାଧରଙ୍କ ନାମରେ ଗ୍ଲାନି କହିବାକୁ ଅବସର ମିଳିଲେ ବିକ୍ରମ ଛାଡ଼ନ୍ତି ନାହିଁ । କ୍ରମଶଃ ଗଙ୍ଗାଧରଙ୍କଠାରେ ରାଜାଙ୍କର ଶ୍ରଦ୍ଧା ଭାଞ୍ଜିଗଲା, ବିରକ୍ତି ଜନ୍ମିଲା । ଗଙ୍ଗାଧର ଅତ୍ୟନ୍ତ ପ୍ରଭୁଭକ୍ତ ଥିଲେ । ଅନେକ ଦିନ ପର୍ଯ୍ୟନ୍ତ ରାଜାଙ୍କର ଉପଦ୍ରବ ସହିଲେ । ପଛକୁ ଯେତେବେଳେ ଚଳିହେଲା ନାହିଁ କର୍ମ ପରିତ୍ୟାଗ କରି ଘରକୁ ଗଲେ ।

ଗଙ୍ଗାଧର କର୍ମ ଛାଡ଼ିଲାରୁ ଶ୍ରୀପତି ଅତ୍ୟନ୍ତ ଦୁଃଖିତ ହେଲେ । ଗଙ୍ଗାଧରଙ୍କୁ ପୁଣି ଡକାଇ କର୍ମରେ ନିଯୁକ୍ତ କରିବା ନିମନ୍ତେ ଜ୍ୟେଷ୍ଠଙ୍କୁ ଅନେକ ଅନୁରୋଧ କଲେ । ବୀରପତି ଶୁଣିଲେ ନାହିଁ ।

ଗଙ୍ଗାଧରଙ୍କ ସଙ୍ଗେ ଶ୍ରୀପତିଙ୍କର ଅତ୍ୟନ୍ତ ଭାବ ଥିଲା । ଗଙ୍ଗାଧର ଶାସନର ପ୍ରଧାନ ବିଷୟମାନଙ୍କରେ ଶ୍ରୀପତିଙ୍କର ଉପଦେଶ ଅନୁସରି ଚଳୁଥିଲେ । ବିକ୍ରମ ଦେଖିଲେ ଯେ କେବଳ ଗଙ୍ଗାଧର ତାହାଙ୍କର ଶତ୍ରୁ ଥିଲେ ଏମନ୍ତ ନୁହେ । ଗଙ୍ଗାଧର ଶ୍ରୀପତିଙ୍କର ମିତ୍ର ଥିଲେ । ତେଣୁ ଗଙ୍ଗାଧରଙ୍କର କର୍ମ ପରିତ୍ୟାଗରେ ଶ୍ରୀପତି ଅତ୍ୟନ୍ତ କୁପିତ ହୋଇଥିବେ । ଶ୍ରୀପତି ରାଜଭ୍ରାତା, ବିକ୍ରମ ପରି ଲୋକଙ୍କୁ ତଡ଼ିଦେବାର ତାଙ୍କ ପକ୍ଷରେ କଠିଣ ନୁହେଁ, ଏହା ପାଇଁ ବିକ୍ରମ ଶ୍ରୀପତିଙ୍କର ବିନାଶ ସାଧିବା ନିମନ୍ତେ ଯତ୍ନ କଲେ ।

ବିକ୍ରମ ଯେ ରାଜାଙ୍କର ଏଡ଼େ ପ୍ରିୟପାତ୍ର ହୋଇଥିଲେ ତାହାର ଆହୁରି ଗୋଟିଏ ନିଗୂଢ଼ କାରଣ ଥିଲା । ବିକ୍ରମର ପତ୍ନୀ ରୂପବତୀ ଥିଲେ । ରାଜାଙ୍କର ଚରିତ୍ର କଥା ପାଠକେ ଜାଣିଅଛ । ବିକ୍ରମଙ୍କର ଅର୍ଥଲାଳସା ମଧ ଜାଣିଅଛ । ବଳି କହିବାର ଆବଶ୍ୟକ ନାହିଁ ।

ଶ୍ରୀପତି ପ୍ରଜାଙ୍କର ପ୍ରିୟ ଥିଲେ । ରଜା ଅପୁତ୍ରକ । ଶ୍ରୀପତିଙ୍କର ପୁତ୍ର ଧନଞ୍ଜୟ ସିଂହ ସିଂହାସନର ଉତ୍ତରାଧିକାରୀ ହେବେ, ପ୍ରଜାମାନଙ୍କର ଏହି ଆଶା ଥିଲା । ପିତା ଓ ପୁତ୍ର ଦୁହିଁଙ୍କର ସଦ୍ଗୁଣ ଦେଖି ପ୍ରଜାମାନେ ଦୁହିଁଙ୍କଠାରେ ଅତ୍ୟନ୍ତ ଅନୁରକ୍ତ ଥିଲେ । ଏହା ରଜାଙ୍କୁ ଅଜ୍ଞାତ ନ ଥିଲା । ଏହି ହେତୁରୁ ଶ୍ରୀପତିଙ୍କଠାରେ ତାହାଙ୍କର ଈର୍ଷା ଜନ୍ମିଥିଲା । କେବଳ ଅପବାଦ ଭୟର ଈର୍ଷା ଗୋପନ କରୁଥିଲେ ।

ବିକ୍ରମ ଆପଣା ପତ୍ନୀ ଦ୍ୱାରା ଶ୍ରୀପତିଙ୍କର ଉଚ୍ଛେଦ ସାଧିବାକୁ ସଂକଳ୍ପ କଲେ । ପତ୍ନୀ ପ୍ରସାଦର ଶତ୍ରୁକୁ ତଡ଼ି ଦେଇଥିଲେ, ମନ୍ତ୍ରିତ୍ୱ ପଦ ଲଭି ଥିଲେ, ଏଣିକି ସେହି ପଦ ନିର୍ବିବାଦରେ ଭୋଗ କରିବା ନିମନ୍ତେ ପତ୍ନୀର ସାହାଯ୍ୟ ଗ୍ରହଣ କଲେ । ଏପରି ବିଷୟମାନଙ୍କରେ ବିକ୍ରମ ପରମ ଚତୁର ଥିଲେ । ଯେ ଉପାୟରେ ଶ୍ରୀପତିଙ୍କର ସର୍ବନାଶ ହେବ ପତ୍ନୀକୁ ସେହି ଉପାୟ କହିଦେଲେ । ପତ୍ନୀ ଆଗ୍ରହ ପୂର୍ବକ ଶୁଣିଲେ । ଆହୁରି ଆଗ୍ରହ ପୂର୍ବକ କାର୍ଯ୍ୟ କଲେ । ବିକ୍ରମର ବାଞ୍ଛା ଫଳୋନ୍ମୁଖ ହେଲା ।

ଶ୍ରୀପତି ଶୀଘ୍ର ସେଥିର ସନ୍ଧାନ ପାଇଲେ । ଦୁଇ ପ୍ରହର ରାତ୍ର ସମୟରେ ଧନଞ୍ଜୟଙ୍କୁ ନିଭୃତରେ ଡାକି ସବୁ କହିଲେ । ଅନ୍ୟ ଦେଶକୁ ପ୍ରସ୍ଥାନ କରିବାର ଶ୍ରେୟଃ ଜାଣି ଦୁହେଁ ନିଭୃତରେ ଅସ୍ତ୍ରଶସ୍ତ୍ରାଦି ଘେନି ପ୍ରସ୍ଥାନ କଲେ ।

ପ୍ରଭାତ ହେଲାରୁ ସେମାନଙ୍କର ପ୍ରସ୍ଥାନ ବିଷୟ ବୀରପତିଙ୍କର କର୍ଣ୍ଣ ଗୋଚର ହେଲା । ବୀରପତି ଅଧିକତର କୁପିତ ହୋଇ ବିକ୍ରମଙ୍କ ସଙ୍ଗେ ପରାମର୍ଶ କରି ଦେଶରେ ଘୋଷଣା କରି ଦେଲେ ଯେ ଶ୍ରୀପତି ପ୍ରଜାମାନଙ୍କୁ ଶିକ୍ଷା ଦେଇ ବିଦ୍ରୋହ କରିବା ମାନସରେ ନଗରରୁ ପ୍ରସ୍ଥାନ କରିଅଛନ୍ତି ଏବଂ ଯେ ବ୍ୟକ୍ତି ତାହାଙ୍କୁ ସଂହାର କରି ସେଥିର ନିଦର୍ଶନ ଦେଖାଇ ପାରିବ ତାହାକୁ ଯଥେଷ୍ଟ ପୁରସ୍କାର ଦିଆଯିବ । ଅଳ୍ପକାଳ ମଧରେ ଏହି ସମ୍ବାଦ ରାଜ୍ୟର ପ୍ରତ୍ୟେକ ଅଂଶରେ ପ୍ରଚାରିତ ହେଲା ।

ବେଡ଼ନୋର ନଗରର ଉତ୍ତର ପଶ୍ଚିମ କୋଣରେ ପ୍ରାୟ ୨୦ କ୍ରୋଶ ଦୂରରେ ବୀରପତିଙ୍କର ଆଉ ଗୋଟିଏ ସୈନ୍ୟ ଛାଉଣି ଥିଲା । ସେହି ଅଂଶରେ ମହାରାଷ୍ଟ୍ରୀୟ ଦସ୍ୟୁମାନଙ୍କର ବିଶେଷ ଗତିବିଧି ଥିବାରୁ ବୀରପତିଙ୍କର ପିତା ଆବଶ୍ୟକ ଜାଣି ସେଠାରେ ଥୋକାଏ ସୈନ୍ୟ ରଖିଥିଲେ । ବୀରପତିଙ୍କର ଅଧିକାର ସମୟରେ ମହାରାଷ୍ଟ୍ରୀୟମାନଙ୍କର ଉପଦ୍ରବ ଆହୁରି ବଢ଼ିଲା । ତେଣୁ ପୂର୍ବର ସୈନ୍ୟ ସଂଖ୍ୟା ବୃଦ୍ଧି କରି ସେଠାରେ ଗୋଟିଏ ସ୍ଥାୟୀ ଛାଉଣି ପ୍ରସ୍ତୁତ କରାଇଥିଲେ ।

ରାଜଧାନୀର ସୈନ୍ୟମାନେ ବୀରପତିଙ୍କଠାରେ ଯେମନ୍ତ ଅନୁରକ୍ତ ଥିଲେ, କଥିତ ଛାଉଣିର ସୈନ୍ୟମାନେ ମଧ୍ୟ ସେହିପରି ଅନୁରକ୍ତ ଥିଲେ। ରାଜାଙ୍କର ଘୋଷଣା ଶୁଣିଲା ଦିନରୁ ଶ୍ରୀପତିଙ୍କୁ ସଂହାର କରି ରାଜାଙ୍କର ଅଧିକତର ପ୍ରିୟପାତ୍ର ହେବାର ବାଞ୍ଛା ସେମାନଙ୍କ ମନରେ ପ୍ରବଳ ହୋଇଥିଲା । ତେଣୁ ସେମାନେ ସବୁବେଳ ସନ୍ଧାନ ନେଉଥିଲେ । ଛାଉଣୀ ପୂର୍ବପାର୍ଶ୍ୱରେ ମଳୟ ଗିରିସଂଲଗ୍ନ ଗୋଟିଏ ଦୁର୍ଗମ ବନ ଥିଲା । କେତେଜଣ ସୈନିକ ମୃଗୟା କରି ଆସୁ ଆସୁ ଶ୍ରାନ୍ତିମିଟାଇ ଜଳପାନ କରିବା ନିମନ୍ତେ ଗୋଟିଏ ଗିରିନଦୀ ତଟରେ ବସିଲେ। ସେଥି ମଧ୍ୟରୁ ଜଣେ ଗୋଟିଏ ଅସ୍ତ୍ରଧାରୀ ପୁରୁଷଙ୍କୁ ଘୋଡ଼ାର ଲଗାମ ଧରି ତାହାକୁ ଜଳପାନ କରାଇବା ନିମନ୍ତେ ନଦୀଗର୍ଭରେ ଉହ୍ଲାଉଥିବାର ଦେଖି ସଙ୍ଗୀ ଲୋକମାନଙ୍କୁ ଆଖି ଠାରି ଦେଲା । ସମସ୍ତେ ତୁନି ହୋଇ ସ୍ଥିର ଦୃଷ୍ଟିରେ ସେହି ଦୂରସ୍ଥିତ ପୁରୁଷକୁ ଦେଖିଲେ। ଦେଖି ଜାଣିଲେ ଯେ ସେ ଶ୍ରୀପତି ସିଂହ । ଧୀରେ ଧୀରେ ବନର ଅନ୍ତରାଳରେ ଯାଇ ତାହାଙ୍କୁ ଧରିଲେ ଏବଂ ସେହିକ୍ଷଣି ତାହାଙ୍କର ଶିରଚ୍ଛେଦନ କଲେ।

ଶ୍ରୀପତି ଓ ଧନଞ୍ଜୟ ଦୁହେଁ ଶେଷ ରାତ୍ରିବେଳରେ ବେଡ଼ନୋରରୁ ବାହାରି ସେଠାର ପଶ୍ଚିମ ପ୍ରାୟ ୫ କ୍ରୋଶ ଦୂରରେ ଥିବା ଗୋଟିଏ ଅରଣ୍ୟରେ ପଶିଲେ। ସେହି ଅରଣ୍ୟରେ ପଶି ଦିନଯାକ ଗୋଟିଏ ନିଭୃତ ସ୍ଥାନରେ ବିଶ୍ରାମ କଲେ। ରାତ୍ରି ହେଲାରୁ ପୁଣି ଚାଲିଲେ। ଏହିରୂପେ ୫ ଦିନ ବାଟ ଆସି ପୂର୍ବ କଥିତ ନଦୀତଟରେ ଦିନରେ ଅବସ୍ଥାନ କରିଥିଲେ। ସେପରି ନିଭୃତ ସ୍ଥଳରେ ଶତ୍ରୁ ସଙ୍ଗେ ଭେଟ ହେବାର ସମ୍ଭାବନା ନ ଥିଲା। ତେଣୁ ଦିନଯାକ ସେହିଠାରେ ବୃକ୍ଷତଳେ ରହିଲେ। ସନ୍ଧ୍ୟା ଆସନ୍ନ ଦେଖି ଅସ୍ତ୍ର ଶସ୍ତ୍ର ବାନ୍ଧି ଧନଞ୍ଜୟ ନଦୀକୁ ଯାଇ ଘୋଟକକୁ ଜଳ ପିଆଇ ବୃକ୍ଷ ପାଖକୁ ଆସିଲେ। ତାହା ପରେ ଶ୍ରୀପତି ମଧ୍ୟ ଘୋଟକକୁ ନଦୀକୁ ନେଇଗଲେ। ଧନଞ୍ଜୟ ପିତାଙ୍କର ଆଗମନର ପ୍ରତୀକ୍ଷା କରୁଥିଲେ। ଏହି ସମୟରେ ଉଲ୍ଲିଖିତ ଶୋଚନୀୟ ଘଟନା ଘଟିଲା। ଦୂରରୁ ବୃକ୍ଷର ଅନ୍ତରାଳବର୍ତ୍ତୀ ହୋଇ ଧନଞ୍ଜୟ ସୈନ୍ୟମାନଙ୍କର ଚହଳ ଶୁଣିଲେ। ପିତାଙ୍କର ସଂହାର ମଧ୍ୟ ଦେଖିଲେ। ଭୟ ଓ ଶୋକରେ ଅଧୀର ହେଲେ। କ୍ରମେ ଅନ୍ଧାର ହୋଇଆସିଲା। ବେଗେ ଘୋଟକକୁ କଷାଘାତ କରି ଉତ୍ତର ମୁଖ ହୋଇ ସେଠାରୁ ପ୍ରସ୍ଥାନ କଲେ।

## ଦୀପିକାଙ୍କୁ ଉତ୍ତର ।

ଆମ୍ଭେମାନେ ଗତ ମେ ମାସ ତା ୧୭ ରିଖର ଦୀପିକା ପାଠକରି ଅତ୍ୟନ୍ତ ଦୁଃଖିତ ହେଲୁଁ । ଦୀପିକା ବୋଲନ୍ତି ଆମ୍ଭେମାନେ ଆଉ ତାଙ୍କଠାକୁ ''ଦର୍ପଣ... ପଠାଉ

ନାହୁଁ, ଆମ୍ଭେମାନେ କହୁଁ ପ୍ରଥମେ କୌଣସି ନୂଆ ପତ୍ରିକା ବାହାରିଲେ ତାହା ସର୍ବସାଧାରଣଙ୍କଠାରେ ପ୍ରକାଶ ହେବା ନିମନ୍ତେ ଓ ଦୋଷଗୁଣ ବିଚାରିବା ନିମନ୍ତେ ପତ୍ରିକା ସମ୍ପାଦକମାନଙ୍କଠାକୁ ପଠା ହୋଇଥାଏ । ସମ୍ପାଦକମାନେ ଇଚ୍ଛା କଲେ ପରସ୍ପର ବିନିମୟ କରନ୍ତି । ଆମ୍ଭେମାନେ ପ୍ରଥମେ ବିଜ୍ଞାପନ ପଠାଇଥିଲୁଁ ପରେ ତିନିମାସ କାଳ ରୀତିମତ ପତ୍ରିକା ସୁଦ୍ଧା ପଠାଇଲୁଁ କିନ୍ତୁ କୌଣସି ଉତ୍ତର ପାଇଲୁ ନାହିଁ । ପାଞ୍ଚିଲୁଁ ଅବା ଆମ୍ଭେମାନେ ଅପର୍ତ୍ତିମା ପୁଅର ଭାଇ ହୋଇଥିବାରୁ ସମ୍ପାଦକ ଅଧିକ ମୂଲ୍ୟର ଦୀପିକା ବିନିମୟ କରିବାକୁ ଅନିଚ୍ଛୁକ ଅଟନ୍ତି । ଏହିତା ଭାବି ଅନ୍ୟାନ୍ୟ ସମ୍ପାଦକମାନେ ଯେପରି ଦୁଇ ଚାରି ପଇସା କ୍ଷତିକୁ କ୍ଷତି ମଣନ୍ତି ଆମ୍ଭେମାନେ ମଧ ସେହି ରୀତି ଅନୁସରି ପତ୍ରିକା ପ୍ରେରଣ କରିବାକୁ କ୍ଷାନ୍ତ ହେଲୁଁ । ଦୀପିକା ଯେବେ ବିନିମୟ କରିବେ ଆମ୍ଭେମାନେ ମଧ ପ୍ରସ୍ତୁତ ଅଛୁଁ ।

ଦର୍ପଣ ଦିଓଟି ଉପନ୍ୟାସରେ ପୂର୍ଣ୍ଣ ହୋଇ ଅଛି ବୋଲି ଦୀପିକା ବିରକ୍ତି ଭାବ ପ୍ରକାଶ କରିଅଛନ୍ତି କିନ୍ତୁ ନିରପେକ୍ଷ ହୋଇ ବିବେଚନା କଲେ ସେ ଦୋଷକୁ ଦୋଷ ବୋଲାଯାଇ ନପାରେ ମାସିକ ପତ୍ରିକା ପ୍ରାୟ ଉପନ୍ୟାସରେ ପୂର୍ଣ୍ଣ ହୋଇଥାଏ । ଅଧିକାଂଶ ପାଠକ ଉପନ୍ୟାସ ପ୍ରିୟ, ଅଧିକାଂଶର ମନୋରଞ୍ଜନ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ । ଆମ୍ଭେମାନେ ଏହା କହୁଁ ନାହୁଁ ସେହି ଉଦ୍ଦେଶ୍ୟ ସମ୍ୟକ୍ ସିଦ୍ଧ ହୋଇଅଛି । କେବଳ ଆମ୍ଭର ଏତିକି କହିବାର ଉଚିତ ସେହି ଉଦ୍ଦେଶ୍ୟ ସାଧନ ନିମନ୍ତେ ସାଧ୍ୟାନୁସାରେ ଚେଷ୍ଟା କରିଅଛୁଁ ଓ କରିବୁଁ । ପ୍ରତ୍ୟେକ ଖଣ୍ଡରେ ଯେ କେବଳ ଉପନ୍ୟାସ ଥିବ ତାହା ନୁହେ କିଅବା କେବଳ ପ୍ରସ୍ତାବ ଥିବାର ମଧ୍ୟ ଉଚିତ ନୁହେ । ଆମ୍ଭମାନଙ୍କର ଗତ ପତ୍ରିକା ନିରବଚ୍ଛିନ୍ନ ପ୍ରସ୍ତାବ ଶୂନ୍ୟ ନୁହଇ ।

କେହି କେହି ଜଗତ୍‌ହିତୈଷୀ ଲୋକେ ବୋଲନ୍ତି ଯେ ପୃଥିବୀରେ ଯେତେ ଭାଷା ଅଛି ସେ ସବୁ ଲୋପ ପାଇ ସମସ୍ତଙ୍କର ଗୁଟିଏ ଭାଷା ହେଲେ ମନୁଷ୍ୟର ଅନେକ ଉପକାର ହେବ । ଏହା ବାଞ୍ଛନୀୟ ଅଟେ, ମାତ୍ର ସାଧ୍ୟ ନୁହେ । କେହି କେହି ବିଜ୍ଞ ଓ ସାଧ୍ୟ ହିତେଚ୍ଛାସମ୍ପନ୍ନ ଲୋକେ କହନ୍ତି ଯେ ଲିଖିତ ଓ କଥିତ ଭାଷାର ଯେଉଁ ପରିମାଣରେ ସାଦୃଶ୍ୟ ବଢ଼ିବ ସେହି ପରିମାଣରେ ମନୁଷ୍ୟର ସୁବିଧା ହେବ । ଯତ୍ନ କଲେ ଏହି ଇଚ୍ଛା କାଳରେ ସିଦ୍ଧ ହୋଇପାରେ । ଆମ୍ଭେମାନେ ଏହି ମତ ଅନୁସରି ଆମ୍ଭର ଭାଷାକୁ ଯଥାଶକ୍ତି ସାଧାରଣର ବୋଧଗମ୍ୟ କରିବାକୁ ଚେଷ୍ଟା କରୁଅଛୁଁ । ଅବଶ୍ୟ ଏହା ଆମ୍ଭେ ମୁକ୍ତ କଣ୍ଠରେ ସ୍ୱୀକାର କରିବୁଁ ଯେ ଆମ୍ଭପରି କ୍ଷୁଦ୍ରଲୋକ ଦ୍ୱାରା ଏଡ଼େ ବୃହତ୍ କାର୍ଯ୍ୟ ଅଂଶତଃ ସୁଦ୍ଧା ସିଦ୍ଧ ହେବାର କଠିଣ । ହେଲେହେଁ ଯତ୍ନର ତ୍ରୁଟି କରିବୁଁ ନାହିଁ । ସୌଭାଗ୍ୟକ୍ରମେ କୌଣସି ମହାନ୍ ଲୋକ ଆମ୍ଭସଙ୍ଗେ ଏକମତ ହୋଇ ଆମ୍ଭ ପ୍ରଦର୍ଶିତ ରୀତିରେ ଲେଖିବେ । ଅନ୍ୟ କୌଣସି ମହାନ୍ ଲୋକ ତାଙ୍କର ଅନୁବର୍ତ୍ତୀ ହେବେ ।

ବର୍ତ୍ତମାନ ଯାହା ଲୋକମାନଙ୍କର, ବିଶେଷତଃ ଶିକ୍ଷିତ ସମ୍ପ୍ରଦାୟର ହେୟ ହୋଇଅଛି, ଶେଷକୁ ତାହା ଉପାଦେୟ ହୋଇଉଠିବ । ବର୍ତ୍ତମାନ ଚଳିତ ଉତ୍କଳୀୟ ଗଦ୍ୟର ସର୍ଜନା ବଙ୍ଗଳା ଗଦ୍ୟର ଅନୁକରଣରେ ହୋଇଅଛି । ଦୁଇ ଏକ ବର୍ଷ ପୂର୍ବରେ ବଙ୍ଗଳା ଗଦ୍ୟର ରଚନା ନିତାନ୍ତ ସାଧୁଭାଷା ମିଶ୍ରିତ ଥିଲା; ବର୍ତ୍ତମାନ ସୁଦ୍ଧା ଅଧିକ ପରିମାଣରେ ଅଛି, କେବଳ ଦୁଇଚାରିଜଣ ଉତ୍କୃଷ୍ଟ ରୁଚି ସମ୍ପନ୍ନ (ଅନ୍ତତଃ ଆମ୍ଭମାନଙ୍କ ବିବେଚନାରେ) ବ୍ୟକ୍ତି ପୂର୍ବ ରୀତିକୁ ପରିହାର କରି ସରଳ ଅମିଶ୍ର ବଙ୍ଗଳା ଲେଖିବାକୁ ଯତ୍ନ ଓ ପ୍ରୟାସ ପାଉଅଛନ୍ତି । ବଙ୍ଗଳା ଗଦ୍ୟର ଅନୁଭୂତ ହେବାରୁ ଉତ୍କଳଗଦ୍ୟ ନିତାନ୍ତ ସାଧୁଭାଷା ପ୍ଳାବିତ ହୋଇଅଛି ଓ ହେଉଅଛି । ସୁତରାଂ ଉତ୍କଳୀୟ ଶିକ୍ଷିତ ସମ୍ପ୍ରଦାୟର ସାଧୁଭାଷା ଲେଖିବା ଓ ସାଧୁଭାଷା ଶୁଣିବାର ଅଭ୍ୟାସ ପଡ଼ିଯାଇଅଛି । ଏଣୁକରି ଅମିଶ୍ର ଉଡ଼ିୟା ଯେ ସେମାନଙ୍କର କାନକୁ ଗ୍ରାମ୍ୟ ଲାଗିବ ତାହା ବିଚିତ୍ର ନୁହେଁ । ଚିନ୍ତାଶୀଳ ବ୍ୟକ୍ତି ମାତ୍ରକେ ଏହା ଅବଶ୍ୟ ସ୍ୱୀକାର କରିବେ ଯେ ସେ ଭାଷା ପ୍ରକୃତ ଚଳିତ ଶବ୍ଦରେ ପରିପୂର୍ଣ୍ଣ ଅଟେ ତାହା ଅପେକ୍ଷାକୃତ ସବଳ । ଇଂରାଜୀ ଭାଷାର ଇତିହାସ ଯେଉଁମାନେ ମନୋଯୋଗ କରି ପଢ଼ିଅଛନ୍ତି ସେମାନେ ଏବିଷୟରେ ଦୁଇମତ କରିବେ ନାହିଁ, ଆମ୍ଭମାନଙ୍କର ଏମନ୍ତ ଉଦ୍ଦେଶ୍ୟ ନୁହଇ ଯେ ଅନ୍ୟ ଭାଷାରୁ କେବେ କୌଣସି ଶବ୍ଦ ନେବୁଁ ନାହିଁ, ପ୍ରୟୋଜନ ହେଲେ ନେବାର ଉଚିତ । ଅବଶ୍ୟ ନେବୁଁ, ମାତ୍ର ଜଳପରିବର୍ତ୍ତରେ ଉଦକ, ପକ୍ଷୀ ପରିବର୍ତ୍ତରେ ବିହଙ୍ଗ, ଗଛ ପରିବର୍ତ୍ତରେ ମହୀରୁହ ଓ ନାକ ପରିବର୍ତ୍ତରେ ନାସିକା ବ୍ୟବହାର କରିବୁଁ ନାହିଁ ଏବଂ ଶ୍ରବଣ ସେବକ ହୋଇ ଚଳିତ ଶବ୍ଦମାନଙ୍କୁ ନିର୍ବାସିତ କରି ସମାସଗ୍ରଥିତ ଅମର ଖଣିଗର୍ଭୋତ୍ଖାତ ରୁଣୁଝୁଣାୟମାନ ଶବ୍ଦରତ୍ନରାଜି ଦ୍ୱାରା ଉତ୍କଳ ସରସ୍ୱତୀଙ୍କର ନବନୀତକୋମଳ କଳେବରକୁ ଭାରାବନତ କରିବୁଁ ନାହିଁ ।

ଦୀପିକା ବୋଲନ୍ତି ଯେ ''ମାସିକ ପତ୍ରରେ ସମ୍ବାଦ ଦେବାର ଅନୁଚିତ'' ମାତ୍ର ଆମ୍ଭେମାନେ ବିଜ୍ଞାପନରେ ଲେଖିଥିଲୁଁ, ଯେ ସାଧାରଣର ଆଗ୍ରହ ଚରିତାର୍ଥ କରିବା ନିମନ୍ତେ ପ୍ରତି ମାସରେ କିଛି କିଛି ସମ୍ବାଦ ଲେଖିବୁଁ, ସେଥି ନିମନ୍ତେ ଶେଷରେ ଲେଖି ଥାଉଁ ମଧ୍ୟ ଲେଖିବୁଁ । ଦୀପିକା ମଧ୍ୟ ଆମ୍ଭର ବିଜ୍ଞାପନକୁ ଅନୁଗ୍ରହପୂର୍ବକ ପତ୍ରସ୍ଥ କରିଥିଲେ । ସେହି ସମୟରେ ଏପରି ଉପଦେଶ ଦେଇଥିଲେ ଭଲ ହୋଇଥାଆନ୍ତା ।

ଦୀପିକା ପୁରାତନ ପତ୍ରିକା, ତାହାଙ୍କ ଉପଦେଶ ଆମ୍ଭମାନଙ୍କର ଶିରୋଧାର୍ଯ୍ୟ ଅଟେ; ମାତ୍ର ମତଭେଦ ଓ ରୁଚିଭେଦ ହେଲେ ଆମ୍ଭେମାନେ ଯେବେ ଆପଣା ରୁଚି ଓ ଆପଣା ମତର ପକ୍ଷପାତୀ ହେବୁଁ ଏମନ୍ତ ସ୍ଥଳରେ ଆମ୍ଭମାନଙ୍କୁ ଦୋଷୀ ମଣିବାକୁ କାହାରି ଅଧିକାର ନାହିଁ ।

# ଉତ୍କଳପୁତ୍ର ।

## ଆମ୍ଭେମାନେ ଏହି ପତ୍ରଖଣ୍ଡି ଦେଖି ସନ୍ତୁଷ୍ଟ ହୋଇଅଛୁଁ ।

ଏହାର ମୂଲ୍ୟ ଅତି ଅଳ୍ପ ସୁତରାଂ ଅନେକ ଗ୍ରାହକ ହୋଇପାରିବେ ପତ୍ରିକାର ଉଦ୍ଦେଶ୍ୟ ଅତିସତ୍ ଅଟେ କିନ୍ତୁ ସେହି ଉଦ୍ଦେଶ୍ୟକୁ ସାଧିବାର ଅତି କଠିଣ କର୍ମ । ଅର୍ଥ ବିଦ୍ୟାଂ ଓ ହିତୈଷିତା ଏହିମାନଙ୍କର ସମବାୟ ନ ଥିଲେ, ଯେ ଉଦ୍ଦେଶ୍ୟ ସହଜରେ ସଫଳ ହେବ ଏମନ୍ତ ଦିଶୁ ନାହିଁ । ଯେଉଁମାନେ ଏ କାର୍ଯ୍ୟରେ ବ୍ରତୀ ହୋଇ ଅଛନ୍ତି ସେମାନଙ୍କର ଉଦ୍ଦେଶ୍ୟକୁ ଚାହିଁ ଉପାୟ ଅଛି ଅବା ନାହିଁ ତାହା ଆମ୍ଭେମାନେ ଜାଣୁନାହିଁ କେବଳ ପତ୍ର ଦେଖି ଯାହା ଯାହା ଜ୍ଞାତ ହୋଇଅଛୁଁ ତାହା ନିମ୍ନରେ ଲେଖୁଅଛୁଁ ।

ସମ୍ପାଦକଙ୍କର ଯେ ନୈତିକ ସାହସ ଓ ଦେଶହିତୈଷିତା ଯଥେଷ୍ଟ ଅଛି ତାହା ତାହାଙ୍କର ଲେଖାହିଁ ପରିଚୟ ଦେଉଅଛି । ରଚନାମଧ ସାଧାରଣଙ୍କର ବୋଧଗମ୍ୟ ଅଟେ ଯେବେହେଁ ଭାଷା ଆଜିଯାଏ ସମ୍ପୂର୍ଣ୍ଣ ବିଶଦ ହୋଇ ନାହିଁ ତଥାଚ ଅଭ୍ୟାସରୁ ଯେ ଶୀଘ୍ର ତାହା ହେବ ତାହାର ପରିଚୟ ମିଳୁଅଛି କିନ୍ତୁ ତାହାଙ୍କର ଅର୍ଥବତ୍ତା ବିଷୟ ଆମ୍ଭେମାନେ ଜାଣୁ ନାହିଁ; ଏଥିପାଇଁ ସେ ବିଷୟରେ ସନ୍ଦେହ ରହିଲା ।

ବର୍ତ୍ତମାନ ଉଡ଼ିଶ୍ୟାର ଯେପରି ଅବସ୍ଥା ସେଥିରେ କେହି ଯେ ପତ୍ରିକା ବାହାର କରି କେବଳ ତାହା ଆୟ ପ୍ରତି ନିର୍ଭର କରି ଚଳିବେ ସେ ଆଶା ବୃଥା । ବର୍ତ୍ତମାନ ଉଡ଼ିଶ୍ୟାର ପତ୍ରିକାମାନଙ୍କର ଯେତେ ଗ୍ରାହକ ଦେଖାଯାନ୍ତି ସେମାନଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇପାରେ–

୧ । ପତ୍ରିକା ପଢ଼ନ୍ତୁ ଅବା ନ ପଢ଼ନ୍ତୁ କେବଳ ପତ୍ରିକାକୁ ଉତ୍ସାହ ଦେବା ନିମନ୍ତେ ଯେଉଁମାନେ ଗ୍ରାହକ ହୁଅନ୍ତି ରାଜପୁରୁଷ ଓ ଅନ୍ୟାନ୍ୟ ବିଦ୍ୱାନ୍ ଲୋକେ ଏହି ଶ୍ରେଣୀଭୁକ୍ତ ।

୨ । ଏହି ଶ୍ରେଣୀର ଲୋକମାନଙ୍କର ଉଦ୍ଦେଶ୍ୟ ମିଶ୍ର ଅଟେ । ଆପଣାର ଉପକାର ସାଧିବା ସଙ୍ଗେ ସଙ୍ଗେ ପତ୍ରିକାର ଉତ୍ସାହ ବଢ଼ାଇବାର ଏମାନଙ୍କର ଅଭିପ୍ରେତ । ଏମାନେ ଏମନ୍ତ ପଣ୍ଡିତ ନୁହଁନ୍ତି ଯେ ପତ୍ରିକାକୁ ତୁଚ୍ଛ ମଣିବେ ଅବା ଏମନ୍ତ ମୂର୍ଖ ନୁହନ୍ତି ଯେ ପତ୍ରିକା ବୁଝିପାରିବେ ନାହିଁ ।

୩ । ଏମାନେ ଲୋକମାନଙ୍କର ମନୋରକ୍ଷା ଅଥବା କର୍ତ୍ତୃପକ୍ଷୀୟର ଉପଦ୍ରବ ଭୟରେ ଗ୍ରାହକ ହୁଅନ୍ତି । ପତ୍ରିକା ଏମାନଙ୍କଠାକୁ ଯାଏ, ମାତ୍ର ମୁତ୍‌ଫରକା କାଗଜପରି ଆଲୁମାଳିକା ପାଛିୟାରେ ପଡ଼େ, କେହି ତାହା ପଢ଼ନ୍ତି ନାହିଁ । ଅଧିକାଂଶ ଗଡ଼ଜାତର ରାଜା ଓ ବଡ଼ ବଡ଼ ଜମିଦାର ଏହି ଶ୍ରେଣୀଭୁକ୍ତ ଅଟନ୍ତି । ଏମାନେ

ପତ୍ରିକାର ମୂଲ୍ୟକୁ ଟେକ୍ସ ବିଶେଷ ଜାଣି ବିରକ୍ତ ଭାବରେ ଦିଅନ୍ତି । ତୃତୀୟଶ୍ରେଣୀର ଗ୍ରାହକମାନଙ୍କଠାରୁ କିଞ୍ଚିତ୍ ଲାଭ ହୁଏ ସତ୍ୟ କିନ୍ତୁ ତାହା ଦୀର୍ଘକାଳ ସ୍ଥାୟୀ ନୁହେଁ । ରାଜପୁରୁଷମାନେ ପତ୍ରିକାର ଅନୁକୂଳ ହୋଇ ଭୟ ନ ଦେଖାଇଲେ ଏପରି ଲାଭର ସମ୍ଭାବନା ନାହିଁ ।

ପ୍ରଥମଶ୍ରେଣୀ ଗ୍ରାହକମାନଙ୍କଠାରୁ ଯେ କିଛି ଅଧିକ ଅର୍ଥ ମିଳେ ଏମନ୍ତ ନୁହେ, କେବଳ ସେମାନେ ଗ୍ରାହକ ହେଲେ ସାଧାରଣକୁ ତାହାଦ୍ୱାରା ଯେଉଁ ସୁଦୃଷ୍ଟାନ୍ତ ପ୍ରଦର୍ଶିତ ହୁଏ ତାହାର ମୂଲ୍ୟ ଅଧିକ । ଯେଉଁ ପତ୍ରିକା ଅଧିକାଂଶ ଦ୍ୱିତୀୟ ଶ୍ରେଣୀରୁ ଗ୍ରାହକ ପାଇପାରନ୍ତି ସେହି ପତ୍ରିକା ଦୀର୍ଘାୟୁ ହେବାର ସମ୍ଭାବନା । ଆମ୍ଭେମାନେ ଈଶ୍ୱରଙ୍କଠାରେ ପ୍ରାର୍ଥନା କରୁଅଛୁଁ ଉତ୍କଳପୁତ୍ର ବହୁସଂଖ୍ୟକ ୨ୟ ଶ୍ରେଣୀ ଗ୍ରାହକ ପାଉନ୍ତୁ ।

ଆମ୍ଭେମାନେ ପତ୍ରିକାର ସମାଲୋଚନା କରୁଅଛୁଁ । ଆମ୍ଭମାନଙ୍କ ଜାଣିବାରେ ପତ୍ରିକାରେ ଯେଉଁ ଯେଉଁ ସ୍ଥାନମାନଙ୍କରେ ଦୋଷ ଅଛି ତାହା ସଂକ୍ଷେପରେ ଦେଖାଉ ଅଛୁଁ । ସମ୍ପାଦକ ଏଥିରେ ଯେବେ ବିରକ୍ତ ହେବେ ତେବେ ତାହାଙ୍କର ସ୍ମରିବାର ଉଚିତ ଯେ, ତାହାଙ୍କୁ ବିରକ୍ତ କରିବାର କ୍ଷମତା ସେ ସ୍ୱୟଂ ଆମ୍ଭ ହାତକୁ ଦେଇଅଛନ୍ତି ।

୧ । ପତ୍ରିକାର ଭାଷା କୌଣସି କୌଣସି ସ୍ଥଳରେ ଅତ୍ୟନ୍ତ ଉଦ୍ଧତ, ଏପରି ଉଦ୍ଧତ ଭାଷା ସାଧାରଣର ଆନୁକୂଲ୍ୟ-ଲିପ୍ସୁ ନବୀନ ସମ୍ପାଦକଙ୍କୁ ଶୋଭନୀୟ ନୁହେ । ଭଦ୍ର ଗାଳିର ଭାଷା ନମ୍ର ହେବାର ଉଚିତ । ଯେତେ ଚିକ୍କଣ ଓ ମାର୍ଜିତ ହେବ ସେହି ପରିମାଣରେ ତାହାର କାଟ ବେଶି ହେବ ।

୨ । ଭାଷାର କୌଣସି କୌଣସି ସ୍ଥଳରେ ଭ୍ରାନ୍ତ ଓଜସ୍ୱିତାର ଉଦାହରଣ ଲକ୍ଷିତ ହୁଏ । ଆମ୍ଭେମାନେ ଉଦାହରଣସ୍ୱରୂପ ନିମ୍ନରେ କେତେକ ପଂକ୍ତି ଉଦ୍ଧାର କରୁଅଛୁଁ ।

୨ୟ ସଂଖ୍ୟକ ପତ୍ର ''ସଭ୍ୟତା''

''ବାର୍ଣ୍ଣିସ ଯୋତା ମାଡ଼ିଲେ, ଦଶଟଙ୍କିଆ ଚନ୍ଦ୍ରକଣିଆ ବା ମାଣିଆବନ୍ଧୀ ଯୋଡ଼ କିମ୍ବା କଫଦାର ପ୍ଲେଟଓ୍ୟାଲା କୁର୍ତ୍ତା ପିନ୍ଧିଲେ କୁଞ୍ଚକୁଞ୍ଚିଆ ଓ ଫରଫରିଆ ସରୁଓଡ଼ା କାନ୍ଧରେ ପକାଇଲେ, ଅଲ ବର୍ଟ ଫଇସନରେ ମୁଣ୍ଡବାଳ ଭାଙ୍ଗିଲେ ବି ଲୋକେ ପ୍ରକୃତ ସଭ୍ୟ ହୁଅନ୍ତି ! ତାହା ନୁହେଁ । ଏକଥା ଯେ କହନ୍ତି ନିଶ୍ଚେ ସେ ଆଖି ଥାଉଁ ଥାଉଁ କଣା । ଅବଶ୍ୟ ଏକଥା ମାନିଲେ ମାନିପାରୁଁ ଯେ ଏଥିରେ ଅତି ଅଳ୍ପ ପରିମାଣରେ ବାହ୍ୟିକ ସଭ୍ୟତା ନିର୍ଭର କରୁଅଛି; କିନ୍ତୁ ବାହ୍ୟିକ ସଭ୍ୟତା ପଳାଶ ପୁଷ୍ପପରି, ଚୂନଦିଆ ମାଟି ଗାନ୍ଥୁଣୀ ଇଟା କାନ୍ଥ ପରି । ନା ଏକଥାରେ ସୁଦ୍ଧା ପାଠକମାନଙ୍କର କିଛି ସନ୍ଦେହ ଜାତ ହେଉଅଛି ? ଚିନ୍ତାଶୀଳ ପାଠକେ ଏ କଥାକୁ ବିଚାର କରନ୍ତୁ ।''

ଏଥିରେ ପ୍ରଥମ କେତେକ ପଂକ୍ତିର ରଚନା ଭୁଲ ହୋଇଅଛି । ମାତ୍ର ଶେଷକୁ ''ନା ଏକଥାରେ ସୁଦ୍ଧା ପାଠକମାନଙ୍କର କିଛି ସନ୍ଦେହ ଜାତ ହେଉଅଛି ?'' ଏପରି ପ୍ରଶ୍ନ କରିବାର ଔଚିତ୍ୟ ଆମ୍ଭେମାନେ ଭଲରୂପେ ବୁଝିପାରୁ ନାହୁଁ । କେବଳ ବାର୍ଣ୍ଣିସ

ଯୋତା ମାଡ଼ିଲେ ଯେ ପ୍ରକୃତ ସଭ୍ୟତା ହେଲା ନାହିଁ ଏହା ଯେ ପାଠକେ ବୁଝି ପାରିବେ ନାହିଁ ଏପରି ଅନୁମାନ କରିବାର ପାଠକଙ୍କୁ ନିର୍ବୋଧ ମଣିବାର ନାମାନ୍ତର ବିନୁ ଅନ୍ୟ କିଛି ନୁହଇ ।

ଆମ୍ଭମାନଙ୍କର କ୍ଷୁଦ୍ର ବିବେଚନାରେ ସମ୍ପାଦକ ଯେବେ ସ୍ୱୟଂ ଚିନ୍ତାଶୀଳ ହୋଇ ଲେଖିଥାନ୍ତେ ତାହା ହେଲେ ''ଚିନ୍ତାଶୀଳ ପାଠକେ ଏ କଥାକୁ ବିଚାର କରନ୍ତୁ'' ଏ ବାକ୍ୟଟି ତାହାଙ୍କ ଲେଖନୀରୁ ବାହାରି ନ ଥାନ୍ତା ।

୩ୟ ସଂଖ୍ୟା

''ସୃଷ୍ଟି ଉର୍ଷନା ଦ୍ୱାରା ଏମାନଙ୍କ ଉଦ୍ୟମ କଳିକାକୁ ଦମିତ ଓ ହୃଦୟ ବାସନାକୁ ନିରୁତ୍ସାହ କଣ୍ଟକରେ ସେମାନେ ପୁଣି ବିଦ୍ଧ କରି ଅଛନ୍ତି ।''

ଲେଖକ ଏହିଠାରେ ଗୋଟିଏ ଅଳଙ୍କାର ଦେଇ ଯେବେ କ୍ଷାନ୍ତ ହୋଇଥାନ୍ତେ, ତାହାହେଲେ ରଚନା ଅପେକ୍ଷାକୃତ ଭଲ ହୋଇଥାଆନ୍ତା । ଦ୍ୱିତୀୟ ଅଳଙ୍କାରଟିର ଏହି ପ୍ରତୀତ ହେଉଅଛି ଯେ ଲେଖକ ''ଦମିତ'' ପର୍ଯ୍ୟନ୍ତ ଲେଖି ''ଏତ ଅଳ୍ପ ହେଲା ଆଡ଼କୁ ଆଉ କଣ ଲେଖିବି'' ବୋଲି କିଛିକାଳ ଲେଖନୀକୁ ସ୍ଥଗିତ ରଖି ଅଳଙ୍କାର ଲୋଡ଼ୁଥିଲେ ।

ଏହିପରି ଦୋଷ ପତ୍ରରେ ଆହୁରି ଅଛି ମାତ୍ର ଏଥିପାଇଁ ଯେ ପତ୍ର ହେୟ ହେଲା ଆମ୍ଭର କହିବାର ତାତ୍ପର୍ଯ୍ୟ ଏହା ନୁହେଁ । କୌଣସି ପଦାର୍ଥର ଦୋଷ ଅଛି କି ନାହିଁ ଏହି ଅନୁସନ୍ଧାନହିଁ ପ୍ରକାରାନ୍ତରେ ତାହାର ଉତ୍କର୍ଷ ପ୍ରତିପାଦକ ଅଟେ । ଆଲୋଚ୍ୟ ପତ୍ରିକାରେ ଗୁଣର ଭାଗ ଅଧିକ ଅଛି । ଯେଉଁ ଦୋଷ ଅଛି ତାହା ନବୀନତା ସୁଲଭ ଏବଂ କାଳରେ ସଂଶୋଧିତ ହେବ । ଆମ୍ଭେମାନେ ପାଠକମାନଙ୍କୁ ଅନୁରୋଧ କରୁଅଛୁଁ ସମସ୍ତେ ଖଣ୍ଡେ ଖଣ୍ଡେ ନେଇ ପତ୍ରର ଉତ୍ସାହ ବୃଦ୍ଧି କରନ୍ତୁ ।

# ରଘୁବଂଶ

## ତ୍ରୟୋଦଶ ସର୍ଗ

ଏଥୁ ଅନ୍ତେ ଶବ୍ଦଗୁଣ ଗଗନସାଗର
ପୁଷ୍ପକ ବିମାନେ ହେଲେ ଭେଦି ବୀରବର ।
ନୟନେ ପଡ଼ନ୍ତେ ରତ୍ନ– ଅକର ଅର୍ଣ୍ଣବ
ସୀତାଙ୍କୁ ଭାଷିଲେ ବାଣୀ ରହସ୍ୟେ ରାଘବ ।୧।
ବିଦେହ ନନ୍ଦିନୀ ଦେଖ ମଳୟ ପର୍ଯ୍ୟନ୍ତ
ବିଭକ୍ତ ସେତୁରେ ମୋର ସିନ୍ଧୁ ଫେନ ବନ୍ତ ।

ଯେସନ ଶରଦେ ଚାରୁ ତାରା ବିମଣ୍ଡିତ
ଗଗନ ଦିଶଇ ଛାୟା ପଥେ ଦ୍ୱିଖଣ୍ଡିତ ।୨।
ସମୁଦ୍ର ଉଭବ କଥା ଶୁଣ ରୂପବତୀ
ଜନମିଲେ ଆମ୍ଭକୁଳେ ସଗର ନୃପତି ।
ଆରମ୍ଭିଲେ ଯାଗ, ମେଧ୍ୟ ତୁରଙ୍ଗ ତାଙ୍କର
ପାତାଳେ ବାନ୍ଧିଲେ ଇନ୍ଦ୍ର କପିଳ ପାଶର ।
ଅଶ୍ୱ-ଅର୍ଥେ ମହୀ ତଳ ସଗରଙ୍କ ପୁଏ
ବିଦାରିଲେ, ତେଣୁ ଏହା ସାଗର ବୋଲାଏ ।୩।
ରବିରଶ୍ମିଲଭେ ଏଥୁ ଗର୍ଭ ଜଳମୟ
ଜନ୍ମନ୍ତି ଏହାର ଗର୍ଭେ ରତନ-ନିଚୟ ।
ବାଡ଼ବ-ଅନଳ ଏହା କରଇ ଧାରଣ
ଏଥିରୁ ଗୋ, ଇନ୍ଦୁମୁଖି ଇନ୍ଦୁର ଜନମ ।୪।
ଅନେକ ଅବସ୍ଥା ଭଜି ଅଛି ପାଗାବାର
ଦିଶଦିଗ ବ୍ୟାପିଅଛି ଏହାର ବିସ୍ତାର ।
କଳିନୋହେ ଏହାର ସ୍ୱରୂପ ପରିମାଣ
ବିଷ୍ଣୁଙ୍କ ପରାୟେ ତାହା ଅତିକ୍ରମେ ଜ୍ଞାନ ।୫।
କଳ୍ପଅନ୍ତେ ସର୍ବଲୋକ ସଂହାରି କେଶବ
କରନ୍ତି ଏଥିରେ ଯୋଗ ନିଦ୍ରା ଅନୁଭବ ।
ନାଭି ପଦ୍ମାସନେ ପିତାମହ ସେ କାଳରେ
ବିଷ୍ଣୁଙ୍କୁ କରନ୍ତି ସ୍ତବ ସୁଗମ୍ଭୀରସ୍ୱରେ ।
ପକ୍ଷଛେଦି, ନଗ ଗର୍ବ ହରନ୍ତେ ବାସବ
ଆଶ୍ରିଲେ ଏହାର ଜଳ ମହୀଧର ସର୍ବ ।
ଯେସନ ଶତ୍ରର ଭୟେ ଭୀତ ନୃପଗଣ

ଏହାର କଳତ୍ର ରୋଗ ନୋହେ ସାଧାରଣ
ତରଙ୍ଗ ଅଧର ଦାନେ ତୋଷେ ନଦୀଗଣ ।୯।
ଜଳଜନ୍ତୁ ସହ ନଦୀ ମୁଖର ଜୀବନ
ଦୂରେ ତିମି ବୃନ୍ଦ ମୁଖେ କରନ୍ତି ଗ୍ରହଣ ।
ସେ ମୁଖ ମୁଦିଲାବେଳେ ରନ୍ଧ୍ର ଦେଇ ଜଳ
ଊର୍ଦ୍ଧ୍ୱକୁ ପ୍ରବାହ ରୂପେ ଉଠେ ଅବିରଳ ।୧୦।
ଗଜାକାର ଗ୍ରାହ୍ୟଗଣ ଭେଦି ଫେନରାଶି
ତରଙ୍ଗ ଉପରେ ଦେଖ ଉଠୁଛନ୍ତି ଭାସି ।
ଦିଶୁଛି କପୋଳେ ଫେନ ପୁଞ୍ଜ ଲାଗିବାରୁ
କର୍ଣ୍ଣେ ଯେହ୍ନେ ବିରଜଇ ଚାମର ସୁଚାରୁ ।୧୧।
ଆକାରେ ତରଙ୍ଗସମ ଅଜଗର ଗଣ
ଅଛନ୍ତି ବାହାରି ପିଇବାକୁ ସମୀରଣ ।
ଦୂରକରେ ଫଣାମଣି ତରଙ୍ଗର ଭ୍ରାନ୍ତି
ରବି କର ଯୋଗୁଁ ଯାର ବଢ଼ି ଅଛି କାନ୍ତି ।୧୨।
ତୁମ୍ଭର ଅଧର ସମ ପ୍ରବାଳ ମାଳରେ
ପଡ଼ି ଅଛି ଶଙ୍ଖଯୂଥ ତରଙ୍ଗ ବେଶରେ ।
ବଦ୍ଧ ଅଟେ ମୁଖତାର ପ୍ରବାଳ-ଅଙ୍କୁରେ
ତେଣୁ ବାହାରଇ ତାହା ଅତି ବିଳମ୍ବରେ ।୧୩।
ସିନ୍ଧୁ ଜଳ ପିଇବାକୁ ପ୍ରବର୍ତ୍ତଣ ଘନ
ଭଁଉରି ବେଗରେ, ଦେଖ, ଭ୍ରମୁଛି କେସନ ।
ଏ ଛବି ଦେଖି ମନକୁ ଏମନ୍ତ ଆସୁଛି
ସିନ୍ଧୁକୁ ମନ୍ଦର ଗିରି କି ଅବା ମନ୍ଥୁଛି ।୧୪।
ନୀଳଦିଶେ ତୀର ତାଳୀ ତମାଳ ମାଳାରେ
ଲୌହଚକ୍ର ସମସିନ୍ଧୁ ଅଟଇ ଆକାରେ ।
ଚକ୍ରର କଳଙ୍କ ରେଖା ପ୍ରାୟ ସେହି ତୀର
ଦୂରରୁ ଦିଶଇ, ଦେଖ କିବା ମନୋହର ।୧୫।
କେତକୀ ରେଣୁରେ ଦେଖ ତୀର ସମୀରଣ
ତୁମ୍ଭ ମୁଖ, ବିଶାଳାକ୍ଷି, କରୁଛି ମଣ୍ଡନ ।
ତୁମ୍ଭ ବିମ୍ବାଧର ପାନେ ତୃଷ୍ଣା ଦେଖି ମୋର
ଅନୁମାନେ ଜାଣିଛି କି ବିବେକୀ ସମୀର
ମଣ୍ଡନ ବିଳମ୍ବେ ମୋର ହୃଦୟ ଅଧୀର ।୧୬।

ଚାହୁଁ ଚାହୁଁ ମୁହୂର୍ତ୍ତକେ ବିମାନ ବେଗରେ
ପହୁଞ୍ଚିଲା ଦେଖ, ଆସି ବେଳା ପ୍ରଦେଶରେ ।
ସେ ବେଳା, ଶୁକ୍ତି ନିର୍ଗତ ମୁକ୍ତାରେ ଶୋଭିତ
ତହିଁରେ ଗୁବାକ ଶ୍ରେଣୀ ଫଳେ ଆନ ମିତ ।୧୭।
କୁରଙ୍ଗ ନୟନୀ ଥରେ ଅନାଅ ପଛକୁ
ଯାଉଛି ଆମ୍ଭର ରଥ ଯେତିକି ଆଗକୁ ।
ତେତିକି କାନନବତୀ ତୀରଭୂମି ଦିଶେ
ଦୂରବର୍ତ୍ତୀ ସମୁଦ୍ରରୁ ବାହାରଇ କିସେ ।୧୮।
ମୋର ଇଚ୍ଛା ଅନୁସରି ସଞ୍ଚରଇ ରଥ
କେତେବେଳେ ଅବିଳମ୍ବେ ଦେବତାଙ୍କ ପଥ ।
କେଭେ ଘନପଥେ କେଭେ ବିହଗ ମାର୍ଗରେ
ପୁଷ୍ପକ ବିମାନ ଦେଖ ଗଗନେ ସଞ୍ଚରେ ।୧୯।
ତୁମ୍ଭ ମୁଖେ ସ୍ୱେଦସିନ୍ଧୁ ମଧ୍ୟାହ୍ନେ ଝରଇ
ତାହାକୁ ଆକାଶ ବାୟୁ ବହନେ ହରଇ ।
ମନ୍ଦାକିନୀ ବାଚି ଯୋଗୁଁ ସେ ବାହୁ ଶୀତଳ
ବହଇ ସେ ଐରାବତ ମଦ ପରିମଳ ।୨୦।
ସ୍ୟନ୍ଦନର ଗବାକ୍ଷରେ ଲମ୍ବାଇଣ କର
କୁତୂହଳେ ପରଶୁଛ ତୁମ୍ଭେ ଜଳଧର ।
ତୁମ୍ଭ କର କମଳରେ ଅର୍ପୁଅଛି ଘନ
ବିଜୁଳି ବଳୟରୂପେ ନବ ଆଭରଣ ।୨୧। କ୍ରମଶଃ

# ରହସ୍ୟ

ତିନିଜଣ ଡକାଇତ ଏକ ମେଳି ହୋଇ ଡକାଇତି ବ୍ୟବସା କରୁଥିଲେ । ଦିନେ ଠାକରେ ଡକାଇତି କରି ଥୋକାଏ ସମ୍ପତ୍ତି ଆଣିଲେ । ବାଁଟି ନେବାବେଳେ ଭାଗ କମ ଦିଶିଲାରୁ ଜଣେ ଆନ ଜଣକୁ ନୁଚାଇ କହିଲା ‘‘ଆମ୍ଭେ ଦୁହେଁ ସବୁ ନେବା, ଚାଲ, ତାକୁ ମିଠାଇ ପାଇଁ ବଜାରକୁ ପଠାଇବା । ବାଟରେ ନୁଚିଥିବା, ଆସିଲାବେଳେ ସହସା ତାହା ଉପରେ ପଡ଼ି ତାକୁ ମାରି ପକାଇବା । କାର୍ଯ୍ୟ ସେହିପରି ହେଲା । ତୃତୀୟଜଣ ବଜାରରୁ ମିଠାଇ ଆଣିଲା ସମୟରେ ଦୁହେଁ ହଠାତ୍ ତାହା ଉପରେ ପଡ଼ି ତାକୁ ମାରି ମିଠାଇ ଖାଇଲେ । ଖାଇ ଆସି ସମ୍ପତ୍ତି ବାଁଟୁଛନ୍ତି ମୁଣ୍ଡ ବୁଲେଇଲା ଅବସନ୍ନ ହୋଇ

ପଡ଼ି ସେହିକ୍ଷଣି ମଲେ । ତୃତୀୟ ବ୍ୟକ୍ତି ଏଦୁହିଁଙ୍କ ଠାରୁ ଆହୁରି ସିୟାଣିୟାଁ । ଏଦୁହେଁ ଜଣକୁ ମାରି ବଡ଼ ଭାଗ ନେବାର ପାଞ୍ଚୁଥିଲେ, ସେ ଦୁହିଁଙ୍କୁ ମାରି ତାହାଠାରୁ ବଡ଼ ଭାଗ ନେବାର ପାଞ୍ଚ୍ ସେହିଆଡ୍ଡୁ ମିଠାଇରେ ବିଷ ଦେଇ ଆଣିଥିଲା । ଘଣ୍ଟାକ ଭିତରେ ତ୍ରିମୂର୍ତ୍ତି ଅନ୍ତର୍ଦ୍ଧାନ ହେଲେ । ସ୍ୱାର୍ଥପରତା ସଙ୍ଗେ ଏହିପରି ଐକ୍ୟ ଥାଏ ।

ଜଣକୁ ଫାଶୀଦଣ୍ଡର ଆଜ୍ଞା ହୋଇଥିଲା, ଯେଉଁଦିନ ଫାଶୀ ଦିୟାଯିବ ସେଦିନ ବଡ଼ କୁହୁଡ଼ି । ଫାଶୀ ପାଇବା ବ୍ୟକ୍ତି ଫାଶୀକାଠ ନିକଟକୁ ବାହାରିବାବେଳେ ପ୍ରହରୀମାନଙ୍କୁ କହିଲା ''କୁହୁଡ଼ି ହୋଇଚି ଶରଦୀ ହେବ ମୋ ଉପରେ ଛତା ଧର ।

ଜଣେ ଶ୍ରାଦ୍ଧ ଉପଲକ୍ଷରେ ତାହା ଚାକର ହାତରେ ଖଣ୍ଡେ ସାମଗ୍ରୀର ତାଲିକା ଦେଇ ବଜାରକୁ ପଠାଇଦେଲେ । ଚାକର ପଢ଼ି ଜାଣିଥିଲା, ଗୋଟି ଗୋଟି ପଢ଼ି ସବୁ କିଣିଲା । ବଜାରରୁ ଅଇଲାରୁ ତାହା ଖାମୁଦ ପଚାରିଲେ ''ସବୁ ଆଣିଲୁଟିକି'' ? ସେ ବୋଇଲା ଆପଣେ ! ଆଣିଲି ଏକା ''ଦଶରା ମଶରା'' କଣରେ ? ସେ ବୋଇଲା ''ସେହିତାତ ଲେଖା ହୋଇଚି'' । ''କାହିଁ ଦେଖି'' । ସେ ସୁଦ୍ଧା ସେହିପରି ପଢ଼ିଲେ । ପଛକୁ ଗୁମାସ୍ତା ଆସି ''ଦଶରା ମଂଶରା'' ବୋଲି ବୁଝାଇ ଦେଲେ ।

## ସଂବାଦ

ଆମ୍ଭେମାନେ ମଫସଲିଆ କଚେରିୟାମାନଙ୍କ ଦୁର୍ଦ୍ଦଶା ଦେଖି ଅତ୍ୟନ୍ତ ଦୁଃଖିତ ହୋଇଅଛୁଁ । ଆଜିକାଲି ଯେପରି ଖରା ହୋଇଅଛି ସେଥିରେ ଯେଉଁମାନେ ଆପଣା ଆପଣା ଘରେ ଥାନ୍ତି ସେମାନଙ୍କୁ ଦୁଇ ଚାରି ଗିଲାସ ପାଣି ପିଇବାକୁ ହୁଏ, କଚେରିକି ଗଲେତ କଥା ନାହିଁ । ଏଠାକାର କଚେରିଠାରେ ଗୋଟିଏ କୁଆଁ ଅଛି ସେଥିରୁ ଜଳ ତୋଳିବା ଲାଗି ଗୁଟିଏ କଳସୁଦ୍ଧା ଅଛି । ସେ କଳ ଦ୍ୱାରା ମଫସଲିୟାମାନଙ୍କୁ ଜଳତୋଳି ଆସଇ ନାହିଁ । କେହି କେହି ଅବା ସାହସ କରି ତୋଳିବାକୁ ଯାନ୍ତି ହୁଏତ ଅନେକ ସମୟରେ ମୁଣ୍ଡ ଫଟାଇ ମୃତ୍ୟୁ ତୁଲ୍ୟ ହୋଇ ଆସନ୍ତି । ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ଇଚ୍ଛା ଯେ ସେମାନଙ୍କ ଜଳପାନ ନିମନ୍ତେ କିଲେଟର ସାହେବ ଅବା ନଗରର କେହି ବଡ଼ଲୋକ କିଛି ସୁବିଧା କରି ଦେଉନ୍ତୁ । ଏଥିରେ ତାଦୃଶ କିଛି ଅଧିକ ଖରଚ ହେବ ନାହିଁ । ଖଣ୍ଡିଏ ଆଡ୍ଡାର ଖାଁଚି ଦେଇ ଜଣେ ବ୍ରାହ୍ମଣ, ଜଳ ତୋଳିବା ପାଇଁ ଜଣେ ଲୋକ ଓ ତିନି ଚାରି ଗୋଟା ମାଠିଆ କିଣି ଦେଲେ ଅତି ଉତ୍ତମ ହେବ । ମହାତ୍ମା ରିକଟସାହେବ କୁଆଁ କୁଳାଇ ଯେଉଁ ଫଳ ପାଇ ନାହାନ୍ତି ଯେ ମହାତ୍ମା ଆମ୍ଭର ପ୍ରସ୍ତାବିତ ସୁବିଧା କରିଦେବେ ସେ ତାହାଠାରୁ ବଳି ଫଳ ପାଇବେ ।

—

**ପ୍ରଥମ ବର୍ଷ ସପ୍ତମ ସଂଖ୍ୟା**
**ଜୁଲାଇ, ୧୮୭୩**

# ବିବେକୀ

ସମସ୍ତଙ୍କର ଏହା ମନେରଖିବା ଉଚିତ ଯେ ତାଙ୍କର ଦୋଷ ନାହିଁ । ତାଙ୍କର ଅବସ୍ଥା ଭିନ୍ନେ ତୁମ୍ଭର ଅବସ୍ଥା ଭିନ୍ନେ, ତାଙ୍କର ଶିକ୍ଷା ଏକପ୍ରକାର ତୁମ୍ଭର ଶିକ୍ଷା ଅନ୍ୟପ୍ରକାର । ପୁଣି ଶିକ୍ଷା ଓ ଅବସ୍ଥା ଏ ଦୁହେଁ ଏକା ହେଲେ ସୁଦ୍ଧା ରୁଚି ଭେଦ ହେବାର ସମ୍ଭାବନା । ପ୍ରକୃତିର ମଧ୍ୟ ଏଥିରେ କିଛି ଅଛି, ଏମନ୍ତସୁଦ୍ଧା ଘଟିଥାଏ ଯେ ଖଣ୍ଡିଏ ପୋଥି ସାଧାରଣର ଆଦରଣୀୟ ହୋଇଅଛି ମାତ୍ର ତୁମ୍ଭକୁ ସେ ପୋଥି ଭଲ ଲାଗୁ ନାହିଁ, ସମସ୍ତେ ଯାହାକୁ ଭଲ କହୁଅଛନ୍ତି ମୁଁ ତାକୁ କିମିତି ମନ୍ଦ ବୋଲିବି ଏହା ଭାଳି ଲୋକ ଲଜ୍ଜାଭୟରେ ତୁମ୍ଭେ ଆପଣାର ଅଶ୍ରଦ୍ଧାକୁ ଲୁଚାଉଅଛ । ଫଳେ କଥା ଏତିକି ଜାଣିଥିବ, ଯେଉଁ ପୋଥି ତୁମ୍ଭର ପ୍ରକୃତି ଶିକ୍ଷା ଏବଂ ଅବସ୍ଥା ସଙ୍ଗେ ଅଧିକ ମିଳିବ ସେହି ପୋଥି ତୁମ୍ଭକୁ ଭଲ ଲାଗିବ । ଭର୍ତ୍ତୃହରିର ଚାରୋଟି ଶ୍ଳୋକ ପଢ଼ି ମୋହର ଯେମନ୍ତ ସୁଖ ହୁଏ ମାଘର ସର୍ଗେ ପଢ଼ିଲେ ତାହା ହୁଏ ନାହିଁ । ମୁଁ ଏମନ୍ତ କହୁ ନାହିଁ ଯେ ମାଘଠାରୁ ଭର୍ତ୍ତୃହରି ବଡ଼ କବି । ମାତ୍ର ମୋହର ମନର କଥା ଭତୃହରି ଯେତେ କହନ୍ତି ମାଘ ତେତେ କହନ୍ତି ନାହିଁ । ରୁଚି ଭେଦ ହେବାର ସମ୍ଭାବନା ଆଗହୁଁ କଳି ସେଥିପାଇଁ ପ୍ରସ୍ତୁତ ଥିବାର ଭଲ । ଖଣ୍ଡିଏ ନୂଆ ପୋଥି ବାହାରିଲା । କୌଣସି ସମ୍ବାଦପତ୍ରରେ ସେଥିର ଅନୁକୂଳ ସମାଲୋଚନା ପଢ଼ି ତୁମ୍ଭେ ସେହି ପୋଥିର ପକ୍ଷପାତୀ ହେଲ । ପୁଣି ଆଉ ଖଣ୍ଡିଏ ସମ୍ବାଦପତ୍ରରେ ସେଥିର ପ୍ରତିକୂଳ ସମାଲୋଚନା ଦେଖି ଚମତ୍କୃତ ହେଲ । ମାତ୍ର ଚମତ୍କୃତ ହେବାର କୌଣସି ହେତୁ ନାହିଁ । ମହାକବି ଗେଟିଙ୍କ ରଚିତ ଖଣ୍ଡିଏ ଉପନ୍ୟାସ ସମ୍ବନ୍ଧରେ ପଣ୍ଡିତବର ଯେପରି ଯେପରି ମନ୍ତବ୍ୟ ପ୍ରକାଶ କରିଅଛନ୍ତି ପଣ୍ଡିତବର ଲୁଇସ୍ ସେଥିର ବିପରୀତ ମତ ପ୍ରକାଶ କରିଅଛନ୍ତି । ଯେପରି ଅଯୋଗ୍ୟ ନୁହନ୍ତି । ଲୁଇସ୍ ଅଯୋଗ୍ୟ ନୁହନ୍ତି । କେହି କାହାକୁ ଊଣା ନୁହନ୍ତି ।

ଯେ ବ୍ୟକ୍ତି ତୁମ୍ଭକୁ ମନ୍ଦଲୋକ ବୋଲି ଜାଣନ୍ତି ତାଙ୍କଠାରେ ଶତ୍ରୁତା ନ କରି ବରଂ ତାଙ୍କର ସେହି ସଂସ୍କାରକୁ ଦୂର କରିବା ନିମନ୍ତେ ଚେଷ୍ଟା କରିବାର ବିହିତ । କୌଣସି ସାଧୁବ୍ୟକ୍ତି କୌଣସି କଥାରୁ ତୁମ୍ଭକୁ ମନ୍ଦଲୋକ ବୋଲି ଅନୁମାନ କରନ୍ତି । ଯେଉଁ କାରଣରୁ ସେ ଏପରି ଅନୁମାନ କରନ୍ତି ସେଥି ସଙ୍ଗେ ଅନ୍ୟାନ୍ୟ ଅନେକ କଥା ଅଛି ତାହା ତାଙ୍କୁ ଜଣା ନାହିଁ । ସବୁ ଜାଣିଥିଲେ କେବେ ତାଙ୍କର ଏପରି ଅନୁମାନ ହୋଇ ନ ଥାଆନ୍ତା । ମନୁଷ୍ୟ ସର୍ବଜ୍ଞ ନୁହେଁ । ତାଙ୍କର ଦୋଷ ନାହିଁ । ତୁମ୍ଭେ କହିବ "ସବୁକଥା ନ ବୁଝି ନ ଜାଣି କାହିଁକି ମତେ ଦୋଷୀ ବୋଇଲେ" ।

ମାତ୍ର ତୁମ୍ଭର ଏତିକି ବିଚାରିବାର ଉଚିତ ଯେ ଯାହା ଜାଣି ସେ ତୁମ୍ଭକୁ ମନ୍ଦ ଭାଳୁଅଛନ୍ତି, ସେଥିସଙ୍ଗେ ଆହୁରି ଅନେକ କଥା ଅଛି ଏହା ଯେବେ ସେ ଜାଣି ଥାଆନ୍ତେ ତେବେ ସିନା ସବୁ ବୁଝିଥାଆନ୍ତେ ଅବା ବୁଝିବାକୁ ଚେଷ୍ଟା କରି ଥାଆନ୍ତେ । ତାଙ୍କୁ ତୁମ୍ଭେ ଯେଉଁ ଦୋଷରେ ଦୋଷୀ ମଣୁଅଛ ତୁମ୍ଭଠାରେ କଅଣ ସେ ଦୋଷ ନାହିଁ ? ଦିନେ ତୁମ୍ଭେ କଚେରିକି ଗଲ । କଚେରିରେ କୌଣସି କର୍ମଚାରୀକୁ ଦେଖି ଜୁହାର ହେଲ । ମାତ୍ର ସେ ତୁମ୍ଭକୁ କିଛି ନ କହି ମୁଖ ଗମ୍ଭୀର କରି ହାତରେ ଥିବା କାଗଜ ପଢ଼ିବାକୁ ଲାଗିଲେ ତୁମ୍ଭ ଦେହ ଜଳିଗଲା । ''ଏଡ଼େ ଅହଂକାରୀ ପଦେ କଥା କହିଲା ନାହିଁ'' । ସେହିଦିନଠାରୁ ତୁମ୍ଭର ପ୍ରତିଜ୍ଞା ହେଲା ଯେ ତାଙ୍କ ସଙ୍ଗେ ବାକ୍ୟାଳାପ କରିବ ନାହିଁ । ପୁଣି କୌଣସି କର୍ମ ନିମନ୍ତେ ତାଙ୍କ ଘରକୁ ଅନିଚ୍ଛା ପୂର୍ବକ ଗଲ । ସେ ତୁମ୍ଭକୁ ଦେଖି ଜୁହାର ହେଲେ, ମନ ଫେଡ଼ି ତୁମ୍ଭକୁ ସବୁ କଥା କହିଲେ, ପ୍ରକୃତ ବନ୍ଧୁପରି ତୁମ୍ଭ ସଙ୍ଗେ ବ୍ୟବହାର କଲେ, ତାଙ୍କର ଆଚରଣ ଦେଖି ତୁମ୍ଭେ ଆପଣାକୁ ଧିକ୍କାର ଦେଲ । ''ଏଡ଼େ ଭଲଲୋକକୁ ମୁଁ କାହିଁକି ମନ୍ଦ ଭାଳିଥିଲି'' ଏହା ପାଞ୍ଚି ମନରେ ଲଜ୍ଜିତ ହେଲ । କାହାରି ଘରେ ତୁମ୍ଭେ ବସିଅଛ, ଜଣେ ଭିକ୍ଷୁକ ଆସି ଗୃହସ୍ଥକୁ କିଛି ମାଗିଲା । ଗୃହସ୍ଥ କୁପିତ ହୋଇ ଭିକ୍ଷୁକକୁ ତଡ଼ି ଦେଲେ । ଏହା ଦେଖି ତୁମ୍ଭେ ଭାଳିଲ ଯେ ଗୃହସ୍ଥ ବଡ଼ ନିର୍ଦ୍ଦୟ । ଏଡ଼େ ପାଷଣ୍ଡ ତୁମ୍ଭେ ଦେଖି ନାହଁ । ପୁଣି ଦିନେ ବାଟରେ ଆସୁଁ ଆସୁଁ ଦେଖିଲି ଯେ ସେହି ବ୍ୟକ୍ତି ବାଟ ପାଖରେ ଥିବା ଗୋଟିଏ ଅନ୍ଧର ପଲାରୁ ବାହାରି ଆସିଲେ, ଅନ୍ଧ ଆନନ୍ଦିତ ହୋଇ ତାହାଙ୍କୁ ଆଶୀର୍ବାଦ କଲା । ଏହା ଦେଖି ତୁମ୍ଭର ପୂର୍ବ କୁସଂସ୍କାର ସେହିକ୍ଷଣି ଘୁଞ୍ଚିଗଲା । ତୁମ୍ଭେ ତାହାଙ୍କୁ ପରମ ଦୟାଳୁ ବୋଲି ଜାଣିଲ । ଅବଶ୍ୟ କେତେଗୋଡ଼ିଏ ନରାଧମ ଅଛନ୍ତି ତାଙ୍କୁ ପ୍ରଥମେ ଦେଖି ଯେ ସଂସ୍କାର ଜନ୍ମିବ ଶଏଥର ଦେଖିଲା ଉତ୍ତାରୁ ସୁଦ୍ଧା ସେ ସଂସ୍କାର ଟଳିବ ନାହିଁ । ମାତ୍ର ଏମନ୍ତ ଲୋକ ଅତି ଅଳ୍ପ । ସହସ୍ରରେ ଜଣେ ଅଧେ ଦେଖାଯାଆନ୍ତି ।

କେହି ତୁମ୍ଭକୁ ଧର୍ମଯୁଧିଷ୍ଠିର କରି ଜାଣନ୍ତି, ତାଙ୍କ ଜାଣିବାରେ ତୁମ୍ଭପରି ସରଳ ଉଦାର ଆଉ ନାହିଁ । ତୁମ୍ଭେ ଯେବେ ପ୍ରକୃତରେ ଚତୁର ହୋଇଥିବ ଏପରି ଲୋକ ସହିତ ଅତ୍ୟନ୍ତ ଘନିଷ୍ଠ ସଂସର୍ଗ କରିବାକୁ ତୁମ୍ଭର ମନ ବଳିବ ନାହିଁ । ଏପରି ଲୋକ ତୁମ୍ଭର ଆଚାର ବ୍ୟବହାର ଯେତେ ଅଳ୍ପ ଜାଣିବେ ତେତେ ଭଲ । ହେତୁକି ତୁମ୍ଭର ସବୁ କଥା ଜାଣିଲା ଉତ୍ତାରୁ ତାହାଙ୍କର ପୂର୍ବ ଶ୍ରଦ୍ଧା, ପୂର୍ବ ଭକ୍ତି ଟଳିଯିବ । ଯୁବା ପୁରୁଷମାନେ କାହାରି ସଦ୍‌ଗୁଣ ଦେଖି ଅତ୍ୟନ୍ତ ମୋହିତ ହୋଇଯାଆନ୍ତି, ତାଙ୍କ ସଙ୍ଗେ ବନ୍ଧୁତା କରିବାକୁ ଉତ୍ସୁକ ହୁଅନ୍ତି; ବନ୍ଧୁତା ହେଲାଉତ୍ତାରୁ ତାଙ୍କ ସଙ୍ଗେ ଘନିଷ୍ଠ ସଂସର୍ଗ ହେବାରୁ ପୂର୍ବ ମୋହ ଭାଙ୍ଗିଯାଏ, ପଛକୁ ସେହି ''ଅଭିନ୍ନ ହୃଦୟ'' ''ଉଦାର ଚରିତ'' ବନ୍ଧୁଙ୍କୁ ସାମାନ୍ୟ ଲୋକରୁ ବିଶେଷକରି ପାଞ୍ଚନ୍ତି ନାହିଁ । କୌଣସି ସ୍ଥାନ ଦେଖିବା ଆଗେ

କଳ୍ପନା ସେଥିର ଛବି ଦେଖାଇଥାଏ । ସେହି ଛବି ସଙ୍ଗେ ଘେନି ଆମ୍ଭେ ସେହି ସ୍ଥାନକୁ ଯାଉଁ । ସ୍ଥାନକୁ ଯାଇ ଦେଖୁଁ ଯେ କଳ୍ପନାର ଛବିରୁ ପ୍ରକୃତ ଛବି ଅନେକ ଅନ୍ତର । ଯେତେ ନିକଟବର୍ତ୍ତୀ ହେଉଥାଉଁ ସେହି ପରିମାଣରେ ଅଶ୍ରଦ୍ଧା ବଳବାନ୍ ହେଉଥାଏ । ଅନେକ କବିର ରସମୟୀ ଲେଖନୀନିଃସୃତ କବିତା ପଢ଼ି କବିଠାରେ ଆମ୍ଭମାନଙ୍କର ନିର୍ମଳ ଶ୍ରଦ୍ଧା ଜାତ ହୁଅଇ । କବିଙ୍କୁ ଦେଖିବା ପାଇଁ ନିତାନ୍ତ ଉତ୍ସୁକ ହେଉଁ । କଳ୍ପନା ତାହାଙ୍କର ଗୋଟିଏ ମୋହିନୀମୂର୍ତ୍ତି ହୃଦୟପଟରେ ଚିତ୍ରିତ କରିଦିଏ ମାତ୍ର ପ୍ରକୃତ ମୂର୍ତ୍ତିକି ଦେଖିଲେ ନିଶ୍ଚେ ହତାଶ ହେବ । କାଳିଦାସ ଲମ୍ପଟ ଥିଲେ, ବେଶ୍ୟାସକ୍ତ ଥିଲେ ଏହା ଶୁଣିଲାକ୍ଷଣି କଷ୍ଟ ହୁଏ, ପ୍ରବାଦକୁ ଅଳୀକ ମଣିବାକୁ ପ୍ରବୃତ୍ତି ହୁଏ । ମେଘଦୂତରେ ଯକ୍ଷର ନିଜ ପତ୍ନୀପ୍ରତି ଅନୁରାଗ ବର୍ଣ୍ଣନା ସ୍ଥଳରେ ଯେ କବି ଏମନ୍ତ ସ୍ୱର୍ଗୀୟ ମାଧୁରୀ ଦେଖାଇଅଛନ୍ତି ସେ ଲମ୍ପଟ ଥିଲେ ? ମାତ୍ର ଏହା ଅସମ୍ଭବ ନୁହେଁ । ଯକ୍ଷରୂପୀ କାଳିଦାସଙ୍କୁ ପ୍ରକୃତ କାଳିଦାସ ମଣିବାର ଅଦୂରଦର୍ଶିତା କାର୍ଯ୍ୟ । ପିଲାମାନେ ଭାରତରାମାୟଣ ପଢ଼ି ସେଥିର ବର୍ଣ୍ଣିତ ଉଦାର ନାୟକ ନାୟିକାଙ୍କର ଅତ୍ୟନ୍ତ ପକ୍ଷପାତୀ ହୁଅନ୍ତି । କବିର ଚାତୁରୀ ବୁଝି ନ ପାରି ସେହି ନାୟକ ନାୟିକାମାନେ ପଦ୍ୟରେ କଥାବାର୍ତ୍ତା କହୁଥିଲେ ଏହିତା ଭାଳନ୍ତି ଏ ସେହିପରି । ଯେ ବ୍ୟକ୍ତି ତୁଣ୍ଡରୁ କଞ୍ଚାଗଦ୍ୟ ବିନୁ ଆଉ କିଛି ବାହାରେ ନାହିଁ କାବ୍ୟ ରଚୟିତା ନିଜ ଚାତୁରୀ ଦ୍ୱାରା ତାହା ତୁଣ୍ଡରୁ ମନୋହର ପଦ୍ୟ ନିର୍ଗତ କରନ୍ତି । ଯେ କବି ପରଦାରା ବିନୁ ଆନ କିଛି ଜାଣନ୍ତି ନାହିଁ, ପ୍ରକୃତ ପ୍ରଣୟର ସ୍ୱାଦ କେବେ ପାଇ ନାହାନ୍ତି । ବିଶ୍ୱ କାବ୍ୟ ରଚୟିତା ତାହାରି ଲେଖନୀରୁ ସ୍ୱର୍ଗୀୟ ଦାମ୍ପତ୍ୟ ପ୍ରଣୟ ରସର ସ୍ରୋତ ପ୍ରବାହିତ କରନ୍ତି । ସଚ୍ଚରିତ୍ରତା ଯୋଗୁଁ ଅବା ଅସାଧାରଣ ଗୁଣ ଯୋଗୁଁ ସବୁଠାରେ ତୁମ୍ଭର ନାଁ ପଡୁଅଛି, ବହୁଦୂରଯାଏ ତୁମ୍ଭର ଯଶ ବ୍ୟାପି ଅଛି । କେହି ଦୂରରୁ ତୁମ୍ଭକୁ ଦେଖିବା ପାଇଁ ଆସିଲେ । ଥରେ ଅବା ଦୁଇଥର ତାଙ୍କ ସଙ୍ଗେ ଆଳାପ କରି ତାଙ୍କୁ ମେଲାଣି ଦେବାର ଭଲ । ଏତେଦୂରରୁ ଲୋକେ ମୋତେ ଦେଖିବାକୁ ଆସିଅଛନ୍ତି ଏହା ଭାବି ଆପଣାକୁ ଶ୍ଳାଘ୍ୟ ମଣି ତୁମ୍ଭେ ଯେବେ ତୁମ୍ଭର ସବୁ ବିଷୟ ତାହାକୁ ଦେଖାଇବ ତେବେ ନିଶ୍ଚେ ଜାଣିଥିବ ତୁମ୍ଭଠାରେ ତାହାଙ୍କର ଶ୍ରଦ୍ଧା ହ୍ରାସ ହୋଇ ଯିବ, ଶେଷକୁ ସେ ତୁମ୍ଭକୁ ସାଧାରଣ ଲୋକ ପ୍ରାୟେ ମଣିବେ ।

ଆପଣାକୁ ସାମାନ୍ୟ ଲୋକ ପରି ଜାଣି କାର୍ଯ୍ୟ କରିବାର ଅନେକ ଦିନରେ ଶିକ୍ଷା ହୁଏ । ଆନ ଲୋକେ ଆମ୍ଭକୁ ଅଧମ ଜାଣିଲେ ବୋଲି ସେମାନଙ୍କଠାରେ କ୍ରୋଧ ନ କରିବାର ଅନେକ ଦିନରେ ଶିକ୍ଷା ହୁଏ । ଏହି ଦିଓଟି କଥା ଘେନି ଏତେ ବେଳ ଯାଏ ମାର୍ଜନା କରୁଥିଲୁଁ । ଏବେ ଆଉ ଦିଓଟି କହି ନିବୃତ୍ତ ହେବୁଁ ।

ପ୍ରଥମ କଥା ଏହି ଯେ, କେହି ନିର୍ବୋଧ ହେଲା, ଅଳସ ହେଲା, ଅସାବଧାନ ହେଲା ବୋଲି ତାହା ଉପରେ ନିତାନ୍ତ ବିରକ୍ତ ଅବା କ୍ରୁଦ୍ଧ ହେବାର ଉଚିତ ନୁହେଁ ।

ତୁମ୍ଭେ ବୋଝ ମୁଣ୍ଡେଇ ଅଛ, ବୋଝ ବଡ଼ ଭାରି ହୋଇ ଅଛି ଏଥିପାଇଁ ବୋଝ ଉପରେ ତୁମ୍ଭେ କଅଣ ରାଗିବ ? ଦଉଡ଼ି ଖଣ୍ଡକୁ ଟାଣି ଟାଣି ଥକିଲ, ଛିଣ୍ଡିଲା ନାହିଁ ଦଉଡ଼ିକୁ କଅଣ "ବଦ୍ଜାତ, ପାଜି, ହାରମଜାଦା" ବୋଲି ଗାଳି ଦେବ ? ବୋଝ ଭାରି ହେଲା, ଦଉଡ଼ି ଛିଣ୍ଡିଲା ନାହିଁ ବୋଲି ତୁମ୍ଭେ ଆଉ ଆଶ୍ଚର୍ଯ୍ୟାନ୍ୱିତ ହେଉ ନାହଁ । ତୁମ୍ଭେ ଜାଣିଥିଲ ବୋଝ ଭାରିହେବ ଦଉଡ଼ି ଛିଣ୍ଡିବ ନାହିଁ । ମନୁଷ୍ୟସୁଦ୍ଧା ସେହିପରି, ସେପରି ନୁହିଲା ତୋ ଆଠପଣି । କେତେଗୋଡ଼ିଏ ଲୋକ ଅଛନ୍ତି ଯେ ତାହାଙ୍କର ଭୃତ୍ୟ ଯେବେ ଅଳସ ହେଲା, ଅବା ଦୁଷ୍ଟ ହେଲା, ସେଥିରେ କେବଳ ଭୃତ୍ୟ ଉପରେ କ୍ରୁଦ୍ଧ ହେବେ ଏମନ୍ତ ନୁହେଁ, ତାହାର ପ୍ରତ୍ୟେକ ଆଳସ୍ୟସୂଚକ ଅଥବା ଦୁଷ୍ଟତା ସୂଚକ କାର୍ଯ୍ୟରେ ଥରେ ଲେଖାଏଁ କ୍ରୁଦ୍ଧ ହେବେ, ଥରେ ଲେଖାଏଁ ଆଖି ଲାଲ କରୁଥିବେ, ଥରେ ଲେଖାଏଁ ଗାଳି ଦେଉଥିବେ । ଏଗୁଡ଼ି ମନୁଷ୍ୟର ସ୍ୱଭାବ ସୁଲଭ । ଏହା ଆଗହୁଁ ବିଚାରି ସେଥି ନିମନ୍ତେ ପ୍ରସ୍ତୁତ ଥିବାର ଉଚିତ । ପିଲାମାନେ ଚାଲୁଁ ଚାଲୁଁ ଯେବେ ଝିଣ୍ଟିପଡ଼ନ୍ତି, ଯେଉଁ ସ୍ଥାନରେ ଝିଣ୍ଟିପଡ଼ନ୍ତି ସେ ସ୍ଥାନକୁ ଗୋଁଇଣ୍ଠା ମାରନ୍ତି । ଏହା ଦେଖି ଆମ୍ଭେମାନେ ହଁସୁ । ଆମ୍ଭେମାନେ ବଢ଼ିଅଛୁଁ, ଜ୍ଞାନ ହୋଇଅଛି, ଜାଣୁ ସେ ସ୍ଥାନର କୌଣସି ଦୋଷ ନାହିଁ । ମାତ୍ର ଆମ୍ଭର ଇଚ୍ଛା ଚାଲୁଁ ଚାଲୁଁ ଯେବେ କାହାରି ଆଳସ୍ୟ ଅବା ଅସାବଧାନତା ସଙ୍ଗେ ଠେକ ଲାଗି ଝିଣ୍ଟିପଡ଼େ, ଆମ୍ଭେମାନେ ତାହାକୁ ବାଡ଼େଇବାକୁ ତ୍ରୁଟି ନ କରୁଁ । ଆମ୍ଭେମାନେ ପିଲାମାନଙ୍କର କ୍ରୋଧ ଦେଖି ଯେମନ୍ତ ହଁସୁ, ଉଦାସୀନ ବିବେକୀ ଲୋକେ ଆମ୍ଭର କ୍ରୋଧ ଦେଖି ସୁଦ୍ଧା ସେହିପରି ହସୁଥିବେ । ତୁମ୍ଭର ଭୃତ୍ୟ ଆଳସ୍ୟ କଲା ଥରେ ଏହା ଜାଣିଲ, ଜାଣିଲ ଯେ ତାହା ସ୍ୱଭାବ ସେହିପରି, ତାହା ଉପରେ କ୍ରୁଦ୍ଧ ହେଲି । ତେଣିକି, ଆଉ ସେ ଯେତେଥର ଆଳସ୍ୟ କରିବ, ସେଥିରେ ତୁମ୍ଭର ଆଶ୍ଚର୍ଯ୍ୟାନ୍ୱିତ ଅବା କୁପିତ ହେବାର ଅବିହିତ । ତାହାକୁ ଅଳସୁଆ ଜାଣି ଥରେତ ତାହା ଉପରେ କୁପିତ ହୋଇ ଯଥେଷ୍ଟ ଦଣ୍ଡ ଦେଇ ଅଛ । ପଛକୁ ସେ ଯେତେଥର ଆଳସ୍ୟ କରିବ ସେ ଦୋଷମାନ ସେହି ଅଳସୁଆ ପଣ ଭିତରେ ଗଲା । ଜଣେ ତୁମ୍ଭକୁ ଦିନେ ଗୋଟିଏ ମିଥ୍ୟା କହିଲା । ପୁଣି ଆଉ ଦିନେ କହିଲା । ପୁଣି ଆଉ ଚାରିଦିନ ପରେ କହିଲା । ତାହାକୁ ମିଥ୍ୟାବାଦୀ ଜାଣି ସେହି ମିଥ୍ୟାବାଦିତା ନିମନ୍ତେ ଥରେ ତାହା ଉପରେ କ୍ରୁଦ୍ଧ ହୋଇ କ୍ଷାନ୍ତ ଥିବାର ଭଲ । ଥରକୁ ଥରେ ଲେଖାଏଁ କୁପିତ ହେଲେ ତୁମ୍ଭେ ଚଳିପାରିବ ନାହିଁ, ସେ ଚଳି ପାରିବ ନାହିଁ । ପ୍ରକୃତିକୁ ତୁମ୍ଭେ କ'ଣ କରିବ ? ସେ କ'ଣ କରିବ ?

ଦ୍ୱିତୀୟ କଥା ଏହି ଯେ କୌଣସି ସ୍ଥାନରେ ଅବା କୌଣସି ବ୍ୟକ୍ତି ପାଖରେ ତୁମ୍ଭଠାରୁ କପାଳିଆ ଅବା ତୁମ୍ଭଠାରୁ ବଡ଼ ଲୋକମାନଙ୍କର ଯେମନ୍ତ ମର୍ଯ୍ୟାଦା ହେଲା ତୁମ୍ଭର ତେମନ୍ତ ହେଲା ନାହିଁ ବୋଲି ତୁମ୍ଭର ବିରକ୍ତ ଅବା କୁପିତ ହେବାର ଅନୁଚିତ । ଅଶିକ୍ଷିତ ଅବା ଅବିବେକ ଲୋକେ ଏ କଥାକୁ ବଡ଼ ଧରନ୍ତି । ଦେଖା କରିବା ନିମନ୍ତେ

ତୁମ୍ଭେ ଜମିଦାରଙ୍କ ଘରକୁ ଗଲ, ବାବୁ ଭିତରେ ଅଛନ୍ତି, ଭୃତ୍ୟ ତୁମ୍ଭର ଆସିବାର ବାର୍ତ୍ତା ଘେନିଗଲା, ତୁମ୍ଭେ ସେହିବେଳୁ ବସିଅଛ ବାବୁଙ୍କର ଦେଖାନାହିଁ, ହଠାତ୍ ଆଉ ଜଣେ ଧନୀପ୍ରଜା ପାଲେଙ୍କି ଚଢ଼ି ଜମିଦାର ବାବୁଙ୍କ ସଙ୍ଗେ ସାକ୍ଷାତ୍ ନିମନ୍ତେ ଆସିଲେ । ଭୃତ୍ୟ ପୁଣି ବାର୍ତ୍ତା ଘେନି ଗଲା । ଜମିଦାର ବାବୁ ହଜାର କାମଛାଡ଼ି ବାହାରି ଆସିଲେ ସେହି ଧନୀପ୍ରଜାଙ୍କ ସଙ୍ଗେ ଆଗେ ସମ୍ଭାଷଣ କଲେ । ତା'ପରେ ତୁମ୍ଭସଙ୍ଗେ ସମ୍ଭାଷଣ କଲେ । ଜମିଦାରଙ୍କ ପକ୍ଷପାତ ଦେଖି ତୁମ୍ଭେ କୁପିତ ହେଲ । ''ମୋରତ ପାଲେଙ୍କି ନାହିଁ ମତେ କାହିଁକି ପଚାରିବେ ।'' ଆପଣା ବନ୍ଧୁ ସଙ୍ଗେ କଥା କହୁଁ କହୁଁ ଜମିଦାରଙ୍କୁ ଲକ୍ଷ୍ୟକରି ଏହିପରି ବ୍ୟଙ୍ଗ କଲ; ମାତ୍ର ନିଷ୍ଠା ଜାଣିଥିବ ଏ ବ୍ୟଙ୍ଗ ନୁହେ ଏ ପ୍ରକୃତ କଥା । ଏପରି ହେବାର ଉଚିତ, ଏପରି ମଧ୍ୟ ହୋଇଥାଏ । ଏପରି ନୁହିଲେ ସଂସାର ଚଳିବ ନାହିଁ । ମାତବର ବ୍ୟକ୍ତିମାନେ ଇତର ବ୍ୟକ୍ତିଠାରୁ ବେଶି ଆଦର ପାଆନ୍ତି । ଏହା ଅନେକ ଲୋକେ ଜାଣନ୍ତି ମାତ୍ର ସେହି କଥା ପୁଣି ଆପଣା ଉପରେ ପଡ଼ିଲେ ଅନେକ ଲୋକଙ୍କୁ ବାଧେ । ବସ୍ତୁତଃ ଅନ୍ୟକୁ ଆପଣାଠାରୁ ବଳି ମର୍ଯ୍ୟାଦା ଲଭିବାର ଦେଖି ସେଥିରେ ଦୁଃଖିତ ଅବା ରୁଷ୍ଟ ନୋହିବାର ଅନେକ ଦିନେ ଶିକ୍ଷା ହୁଏ । କବି ଗୋଲ୍ଡ଼୍ସ୍ମିଥ୍ ଏକ ସଭାକୁ ଯାଇଥିଲେ ସଭାରେ ବସି ଆପଣା ବନ୍ଧୁମାନଙ୍କ ସଙ୍ଗେ କଥା କହୁ ଅଛନ୍ତି ଏମନ୍ତ ସମୟେ ଜଣେ କହିଲା ''ତୁନି ହୁଅ ଜନ୍‌ସନ୍ ବକ୍ତୃତା କରିବେ'' ଗୋଲ୍‌ଡ଼ସ୍ମିଥ ଅତ୍ୟନ୍ତ କୋମଳମନା ଥିଲେ । ଅତ୍ୟନ୍ତ କୁପିତ ହେଲେ । ମାତ୍ର କୁପିତ ହେବାର ତାହାଙ୍କ ପକ୍ଷେ ଅନୁଚିତ ଥିଲା । ଜନ୍‌ସନ୍ ସମାଜରେ ପ୍ରତିଷ୍ଠା ଲଭିଥିଲେ, ସମସ୍ତଙ୍କଠାରେ ଆଦରଣୀୟ ହୋଇଥିଲେ । ଜନ୍‌ସନ୍‌ଙ୍କୁ ସମସ୍ତେ ଧନୁର୍ଦ୍ଧର କରି ଜାଣିଥିଲେ । ତୁମ୍ଭେ ଜଣେ ସାମାନ୍ୟ କର୍ମଚାରୀ ଡିପୋଟୀ ବାବୁଙ୍କ ସଙ୍ଗେ କଥା କହୁ ଅଛ, ଡିପୋଟୀ ବାବୁ ବନ୍ଧୁ ପ୍ରାୟ ତୁମ୍ଭକୁ ସମ୍ଭାଷଣ କରି ତୁମ୍ଭସଙ୍ଗେ କଥା କହୁ ଅଛନ୍ତି । ହଠାତ୍ ମେଜେଷ୍ଟର ସାହେବ ସେଠାକୁ ଆସିଲେ ଡିପୋଟୀବାବୁଙ୍କର ସେହି ସମ୍ଭାଷଣ, ସେହି ହାସ୍ୟ ମୁହୂର୍ତ୍ତ ଭିତରେ ଉଲଟିଗଲା; ଆଉ ତୁମ୍ଭକୁ ଚାହିଁଲେ ନାହିଁ । ସାହେବଙ୍କୁ ସଲାମ କରି ତାଙ୍କ ସଙ୍ଗେ କଥା କହିବାକୁ ଲାଗିଲେ, ଏମନ୍ତ ମୁଖଭଙ୍ଗୀ କଲେ ଯେ, ତୁମ୍ଭକୁ କେବେ ଦେଖିନାହାନ୍ତି । ତୁମ୍ଭେ ବିରକ୍ତ ହେଲ । ମାତ୍ର ବିରକ୍ତ ହେବାର ଉଚିତ ନୁହେଁ । ଡିପୋଟୀମଉସୁଫଙ୍କର ଚାରା ନାହିଁ । ସାହେବଙ୍କର ମୂର୍ତ୍ତି ତାଙ୍କର ହୃଦୟ ଯାକ ଘୋଡ଼ିଲାଣି । ତୁମ୍ଭପାଇଁ ସ୍ଥାନ ନାହିଁ । ଡିପୋଟୀଙ୍କ ତୁମ୍ଭେ ଅଦୃଶ୍ୟ ହୋଇଅଛ ? ସୂର୍ଯ୍ୟ ଉଠିଲେ ତାରାମାନ ଆମ୍ଭକୁ ଅଦୃଶ୍ୟ ହୁଅନ୍ତି । ସାହେବ ଆସିଲାରୁଇତର ଲୋକ ଡିପୋଟୀଙ୍କୁ ଅଦୃଶ୍ୟ ହେଲେ । ତୁମ୍ଭର ଶୂଳରୋଗ ଅଛି । ସବୁ ଦିନ ସେହି ରୋଗରୁ କଷ୍ଟ ପାଉଅଛ । ହଠାତ୍ ଯେବେ ତୁମ୍ଭକୁ ଉତ୍କଟ ଜ୍ୱର ହେଲା; ଜ୍ୱର ଥିବା ଯାଏ ଶୂଳର ଯାତନା ଜାଣିପାରିବ ନାହିଁ । ଯାକୁ ସୁଦ୍ଧା ସେହିପରି ଜାଣିଥିବ ।

ପାଠକଙ୍କୁ ବିରକ୍ତ କରିବି ନାହିଁ । ପତ୍ର ଅବୟବକୁ ଚାହିଁ ଯଥେଷ୍ଟ ହୋଇଅଛି । କେହି ଅବା କହିବେ "ବିଳମ୍ବରେ କଅଣ ଶିକ୍ଷା ହୁଏ ଏ ବିଷୟ ଘେନି ଉପଦେଶ ଦଉଅଛନ୍ତି ମାତ୍ର ଉପଦେଶକୁ ଅତିଶୟ ଦୀର୍ଘ କଲେ ସେଥିର ଫଳ ଊଣା ହୋଇଯାଏ, ଏକଥା ଏହାଙ୍କର ଆଜିଯାଏ ଶିକ୍ଷା ହୋଇ ନାହିଁ" । ମାତ୍ର ତାହା ନୁହେଁ ଏହି ପ୍ରବନ୍ଧ ପଢୁ ପଢୁ ନିଜ ଅବସ୍ଥା ନିଜ ଅନୁଭବ ସ୍ମରଣ କରି ତୁମ୍ଭ ମନରେ ଆହୁରି କେତେକ କଥା ଉଦିତ ହୋଇଥିବ । ତୁମ୍ଭ ଜାଣିବାରେ ସେ ସବୁ କଥା ଲେଖିଥିଲେ ପ୍ରବନ୍ଧ ଆହୁରି ଭଲ ହୋଇଥାଆନ୍ତା ।

ସମାପ୍ତ

# ଧନଞ୍ଜୟ ସିଂହ

## ଦ୍ବିତୀୟ ପରିଚ୍ଛେଦ ।

ସଦାଶିବଗଡ଼ ସମୁଦ୍ରର ତୀରବର୍ତ୍ତୀ । ମଳୟ ପର୍ବତ ଓ ସାଗର ଏ ଦୁହିଁଙ୍କର ମଧ୍ୟରେ ଅବସ୍ଥିତ । ଏଣେ ନୀଳ ପର୍ବତ ଆକାଶ ପରଶୁ ଅଛି । ଏଣେ ନୀଳସମୁଦ୍ର ଦିଗ୍‌ବଳୟ ପରଶୁ ଅଛି । ପୂର୍ବ ଦିଗରେ ଆମଳୟ କ୍ରମୋନ୍ନତ, ନିବିଡ଼ବନ ଠାକୁଠା କଳାପ୍ରସ୍ତର ସ୍ତୂପ । ପଶ୍ଚିମଦିଗରେ ଧଳାବାଲୁକା ରାଶି, ସେଥି ପରେ ଶାମୂକାଦି ଶୋଭିତ, ତରଙ୍ଗାହତ କୂଳ, ସେଥିପରେ ଅନନ୍ତ ନୀଳ ଲହରୀମାନ ଖେଳୁ ଅଛନ୍ତି, ମୃଦୁ ମୃଦୁ ନିନାଦ କରୁଅଛନ୍ତି, ଧଳାଫେଣ ଆନ୍ଦୋଳନ ଯୋଗୁଁ କୁନ୍ଦଫୁଲ ଫିଙ୍ଗିଲା ପ୍ରାୟ ଦିଶୁ ଅଛନ୍ତି ।

ସୂର୍ଯ୍ୟସାଗରେ ବୁଡ଼ିଲେଣି । ପଶ୍ଚିମ ଦିଗନ୍ତବର୍ତ୍ତୀ ଜଳ ପଦ୍ମରାଗ-ପ୍ରଭାରାଶି ପରି ଦିଶିଲାଣି । ଜଳପକ୍ଷୀମାନେ ଯେ ଯାହା ବସାକୁ ଗଲେନି କେହି କେହି ଅବା ଯାଉଅଛନ୍ତି, ଯାଉଁ ଯାଉଁ ମିଷ୍ଟରାବ ଦେଉ ଅଛନ୍ତି, ଉଦର ଓ ଡେଣା ତାମ୍ରବର୍ଣ୍ଣ ଦିଶୁଅଛି । କ୍ରମେ ସଂସାର ସ୍ତବ୍ଧ ହେଲା । କେବଳ ନୀଳ ଲହରୀ ମୃଦୁ ନିନାଦ ଶୁଭିଲା । ସ୍ୱାପଦମାନଙ୍କର ନିର୍ଗମନ ଓ ନିଜ ବସାପାଖଦେଇ ସଞ୍ଚରଣ ଯୋଗୁଁ ଦୂରରେ କୁରରୀଦମ୍ପତି ଆର୍ତ୍ତନାଦ କରି, ଏଣେତେଣେ ଉଡୁଅଛନ୍ତି, ଥରେ ବସାଆଡ଼କୁ ଧାଉଁ ଅଛନ୍ତି । ଥରେ ଅନ୍ୟ ଗଛ ଉପରେ ବସି ଆପଣା ବସା ଆଡ଼କୁ ଚାହୁଁ ଅଛନ୍ତି । ଏତେବେଳଯାଏ ସାଗରର ଅନନ୍ତ ମୃଦୁ ନିନାଦ, କୁରରୀଙ୍କର ଆର୍ତ୍ତନାଦ ବିନୁ ଆଉ କିଛି ଶୁଭୁ ନ ଥିଲା । କୁରରୀରବ ବନ୍ଦ ହୋଇ ଆସିଲା । ସାଗର ନାଦ ଅନନ୍ତ, ବନ୍ଦ ହୋଇ ନାହିଁ ହେବାର ନୁହେଁ । କ୍ରମେ ଅନ୍ଧାର ଘନ ହେଲା । ଶୃଗାଳର ଗଭୀର ଭୟଙ୍କର ରବ ମଳୟଗିରି ଗହ୍ବର ପ୍ରତିଧ୍ୱନିତ କଲା ।

"ଦେଖିଲଣି ଟିକି"

"ଦେଖିଚି"

"କେଉଁଠି ଦେଖିଲ"

"ବଙ୍ଗଲାରେ ବସି ବାପାଙ୍କ ସଙ୍ଗେ କଥା କହୁଥିଲେ"

"ବାପା କଣ କହିଲେ"

"ସେ କାନ୍ଦିଲେ ବାପା କାନ୍ଦିଲେ"

"ଆଜି ଭେଟ ହେବଟିକି ?"

"ମନ ସମ୍ଭାଳି ହେଉ ନାହିଁ, ମାତ୍ର ଏହିକ୍ଷଣି ଶୋକ ପ୍ରବଳ ଟିକିଏ ଆଶ୍ୱାସନା ଯେବେ କରିପାରନ୍ତି ମୁଁ ଆଉ କିଛି ମାଗୁ ନାହିଁ, କାଳେ ତାଙ୍କର ଅନ୍ୟ ଭାବ ହେବ, ଅନେକ ଦିନର ଦେଖା ନାହିଁ।"

"ଅନ୍ୟଭାବ ହେବ ନାହିଁ, ତୁମ୍ଭକୁ ଦେଖିଲେ ଅନ୍ୟ ଭାବ ହେବ ନାହିଁ।"

"ଶୋକ ଆହୁରି ବଢ଼ିବ"

"ତେବେ ଥାଉ, କିଛି ଦିନ ଗଡ଼ିଯାଉ"

ଅଯୋଧ୍ୟା ଓ ଲଳିତା ସଦାଶିବ ଗଡ଼ର ଅନ୍ତଃପୁରବର୍ତ୍ତୀ ବଙ୍ଗଳାରେ ଫୁଲ ଗୁନ୍ଥୁ ଗୁନ୍ଥୁ ଏହିପରିରେ କଥାବାର୍ତ୍ତା କରୁଥିଲେ। ଲଳିତା କିଞ୍ଚିତ୍ ଉନ୍ମନା ଥିଲେ, ସାଗର ଆଡ଼କୁ ଥରେ ଲେଖାଏଁ ଚାହୁଁ ଥିଲେ, ଏଫୁଲ ବୋଲି ସେଫୁଲ ନଉଥିଲେ। ଅଯୋଧ୍ୟା ତାହାଙ୍କର ଭ୍ରମ ଦେଖି ଅଳ୍ପ ହସୁଥିଲେ, କିଛି ନ କହି, ଲଳିତା ହାତର ଭ୍ରମରେ ନିଯା ହୋଇଥିବା ଫୁଲକୁ କାଢ଼ି ନେଇ ସ୍ଥାନଯୋଗ୍ୟ ଫୁଲ ଦେଉଥିଲେ।

ଫୁଲ ଗୁନ୍ଥା ବଢ଼ିଲା। ଅନ୍ଧାର ବଢ଼ିଲା। ଦୁହେଁ ସଦାଶିବଙ୍କ ଦେଉଳକୁ ଗଲେ। ସଦାଶିବଗଡ଼ର ଅଧିଷ୍ଠାତ୍ରୀ ଦେବତା। ପ୍ରଥମ ପରିଚ୍ଛେଦରେ ଯେଉଁ ଉଦ୍ୟାନର ଉଲ୍ଲେଖ ହୋଇଅଛି ସେହି ଉଦ୍ୟାନ ମଧ୍ୟରେ ତାହାଙ୍କର ଉଚ୍ଚଦେଉଳ ପ୍ରତିଷ୍ଠିତ ଥିଲା। ଦେଉଳ ପ୍ରସ୍ତର ନିର୍ମିତ। ଶୁମ୍ଭ ନିଶୁମ୍ଭ ବଧ, ତ୍ରିପୁର ବଧ, ହର ତାଣ୍ଡବ ପ୍ରଭୃତି ପୌରାଣିକ ଘଟନାମାନଙ୍କର ଖୋଦିତ ପ୍ରତିକୃତି ଦେଉଳ ଦେହକୁ ଚିତ୍ରିତ କରିଥିଲା। ଭିତରେ ମଧ୍ୟ ସମୁଦ୍ର ମନ୍ଥନ, ଶିବବିବାହ, ତାରକାସୁର ବଧ ପ୍ରଭୃତି ବିଷୟମାନ ଚିତ୍ରିତ ଥିଲା। ଚିତ୍ରର ଉଜ୍ଜ୍ୱଳ ବର୍ଣ୍ଣରେ ଲମ୍ବମାନ ଦୀପାଲୋକ ପଡ଼ିବାରୁ ଆହୁରି ଝଟକୁ ଥିଲା। ଦେଉଳର ସିଂହଦ୍ୱାର ସମ୍ମୁଖରେ ଥିବା ଗୋଟିଏ ପ୍ରସ୍ତର ଦେହରେ ପ୍ରକାଣ୍ଡ ପଥର ବୃଷଭ ଶିବଙ୍କର ସମ୍ମୁଖୀନ ହୋଇ ଶୋଇଥିଲା। ଲଳିତା ଓ ଅଯୋଧ୍ୟା ଆନ ପରିଚାରିକା ହାତରେ ଫୁଲ ଚାଙ୍ଗଡ଼ା ଭିତରକୁ ପଠାଇ ଦେଲେ। ଦୁହେଁ ବୃଷଭ ପାର୍ଶ୍ୱରେ ଛିଡ଼ା ହୋଇ ଶିବ ଦର୍ଶନ କଲେ। ଦର୍ଶନାନ୍ତେ ଅନ୍ତଃପୁରକୁ ନଉଟିଗଲେ।

# ହଣ୍ଟର୍ସ ଉଡ଼ିଶ୍ୟା

ଆମ୍ଭେମାନେ ହାଣ୍ଟରସ୍ ଉଡ଼ିଶ୍ୟା ଦେଖି ଅତ୍ୟନ୍ତ ପ୍ରୀତି ହୋଇଅଛୁଁ । ଯେ ଦେଶକୁ ଭାରତବର୍ଷର ପ୍ରତ୍ୟେକ କୋଣର ଲୋକମାନେ ପବିତ୍ର ସ୍ଥାନ ମଣି ଆସନ୍ତି; ଆର୍ଯ୍ୟଗ୍ରନ୍ଥମାନଙ୍କରେ ଯେଉଁ ଦେଶ ପୁଣ୍ୟତମ ଭୂମିବୋଲି କୀର୍ତ୍ତିତ୍ୱ ହୋଇଅଛି; ଯେଉଁ ଦେଶର ପ୍ରାକୃତିକ ଶୋଭା ସ୍ୱଦେଶୀୟ ବିଦେଶୀୟମାନଙ୍କର ନେତ୍ରକୁ ଆକର୍ଷଣ କରଇ; ବିଗ୍ତ ଦୁର୍ଭିକ୍ଷ ପର୍ଯ୍ୟନ୍ତ ସେହି ଉଡ଼ିଶ୍ୟାର ଗୌରବ ରାଜପୁରୁଷମାନେ ସୁଦ୍ଧା ଅବଗତ ନ ଥିଲେ । ଗୌରବ ଅବଗତ ଥିବାର ତେଣିକି ଥାଉ ଉଡ଼ିଶ୍ୟାକୁ ନିତାନ୍ତ କୁସ୍ଥଳୀ ମଣୁଥିଲେ । ଗଡ଼ଜାତମାନଙ୍କୁ ସଙ୍ଗେ ଧରିଲେ ଆୟତନରେ ଆମ୍ଭମାନଙ୍କର (ଅରକ୍ଷିତା) ଉଡ଼ିଶ୍ୟାକୁ ବଙ୍ଗଳାର ସମକକ୍ଷ ବୋଲିବାକୁ ହେବ । ମାତ୍ର ବଙ୍ଗଦେଶର ଆଧୁନିକ ଶ୍ରୀବୃଦ୍ଧି ସଙ୍ଗେ ତୁଳନା କଲେ ସୁଖୋଚିତା ଉଡ଼ିଶ୍ୟା ଅତ୍ୟନ୍ତ ହୀନାବସ୍ଥାରେ ଅଛି । ଏଥିର ପ୍ରଧାନ କାରଣ ଏହି ଯେ କେବଳ ମୁଗଲବନ୍ଦି ବିଭାଗ ରାଜପୁରୁଷମାନଙ୍କ ନୟନରେ ଚିହ୍ନିତ ଉଡ଼ିଶ୍ୟା ବୋଲି ଗଣିତ ହୁଅଇ । ଗଡ଼ଜାତର ରାଜାମାନେ ଏକପ୍ରକାର ସ୍ୱାଧୀନ ଭାବରେ ଅଛନ୍ତି; ତେଣୁ ସେମାନଙ୍କର ଆପଣା ଆପଣା ରାଜ୍ୟର ଉନ୍ନତି ସାଧିବାର ଭାର ସେମାନଙ୍କଠାରେ ବର୍ତ୍ତୁଅଛି । ଏହା ଭାବି ଇଂରାଜ ରାଜପୁରୁଷମାନେ ନିଶ୍ଚିନ୍ତ ଅଛନ୍ତି । ଗଡ଼ଜାତ ରାଜାଙ୍କଦ୍ୱାରା ଯେ କୌଣସି କାଳରେ କିଛି ଉନ୍ନତି ହେବ ନାହିଁ ଏହା ରାଜପୁରୁଷମାନେ ସମ୍ପୂର୍ଣ୍ଣରୂପେ ଅବଗତ ଅଛନ୍ତି, ମାତ୍ର ଏହା ଜାଣିଶୁଣି ଆତ୍ମପ୍ରବଞ୍ଚ ସାନ୍ତ୍ୱନାରେ ନିଶ୍ଚିନ୍ତ ଅଛନ୍ତି । କୌଣସି ବିଷୟରେ ବଳାତ୍କାର କରିବାର ଇଂଲଣ୍ଡୀୟ ପ୍ରଶସ୍ତ ରାଜନୀତିର ବିରୁଦ୍ଧ ଅଟଇ । ପ୍ରଜାମାନଙ୍କର ସମ୍ମତି ବିରୁଦ୍ଧରେ ଏହି ନୀତି ଲଙ୍ଘନ କରି ଯଥେଷ୍ଟ ଟେକ୍ସ ଆଦାୟ କରନ୍ତି । ଗୋଟିଏ ଗ୍ରାମରେ ଭଲ ସଡ଼କ ନାହିଁ, ଲୋକମାନଙ୍କର ଆଗ୍ରହ ଥାଉ ଅବା ନ ଥାଉ ସନ୍ତାନର ପ୍ରକୃତ ହିତାକାଂକ୍ଷୀ ପିତାପରି ରାଜପୁରୁଷମାନେ ସେହି ଗ୍ରାମର ପ୍ରଜାମାନଙ୍କଠାରୁ ଟେକ୍ସ ଆଦାୟ କରିବେ । ସେହି ଟେକ୍ସଦ୍ୱାରା ସଡ଼କ ବନ୍ଧାଇବେ, ମାତ୍ର ଗ୍ରାମରେ ଗୋଟିଏ ବିଦ୍ୟାଳୟ ନାହିଁ । ଗ୍ରାମବାସୀମାନେ ଯେବେ ସ୍ୱୟଂ ବିଦ୍ୟାଳୟ ନିମନ୍ତେ ଆଗ୍ରହ ପ୍ରକାଶ ନ କରିବେ, ସରକାର ସେଥିରେ ହସ୍ତକ୍ଷେପ କରିବେ ନାହିଁ । ହେତୁକି କାହାରି ଅସମ୍ମତିରେ ବଳାତ୍କାରପୂର୍ବକ କୌଣସି କାର୍ଯ୍ୟ କରିବାର ଇଂଲଣ୍ଡୀୟ ପ୍ରଶସ୍ତ ରାଜନୀତିର ଅନୁମୋଦିତ ନୁହଇ । ଗଡ଼ଜାତ ରାଜାମାନେ ଫୁଲବେଇମାନଙ୍କୁ ଘେନି ଗଡ଼ଭିତରେ ରାତିଦିନ ରାସ ଲୀଳା କରୁଥିବେ, ପ୍ରଜାମାନଙ୍କର ଯଥାସର୍ବସ୍ୱ ହରଣ କରୁଥିବେ, ପ୍ରଜାଙ୍କର ମାନସିକ ଉନ୍ନତିଆଡ଼କୁ

ଦୃଷ୍ଟିପାତ କରିବେ ନାହିଁ, ଏବିଷୟରେ ଇଂରାଜ ରାଜପୁରୁଷମାନେ ହସ୍ତକ୍ଷେପ କରିବେ ନାହିଁ । ହେତୁକି କୌଣସି ବିଷୟରେ ବଳାତ୍କାର କରିବାର ଇଂଲଣ୍ଡୀୟ ପ୍ରଶସ୍ତ ରାଜନୀତିର ବିରୁଦ୍ଧ ଅଟଇ ଏହି ଗଡ଼ଜାତ ଯୋଗୁଁ ଉଡ଼ିଶ୍ୟ ଆଜିଯାଏ ଗଣନୀୟ ପ୍ରଦେଶ ଶ୍ରେଣୀରେ ଭୁକ୍ତ ହୋଇ ନାହିଁ । ଅଧିକାଂଶ ଗଡ଼ଜାତ ପ୍ରଜାମାନଙ୍କର ଯେମନ୍ତ ରୀତିନୀତି ଏଥିରେ କୌଣସି କାଳରେ ଉଡ଼ିଶ୍ୟା ଅନ୍ୟାନ୍ୟ ଗଣନୀୟ ପ୍ରଦେଶର ପ୍ରତିଯୋଗୀ ହେବ ଏହା ମଧ ଦିଶୁ ନାହିଁ । ହେ ଗଡ଼ଜାତ ରାଜାମାନେ ! ଦେଖ, ତୁମ୍ଭେମାନେ ପାପିଷ୍ଠ ହୋଇ ଲକ୍ଷ ଲକ୍ଷ ପ୍ରଜାଙ୍କର ଉନ୍ନତିମାର୍ଗରେ କଣ୍ଟକ ହୋଇଅଛ; ତୁମ୍ଭର ନିଦ୍ରା କେବେ ଭାଙ୍ଗିବ ? ପ୍ରଜାମାନଙ୍କ ସର୍ବସ୍ୱ ହରଣର କେବେ ତୁମ୍ଭେମାନେ ନିବୃତ୍ତ ହେବ । କେବଳ ଆପଣା ସୁଖ ନିମନ୍ତେ କର ଆଦାୟ କରି ଆପଣାକୁ ରାଜାବୋଲି ପରିଚୟ ଦେବାରୁ ତୁମ୍ଭେମାନେ କେବେ କ୍ଷାନ୍ତ ହେବ ? ଏହି ଦେଖ, ଘୋର ବର୍ଷା, ତୁମ୍ଭେ-ନାଟମନ୍ଦିରରେ ବସି ପାଲା ଶୁଣୁଅଛ, ବାଇ ନାଚ ଦେଖୁଅଛ । ତୁମ୍ଭର ଦରିଦ୍ରପ୍ରଜାର ଘର-ଚାଳ ବାରେ ଉଡ଼ିଗଲାଣି, ଭିତରେ ପାଣି ପଡୁଅଛି, ରାତ୍ରିରେ ଗରିବ କେଉଁଠାରେ ରହିବ, କଅଣ ଖାଇବ ତାହାର ସଂସ୍ଥାନ ନାହିଁ । ଦରିଦ୍ର ତୁମ୍ଭଠାକୁ ଆସି ତାହାର ଦୁଃଖ ଜଣାଇବ ଏପରି ଉପାୟ ସୁଦ୍ଧା ନାହିଁ । ପାଣିରେ ଦେଶ ଭାସିଗଲାଣି ଘରୁ ବାହାରିବାର ବାଟ ନାହିଁ । ଦରିଦ୍ର ଯେବେ ପହଁରି ତୁମ୍ଭଠାକୁ ଆସିଲା ତାହା ଗୁହାରି ଶୁଣିବାକୁ ତୁମ୍ଭର ଅବକାଶ ନାହିଁ । ''ଦିଆନ ସାହେବଙ୍କୁ କହିଯାଇ, ଗରିବ ଭେଟି ଆଣି ନାହିଁ । ଦିଆନସାହେବ ତାହା କଥା ଅବା କାହିଁକି ଶୁଣିବେ । ଦିଆନସାହେବ ଆପଣମାନଙ୍କଠାରୁ ଆହୁରି ଚତୁର । ଆପଣମାନେ ପୂର୍ବପୁରୁଷାର୍ଜିତ ରାଜତ୍ୱର ଉପସତ୍ୱକୁ ଉଡ଼ାଉ ଅଛନ୍ତି; ଦିଆନସାହେବ କିରୂପେ ଭବିଷ୍ୟତ୍‌କୁ ରଜା ହୋଇପାରିବେ ଏହି ଚିନ୍ତାରେ ପ୍ରତିଦିନ ବ୍ୟସ୍ତ ଅଛନ୍ତି । ରକ୍ତଶୋଷୀ ଜୋକପରି ଅର୍ଥଶୋଷୀ ଦିଆନ ଦିନକୁଦିନ ଫୁଲି ଯାଉଅଛନ୍ତି । ଦେଖ ଆଉ ବିଳମ୍ବ ନ କର, ଯଥେଷ୍ଟ ହେଲାଣି ତୁମ୍ଭର ପୂର୍ବ ରୁଷମାନଙ୍କର ଅଧିକାଂଶ, ଦକ୍ଷିଣ ଦୁଆରରେ ଝୁରି ମରୁ ଅଛନ୍ତି । ସେମାନଙ୍କ ସଂଖ୍ୟା ବୃଦ୍ଧି ନ କର । ମନୁଷ୍ୟର ଜୀବନ ପଦ୍ମଦଳସ୍ଥ ଜଳବିନ୍ଦୁ ପରି । ପୁଣି ତୁମ୍ଭପରି ବିଳାସୀ ମନୁଷ୍ୟର ଜୀବନକୁ ଅବା କିଏ ପଚାରେ । ବେଳଗଡ଼ିଲା ଏହିବେଳୁ ତୁମ୍ଭ ନଥି ଦୁରସ୍ତ କର । ବିଶ୍ୱରାଜାଙ୍କଠାରେ କଅଣ କହି ମୁକ୍ତି ଲଭିବ ସେହିତା ଭାଳ, ଆଉ ଦିନ ନାହିଁ ।

ଏହା ମଧ ସ୍ୱୀକାର କରିବାର ଉଚିତ ଯେ ସବୁ ଗଡ଼ଜାତ ରାଜାମାନେ ସମାନରୂପରେ ନିନ୍ଦନୀୟ୍ ନୁହନ୍ତି । ଇଂରେଜଙ୍କର ଉତ୍କୃଷ୍ଟ ଶାସନପ୍ରଣାଳୀ ଦେଖି କେହି କେହି ମହାନୁଭାବ ଗଡ଼ଜାତୀୟ ରାଜା ନିଜ ଶାସନ ପ୍ରଣାଳୀକୁ ବହୁ ପରିମାଣରେ ସଂଶୋଧିତ କରୁଅଛନ୍ତି ଏବଂ ସୁଶିକ୍ଷିତ, ଧର୍ମଭୀରୁ-ସଚିବ ନିଯୁକ୍ତ କରି ପ୍ରଜାମାନଙ୍କ ପ୍ରକୃତ ଅଭାବପ୍ରତି ନେତ୍ର ଉନ୍ମୀଳନ କରୁଅଛନ୍ତି । ଏମାନେ

ଆମ୍ଭମାନଙ୍କର ଏବଂ ତାହାଙ୍କର ପ୍ରଜାମାନଙ୍କର ଧନ୍ୟବାଦାର୍ହ ଅଟନ୍ତି । ଏମାନେ କିଛି କର୍ତ୍ତବ୍ୟରୁ ବଳି କରୁଅଛନ୍ତି ଆମ୍ଭେମାନେ ଏହା କହୁ ନାହୁଁ; ଏମାନେ ଯାହା କରୁଅଛନ୍ତି ତାହା ବ୍ରାହ୍ମଣର ଗାୟତ୍ରୀ ପାଠପରି; ହେଲେହେଁ ବୈପରିତ୍ୟ ଯୋଗୁଁ ଏମାନେ ଆମ୍ଭ ନୟନର ଆନନ୍ଦକର ହୋଇଅଛନ୍ତି ।

ଗତଦୁର୍ଭିକ୍ଷଦ୍ୱାରା ଯେ ନିରବଚ୍ଛିନ୍ନ ଅଶୁଭ ଫଳ ଫଳିଅଛି ତାହା କଦାଚ ନୁହେଁ । ଗୋଟିଏ ଭୟଙ୍କର ରାଷ୍ଟ୍ରବିପ୍ଳବ ହେଲେ ଆପାତତଃ ଦେଶର ଅମଙ୍ଗଳ ହୁଅଇ ମାତ୍ର ଅନେକ କୁରୀତି ଦୂର ହୋଇଯାଏ, ପଛକୁ ଦୁଇଗୁଣ ଶ୍ରୀବୃଦ୍ଧି ହୁଏ । ବିଗତ ଦୁର୍ଭିକ୍ଷରେ ଅନେକ ଲୋକ ମରିଅଛନ୍ତି, ଅନେକ ଗ୍ରାମ ନିର୍ବାସିତ ହୋଇଅଛି ଏହା ସତ୍ୟ ମାତ୍ର ଶୁଭ ଫଳର ପରିମାଣ ଅଧିକ । ସୂକ୍ଷ୍ମ କଥା କହିବାକୁ ଗଲେ ଦୁର୍ଭିକ୍ଷ ଉଡ଼ିଶ୍ୟାପ୍ରତି ରାଜପୁରୁଷମାନଙ୍କର ନେତ୍ରକୁ ଉନ୍ମୀଳିତ କରାଇ ଅଛି । ଆଉ ଆଉ ଦେଶପରି ଉଡ଼ିଶ୍ୟାର ରୀତି ନୀତି କିପରି, ଉଡ଼ିଶ୍ୟାବାସୀମାନଙ୍କର ଗତି ପ୍ରବୃତ୍ତି କିପରି, ଉଡ଼ିଶ୍ୟାର ଅଭାବ କଅଣ ସଦ୍‌ଭାବ କଅଣ ରାଜପୁରୁଷମାନେ ବିଶେଷରୂପେ ଏହି ଅନୁସନ୍ଧାନରେ ରତ ହୋଇଅଛନ୍ତି । ଷ୍ଟାଟିସ୍‌ଷ୍ଟିକସ୍ ଦେଶର ପ୍ରକୃତ ଅବସ୍ଥା ଜ୍ଞାପକ ନକ୍‌ସା ଉପରେ ଷ୍ଟେଟିଷ୍ଟିକ୍‌ସ ଚଳୁଅଛି । ଫୌଜଦାରୀ, କିଲେଟରୀ, ଅବକାରୀ, ଶିକ୍ଷା ଓ ଚିକିତ୍ସା ଏହି ସବୁ ବିଷୟମାନଙ୍କର ନିୟମିତ ନକ୍‌ସା ଛଡ଼ା ରାଜପୁରୁଷମାନଙ୍କର ଅବଶ୍ୟ ଜ୍ଞେୟ ଅନ୍ୟାନ୍ୟ ବିଷୟମାନଙ୍କର ବିଜ୍ଞାପନୀ ତଲବ ହେଉଅଛି, ପ୍ରସ୍ତୁତ ହେଉଅଛି ଓ ପଠିୟା ଯାଉଅଛି । ଅଶିକ୍ଷିତ ମୂର୍ଖଲୋକେ ଏହିସବୁ ଦେଖି ଶୁଣି ଭୀତ ହେଉଅଛନ୍ତି । ଏମାନଙ୍କର ଶଙ୍କିତ ନୟନ ସରକାରଙ୍କର ପ୍ରତ୍ୟେକ କାର୍ଯ୍ୟତଳେ ଟେକ୍‌ସର ବିକଟ ମୂର୍ତ୍ତି ବିନୁ ଆନକିଛି ଦେଖୁ ନାହିଁ । ମାତ୍ର ଏପରି ଶଙ୍କା ଅମୂଳକ । ବିଜ୍ଞଲୋକେ ଉଲ୍ଲିଖିତ କାର୍ଯ୍ୟତଳେ ଉନ୍ନତିର ମୂର୍ତ୍ତିକୁ ଦେଖିବେ ସନ୍ଦେହ ନାହିଁ ବାସ୍ତବରେ ଯେତେ ଦିନପର୍ଯ୍ୟନ୍ତ ରାଜପୁରୁଷମାନେ ପ୍ରଜାମାନଙ୍କର ପ୍ରକୃତ ଅବସ୍ଥା, ପ୍ରକୃତ ଅଭାବ ନ ଜାଣିବେ ପ୍ରତିକାରର କ୍ଷମତା ଥିଲେ ସୁଦ୍ଧା ସେମାନଙ୍କ ଦ୍ୱାରା କୌଣସି ପ୍ରତିକାର ହୋଇପାରିବ ନାହିଁ ।

ହଣ୍ଟର ପ୍ରଣୀତ ଇତିବୃତ୍ତର ଉପକରଣ ରାଜକୀୟ ବିଜ୍ଞାପନୀମାନଙ୍କର ଶତଃ ନିୟା ଯାଉଅଛି । ତେଣୁ ରାଜକୀୟ ବିଜ୍ଞାପନୀର ଯାଥାର୍ଥ୍ୟ ଉପରେ ଇତିହାସର ଯାଥାର୍ଥ୍ୟ କିୟତ୍ ପରିମାଣରେ ନିର୍ଭର କରୁଅଛି । ମାତ୍ର ରାଜକୀୟ ବିଜ୍ଞାପନୀ ଅନେକ ସ୍ଥଳରେ ଭ୍ରମପୂର୍ଣ୍ଣ । ନକ୍‌ସା ପ୍ରସ୍ତୁତ କରିବାର ଭାର ଯେମାନଙ୍କ ଉପରେ ଅଛି ନକ୍‌ସାର ଉପଯୋଗିତା ବୁଝିବାକୁ ସେମାନଙ୍କର ବିଦ୍ୟା ନାହିଁ । ଉଦ୍ଦେଶ୍ୟାନୁଯାୟୀ ନକ୍‌ସା ପ୍ରସ୍ତୁତ କରିବା ନିମନ୍ତେ ଯେତେ ଧର୍ମଭୀରୁତା ଆବଶ୍ୟକ ସେମାନଙ୍କର ତେତେ ଧର୍ମଭୀରୁତା ନାହିଁ । ତେଣୁ ବିଜ୍ଞାପନୀ ଅଂଶତଃ ଅଯଥାର୍ଥ ହୁଏ । ତନ୍ମୂଳକ ଇତିହାସ ଯେ ସେହିପରି ହେବ ସେଥିରେ ଆଉ ବିଚିତ୍ର କଅଣ । ପୁଣି ଦେଶର ପ୍ରକୃତ ଅବସ୍ଥା ଜାଣିବା ପାଇଁ

ରାଜପୁରୁଷମାନେ ଯେ କେଉଁ କେଉଁ ପ୍ରୟାସ ପାଇଥାନ୍ତି ତାହା କାଗଜରେ ଉଜ୍ଜ୍ୱଳ; କିନ୍ତୁ କାର୍ଯ୍ୟରେ ବିକଳ ହୋଇଯାଏ । ରାଜା, ପୁଣି ବିଦେଶୀ କିଏ ଅବା ସାହସ କରି ଏମାନଙ୍କ ସଙ୍ଗେ ମିଶିବ ? କିଏ ଅବା ବିଶ୍ୱାସ କରି ଏମାନଙ୍କଠାରେ ମନ ଫେଡ଼ିବ ? ଭୟରେ ରାଜାଙ୍କଠାରେ କେହି ପ୍ରକୃତ ଅବସ୍ଥା ଜଣାଣ କରନ୍ତି ନାହିଁ ବୋଲି ପୂର୍ବକାଳର ରାଜାମାନେ ଛଦ୍ମବେଶ ଧରି ସମସ୍ତଙ୍କ ସଙ୍ଗେ ମିଶି ଦେଶର ପ୍ରକୃତ ଅବସ୍ଥା ଜାଣୁଥିଲେ । କେହି ଅବା ଚର ନିଯୁକ୍ତ କରି ଉଦ୍ଦେଶ୍ୟ ସାଧୁ ଥିଲେ । ତେଣୁ କରି ଦେଶରେ ବିସ୍ତର ଉପଦ୍ରବ ହୋଇ ପାରୁ ନ ଥିଲା । ଦୁଃଖର ବିଷୟ ଏହି କି ଇଂରାଜ ରାଜପୁରୁଷମାନେ ଏପରି ଉପାୟ ଅବଲମ୍ବନ କରନ୍ତି ନାହିଁ, ଏଥିପାଇଁ କେତେ ପାପାତ୍ମା, ନିରୀହ ଭଦ୍ରଲୋକ ବୋଲି ପ୍ରତିଷ୍ଠିତ ହୋଇଅଛନ୍ତି । କେତେ ନିରୀହ ଲୋକେ ପାପାତ୍ମା ବୋଲି ଦଣ୍ଡିତ ହୋଇ ଅଛନ୍ତି । ଆମ୍ଭମାନଙ୍କର ମତର ପୋଷକତା ନିମନ୍ତେ ଗୋଟିଏ ପ୍ରକୃତ ଘଟଣା ତଳେ ଲେଖୁଅଛୁଁ ।

ଗଡ଼ଜାତୀୟ ରାଜାମାନେ କେମନ୍ତ ରୀତିରେ ବିଚାର କରନ୍ତି ତାହା ଦେଖିବା ପାଇଁ ଉତ୍ସୁକ ହୋଇ କୌଣସି ସାହେବ ଆଗହୁଁ କୌଣସି ଗଡ଼ଜାତର ରାଜାଙ୍କଠାକୁ ବାର୍ତ୍ତା ପଠାଇଲେ । ତହିଁ ଆରଦିନ ଯାଇ ଗଡ଼ରେ ପ୍ରବେଶ ହେଲେ । ଠିକ୍ ଦଶଟା ବେଳେ ରାଜାଙ୍କର କଚେରି ଆରମ୍ଭ ହେଲା । ଅମଲାମାନେ ଅଭ୍ୟସ୍ତ ପରି କାର୍ଯ୍ୟ କରିବାକୁ ଲାଗିଲେ । ରାଜା ସ୍ୱୟଂ ଉତ୍କୃଷ୍ଟ ପ୍ରଣାଳୀ ଅନୁସାରେ ସାକ୍ଷୀମାନଙ୍କର ଜବାନବନ୍ଦୀ ନେଲେ । ମୁଦେଇ ମୁଦାଲାଙ୍କର ଇଜହାର ଶୁଣିଲେ, ନିରପେକ୍ଷ ରୂପରେ ସ୍ୱୟଂ ରାୟ ଲେଖିଲେ, ଅପରାଧୀକୁ ବିହିତ ଦଣ୍ଡାଜ୍ଞା କଲେ । ସାହେବ ଏହି ସବୁ ଦେଖି ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ । ଗଡ଼ଜାତର ରାଜାମାନେ ଅନ୍ୟାୟ କରନ୍ତି ଏହି ଜନଶ୍ରୁତିକୁ ଅମୂଳକ ମଣିଲେ । ଫଳେ ପ୍ରକୃତ କଥା ଏତିକି ସାହେବଙ୍କଠାରୁ ସମ୍ବାଦ ପାଇ ପରୀକ୍ଷା ପୂର୍ବଦିନ ଶିକ୍ଷକ ଯେମନ୍ତ ଛାତ୍ରମାନଙ୍କୁ ଶିଖାଇଥାନ୍ତି, ଦିଆନ ସାହେବ ସେହିପରି ରାଜା, ମୁଦେଇ, ମୁଦାଲା, ସାକ୍ଷୀ ସମସ୍ତଙ୍କୁ ରାତ୍ରି ଦୁଇପ୍ରହର ପର୍ଯ୍ୟନ୍ତ ତାଲିମ କଲେ । ରାଜା କେତେଗୁଡ଼ିଏ ସବାଲ ମୁଖସ୍ଥ କଲେ, ମୁଦେଇ, ମୁଦାଲା, ସାକ୍ଷୀ ଯେ ଯାହାର ଜବାବ ମୁଖସ୍ଥ କଲେ । ଆରଦିନ କଚେରିରେ ସାହେବଙ୍କ ସମକ୍ଷେ ଦିଆନ ପ୍ରଣୀତ ପ୍ରହସନ ଅଭିନୟ କଲେ ।

କେହି ଗଡ଼ଜାତ ରଜା ଇଂରାଜମାନଙ୍କ ପରି ନିୟମିତରୂପେ ୧୦ଟା ଠାରୁ ୪ଟା ପର୍ଯ୍ୟନ୍ତ ବିଚାର କରନ୍ତି ନାହିଁ । ଏହା ଦେଶଯାକ ରାଷ୍ଟ୍ର ଅଛି ମାତ୍ର ଦିନକର ଅଭିନୟନରେ ସାହେବଙ୍କ ପାଖରେ ସେହି ଜନଶ୍ରୁତି ରଦ୍ଦ ହୋଇଗଲା । ଅନ୍ୟାନ୍ୟ ବିଷୟମାନଙ୍କରେ ସୁଦ୍ଧା ଏହିପରି ଘଟିଥାଏ । ଏଥକୁ ବିଶୁଦ୍ଧ ନ୍ୟାୟ ହେବାର କେଡ଼େ କଠିଣ ପ୍ରକୃତ ତତ୍ତ୍ୱ ଲଭିବାର କେଡ଼େ କଠିଣ ପାଠକେ ସହଜରେ ବୁଝିପାରିବେ ।

—

**ପ୍ରଥମ ବର୍ଷ ଅଷ୍ଟମ ସଂଖ୍ୟା**
**ଅଗଷ୍ଟ, ୧୮୭୩**

# ଇଟାଲୀୟ ଯୁବା

## ପୂର୍ବପ୍ରକାଶିତ ଉତ୍ତାରୁ

ଜେନୋୟା ନଗରର ଧନଶାଳୀ ନିବାସୀମାନେ ସେହି ଚିତ୍ରକରଙ୍କୁ ଯେଉଁ ମହିଳାମାନଙ୍କର ଚିତ୍ର ନିମନ୍ତେ ଆଦେଶ ଦେଇଥିଲେ ତନ୍ମଧରେ ଲରାନାମ୍ନୀ ଗୋଟିଏ ରୂପବତୀ ବାଳିକା ଥିଲା । ସେହି ବାଳିକାର ଛବି ପ୍ରସ୍ତୁତ କରିବା ନିମନ୍ତେ ଚିତ୍ରକରଙ୍କଠାରୁ ଆଜ୍ଞା ପାଇଲୁଁ । ସେହି ସୁନ୍ଦରୀ କୁମାରୀ କୌଣସି ମଠରେ ଶିକ୍ଷାସମାପ୍ତି ଅନ୍ତେ ଆପଣା ଚିତ୍ର ପ୍ରସ୍ତୁତ କରାଇବା ନିମନ୍ତେ ସେଠାରେ ଉପସ୍ଥିତ ହେଲା । ଆମ୍ଭେ ପ୍ରଥମରେ ତାହାକୁ ଏକ ସୁରମ୍ୟ ପ୍ରାସାଦର ଗବାକ୍ଷ ନିକଟରେ ବସିବାର ଦେଖିଥିଲୁଁ । ଉଜ୍ଜ୍ୱଳ ସୂର୍ଯ୍ୟକିରଣ ତାହା ବଦନରେ ପଡ଼ି ମୁଖକାନ୍ତି ଅଧିକ ଉଜ୍ଜ୍ୱଳ କରୁଥିଲା । ଯେଉଁ ଗୃହରେ ସେ ବସିଥିଲା ସେହି ଗୃହଭିତ୍ତି ପଦ୍ମରାଗନିଭ ରକ୍ତବସ୍ତ୍ରରେ ମଣ୍ଡଣୀ ହୋଇଥିବାରୁ ତହିଁରେ ରବିକର ପଡ଼ି ସେଥିର ରକ୍ତିମା ବୃଦ୍ଧି ହେଉଥିଲା । ସେହି ଲାବଣ୍ୟବତୀର ବୟଃକ୍ରମ ଷୋଡ଼ଶ ବର୍ଷ । ରୂପର କଥା ଅବା କଣ କହିବୁଁ । ଦେଖିଲାକ୍ଷଣି ବୋଧ ହେଲା ଯେ ସୌନ୍ଦର୍ଯ୍ୟ, ନିରୀହତା, ଲଜ୍ଜା ଏବଂ ଯୌବନ ଏହି ଚାରିହେଁ ଏକ ମୂର୍ତ୍ତି ଧରି ଅବତୀର୍ଣ୍ଣ ହୋଇଅଛନ୍ତି । ଯେତେବେଳେ ସେହି ମୋହିନୀମୂର୍ତ୍ତି ଆମ୍ଭ ଆଖିରେ ପଡ଼ିଲା, ଆମ୍ଭେ ସେସମୟରେ ମୋହିତ ହେଲୁଁ । କବି ଏବଂ ଚିତ୍ରକରମାନେ କହନ୍ତି ଯେ, ତାଙ୍କ ମନରେ କେବେ କେବେ ଏପରି ଅନିର୍ବଚନୀୟ ଭାବର ଉଦୟ ହୁଏ ଯେ ସେମାନେ ସେହି ଭାବକୁ ଲେଖନୀ ଅଥବା ତୁଳିଦ୍ୱାରା ବ୍ୟକ୍ତ କରିପାରନ୍ତି ନାହିଁ । ଆମ୍ଭ ବିବେଚନାରେ ସେହି କୁମାରୀସୁଦ୍ଧା ସେହିପରି ବୋଧ ହେଲା । ଆମ୍ଭେ ଆନନ୍ଦରେ ମଗ୍ନ ହୋଇ ଥରକୁଥର ସେହି ମୃଗଲୋଚନାର ପ୍ରତିମୂର୍ତ୍ତି ଲେଖିଲୁଁ । ଯେତେଥର ଲେଖିଲୁଁ ସେତେଥର ଲେଖିବାକୁ ମନ ବଳିଲା । ଆମ୍ଭେ ସତୃଷ୍ଣ ହୋଇ ସେହି କାମିନୀର ମୁଖକମଳ ଦେଖିଲୁଁ । ବାରମ୍ବାର ଦେଖିଲେହେଁ ତୃପ୍ତି ହେଲା ନାହିଁ । ସେହି ସ୍ୱର୍ଗୀୟ ଲାବଣ୍ୟ ଦେଖି ଆମ୍ଭ ମନ ଏପରି ଆଶ୍ଚର୍ଯାନ୍ୱିତ ହେଲା ଯେ, ଆଶ୍ଚର୍ଯ୍ୟ ଶରୀରରେ ଧରିଲା ନାହିଁ । ଆମ୍ଭର ସେହି ସମୟରେ ଊନବିଂଶତି ବର୍ଷ ବୟଃକ୍ରମ ହୋଇଥିଲା ଏବଂ ଅତିଶୟ ଲଜ୍ଜାଶୀଳ, ପୁଣି ଅଳ୍ପଦର୍ଶୀ ଥିଲୁଁ । ସେହି କନ୍ୟାର ଜନନୀ ଆମ୍ଭର ଯଥେଷ୍ଟ ଆଦର କଲେ; ହେତୁକି ସେ ଆମ୍ଭ ଚିତ୍ର କୌଶଳରେ ଅତ୍ୟନ୍ତ ତୁଷ୍ଟ ହୋଇଥିଲେ । ଆମ୍ଭର ସଦାଚରଣ ଏବଂ ବିନୀତ ସ୍ୱଭାବ ଦେଖି ସେ ଆହୁରି ସନ୍ତୁଷ୍ଟ ହେଲେ । କିନ୍ତୁ ସେ ଆମ୍ଭଠାରେ ଏପରି ସଦ୍‌ବ୍ୟବହାର କଲେହେଁ ତାଙ୍କ ସୁକୁମାରୀ କନ୍ୟାକୁ ଦେଖିଲାକ୍ଷଣି ଆମ୍ଭ ମନରେ ଅତ୍ୟନ୍ତ ଶଙ୍କା ଉପସ୍ଥିତ ହୋଇଥିଲା । ସେହି ସୁନ୍ଦରୀ ଯେତେବେଳେ ଆମ୍ଭ ନେତ୍ର ପଥରେ ପଡୁଥିଲେ ଆମ୍ଭେ

ସେତେବେଳେ ଅତ୍ୟନ୍ତ ଶଙ୍କୁଚିତ ହେଉଥିଲୁଁ । କ୍ରମେ କ୍ରମେ ତାହାର ଅନୁପମ ରୂପ ଆମ୍ଭ ମନୋରାଜ୍ୟରେ ଏକାଧିପତ୍ୟ ସ୍ଥାପିଲା । କେବେ କେବେ ତାହାଙ୍କୁ ଅପସରି ବୋଲି ଭ୍ରମ ହେଉଥିଲା । ସେ ଯେ ପାର୍ଥିବ ପରମାଣୁରେ ନିର୍ମିତ, ଆମ୍ଭର ଏମନ୍ତ ପ୍ରତ୍ୟୟ ହେଉନଥିଲା । କ୍ରମେ କ୍ରମେ ମନ ନିରତିଶୟ ବିକୃତ ହେଲା । ନୟନଦ୍ୱାରା ତାହାର ଲାବଣ୍ୟରୂପ ମଧୁର ଗରଳ ପିଇ ଆମ୍ଭେ ଅଜ୍ଞାନ ହେଉ । ମନରେ କେତେ ନବ ନବ ଭାବ ଉଦୟ ହେଲା । ହରିଣନୟନା ଆମ୍ଭର ପ୍ରେୟସୀ ହେବେ କେବେ କେବେ ଏହି ଦୂରାଶା ଆମ୍ଭକୁ ଚଞ୍ଚଳ କରୁଥିଲା । କେତେବେଳେ ଅବା ହତାଶ ହୋଇ ଆକୁଳ ହେଉଥିଲୁଁ । ପ୍ରେମ ଏତେଦିନ ଯାଏଁ ଆମ୍ଭ ହୃଦୟମଧରେ ପ୍ରଚ୍ଛନ୍ନ ଭାବରେ ଥିଲା; ସେହି ବାମଲୋଚନାର ଲାବଣ୍ୟରେ ଉଦ୍ଦୀପ୍ତ ହେଲା, ପ୍ରେମର ଦୁର୍ଜ୍ଜୟ ପ୍ରଭାବ ଆମ୍ଭେ ଏତେଦିନେ ଅନୁଭବ କଲୁଁ ।

କିଛିଦିନ ମଧରେ ଚିତ୍ର ସମାପ୍ତ ହେଲା । ଲରା ମଠକୁ ନଉଟି ଅଇଲା । କିନ୍ତୁ ତାହାର ସେହି ମନୋହାରିଣୀ ମୂର୍ତ୍ତି ଆମ୍ଭ ହୃଦୟ ପଟରେ ଅଙ୍କିତ ରହିଲା । ମନରେ ସେହି ଅତୁଳ ସୌନ୍ଦର୍ଯ୍ୟ ଜଗିରହିଲା । କୌଣସି ସୁନ୍ଦର ପଦାର୍ଥ ଦେଖିଲେ ତାହାର ରୂପ, ସେହି ସର୍ବାଙ୍ଗ ସୁନ୍ଦରୀର ରୂପ ସହିତ ତୁଳନା କରୁଥାଉଁ । ତାହାର ପ୍ରତିମୂର୍ତ୍ତି ଲେଖି ଚଞ୍ଚଳ ମାନସକୁ ପ୍ରବୋଧ ଦେଉଥାଉଁ । ସୁନ୍ଦରୀ ସ୍ତ୍ରୀମାନଙ୍କର ପ୍ରତିମୂର୍ତ୍ତି ଆମ୍ଭେ ଅନାୟାସରେ ଚିତ୍ର କରିପାରୁଁ ବୋଲି ପ୍ରସିଦ୍ଧ ହୋଇଥିଲୁଁ । ଏହାର କାରଣ କଅଣ ? ଆଉ କିଛି ନୁହେଁ, ସେହି ମନୋହାରିଣୀ ଏହାର ଆଦି କାରଣ । ଆମ୍ଭ ଶିକ୍ଷକ ଆମ୍ଭକୁ ଯେଉଁ ଚିତ୍ର ଅଙ୍କିତ କରିବା ନିମନ୍ତେ ଆଦେଶ ଦେଉଥିଲେ ସେହି ଛବିରେ ଲରାର କିୟଦଂଶ ଲେଖି ଚିତ୍ରକୁ ସୁଶୋଭିତ କରୁଥିଲୁଁ । ଦିନେ ଆମ୍ଭେ ଏକ ମନ୍ଦିର ପାଖରେ ଛିଡ଼ା ହୋଇ ଦେଖିଲୁଁ ଯେ, ସେଠାରେ ଅନେକ ଲୋକ ଏକତ୍ରିତ ହୋଇ କାନ୍ଥରେ ଝୁଲୁଥିବାର କୌଣସି ପଟରେ ଅଙ୍କିତ ଦେବୀ ପ୍ରତିମୂର୍ତ୍ତି ଦେଖି ଚମତ୍କୃତ ହେଉଅଛନ୍ତି ଏବଂ ବାରମ୍ବାର ପ୍ରଶଂସା କରୁଅଛନ୍ତି । ପୁଣି ଭକ୍ତିପୂର୍ବକ ହାତ ଯୋଡ଼ି ସେହି ଦେବୀଙ୍କ ପ୍ରତିମୂର୍ତ୍ତିକୁ ଜୁହାର ହେଉଅଛନ୍ତି । ସେମାନେ କାହାକୁ ଜୁହାର ହେଉଥିଲେ ? ସେହି ଲାବଣ୍ୟମୟୀ ଲରାକୁ !!! ସେହି ଚିତ୍ତରଞ୍ଜନୀ ଲରାର ପ୍ରଶଂସା କରୁଥିଲେ ।

ଆମ୍ଭେ ଏହି ରୂପେ ଥୋକାଏ ଦିନ ଯାପିଲୁଁ । ସେହି ସୁଖକାଳ ଆମ୍ଭକୁ ସ୍ୱପ୍ନାବସ୍ଥା ପ୍ରାୟ ଦିଶୁଥିଲା । ଆମ୍ଭର କଳ୍ପନା ଏମନ୍ତ ବଳବତୀ ଥିଲା ଯେ ସେହି ନବୀନା ଲରାର ପ୍ରତିମୂର୍ତ୍ତି ମୁହୂର୍ତ୍ତ ମଧରେ ହୃଦୟ ଅଗ୍ରତେ ଥୁଉଥିଲା । ପୁଣି ଆମ୍ଭେ ସର୍ବଦା ନିର୍ଜ୍ଜନରେ ଭ୍ରମଣ କରୁଥିଲୁଁ । ଭ୍ରମଣ ବେଳେ ଅନେକ ନବ ନବ ଭାବର ଉଦୟ ହେଉଥାଏ, ମନରେ ଅନେକ ଅନନୁଭୂତ ପୂର୍ବ ବାସନା ଜାତ ହେଉଥିଲା । ଉଦ୍ୟାନ ପୁଷ୍ପମାନେ ସେହି ସୁକୁମାରୀର ସୌନ୍ଦର୍ଯ୍ୟକୁ ସ୍ମୃତି ପଥାରୂଢ଼ କରାଉଥିଲେ । ମଧୁରାଳାପୀ ପକ୍ଷୀମାନଙ୍କ ମଧୁର ଗୀତ ଶୁଣି ସେହି ଲରାର ମିଷ୍ଟସ୍ୱର ମନରେ ପଡୁଥିଲା । ବିକଶିତ

ଗୋଲାପଫୁଲ ତାହାର କୋମଳ କର ତଳର ସ୍ମାରକ ହେଉଥିଲା । ଆମ୍ଭେ ସ୍ୱଭାବ ଶୋଭା ଦେଖି ଦିନ ଏହିପରି ଯାପୁଥିଲୁଁ । ଅନନ୍ତର ଗୋଟିଏ ଶୋଚନୀୟ ବ୍ୟାପାର ଘଟିଲା । ଆମ୍ଭେ ତଦ୍ୱାରା ଏହି ସୁଖ ସ୍ୱପ୍ନରୁ ଜାଗିଲୁଁ । ଆମ୍ଭର ନିତ୍ୟ ହିତାକାଂକ୍ଷୀ ସେହି ଚିତ୍ରକର ପଞ୍ଚତ୍ୱ ପ୍ରାପ୍ତ ହେଲେ । ତାଙ୍କ ମୃତ୍ୟୁରେ ଆମ୍ଭର ଶୋକସିନ୍ଧୁ ଉଚ୍ଛୁଳିଲା । ନିଃସହାୟ ହୋଇ ଭଗ୍ନୋତ୍ସାହ ହେଲୁଁ । ସେହି ଚିତ୍ରକର ଅନ୍ତିମକାଳରେ ଅନୁଗ୍ରହ କରି ଆମ୍ଭକୁ ତାଙ୍କର ସମସ୍ତ ସମ୍ପତ୍ତି ଉପରେ ଉତ୍ତରାଧିକାରୀ ସ୍ୱରୂପ ନିଯୁକ୍ତ କରିଗଲେ । ମାତ୍ର ସେହି ସମ୍ପତ୍ତି ଅଧିକ ନ ଥିଲା । ତାଙ୍କର ଏକ ପରମବାନ୍ଧବ ଥିଲେ, ଆମ୍ଭର ରକ୍ଷଣାବେକ୍ଷଣର ଭାର ସେହି ବନ୍ଧୁଙ୍କୁ ଅର୍ପଣ କରି ପ୍ରାଣତ୍ୟାଗ କଲେ । ସେହି ଚିତ୍ରକରଙ୍କ ବଦାନ୍ୟତା ଆମ୍ଭେ କେବେହେଁ ପାସୋରିବୁଁ ନାହିଁ ।

ତାଙ୍କ ବନ୍ଧୁ ଅତ୍ୟନ୍ତ ଦାତା ବୋଲି ପ୍ରସିଦ୍ଧ ଥିଲେ, ପୁଣି ତାଙ୍କର ଅସାଧାରଣ ଶିଳ୍ପବିଦ୍ୟୋତ୍ସାହିତା ଥିଲା । ଆମ୍ଭେ ପଛକୁ ଗୋଟିଏ ନିପୁଣ ଚିତ୍ରକର ହେବୁଁ ଏହା ସେ ଅନାୟାସରେ ବୁଝିପାରିଲେ । ଆମ୍ଭର ଅଙ୍କିତ ଛବି ଦେଖି ସେ ଯତ୍ପରୋନାସ୍ତି ପରିତୁଷ୍ଟ ହେଲେ ଏବଂ ଆନନ୍ଦିତ ଚିତ୍ତରେ ଆମ୍ଭ ପ୍ରତିପୋଷଣର ଭାର ନେଲେ । ତାଙ୍କର ଏକ ସୁରମ୍ୟ ଗ୍ରାମ୍ୟ ଉପବନ ଥିଲା । ଆମ୍ଭକୁ ଶୋକରେ ଅଭିଭୂତ ହୋଇଥିବାର ଦେଖି ଆମ୍ଭର ସାନ୍ତ୍ୱନା ପାଇଁ ସେଠାବରେ କେତେକ ଦିନ ଅବସ୍ଥାନ କରିବା ନିମନ୍ତେ ଆମ୍ଭକୁ ସଙ୍ଗେ ଘେନି ଯାତ୍ରା କଲେ । କିଛିଦିନ ବାଦ ସେଠାରେ ପହଞ୍ଚିଲୁଁ । ସେହି ଉଦ୍ୟାନ ସମୁଦ୍ର କୂଳରେ ଅବସ୍ଥିତ ଥିଲା । ତାହା ପଶ୍ଚିମଦିଗରେ ନଭୋନିଭ ନୀଳବର୍ଣ୍ଣ ପର୍ବତଶ୍ରେଣୀ ବିରାଜିତ ଥିଲା । ଆମ୍ଭେ କେବେ କେବେ ସେହି ପର୍ବତରେ ବୁଲୁଥିଲୁଁ । କେତେବେଳେ ଅବା ଶୃଙ୍ଗରେ ଚଢ଼ି ଚତୁର୍ଦ୍ଦିଗକୁ ନୟନ ନିକ୍ଷେପ କରୁଥିଲୁଁ । ସେ ଶୋଭା ବର୍ଣ୍ଣିବାର ଆମ୍ଭର ସାଧ ନୁହଇ । କେଉଁଠାରେ ତରଳ ରୌପ୍ୟବତ୍ ସ୍ୱଚ୍ଛବାରିବିଶିଷ୍ଟ ପ୍ରକାଣ୍ଡ ହ୍ରଦ, କେଉଁଠାରେ ଗମନ ନିନାଦୀ ଜଳପ୍ରପାତ, କେଉଁଠାରେ ମରକତନିଭ ହରିତବର୍ଣ୍ଣ ତରୁ ଶୋଭି ଉପତ୍ୟକା, କେଉଁଠାରେ ନବଦୂର୍ବାଦଳ ଶ୍ୟାମ ପ୍ରଶସ୍ତ ପ୍ରାନ୍ତର, କେଉଁଠାରେ ଭୀଷଣ ତରଙ୍ଗସଙ୍କୁଳା ପ୍ରବାହିନୀ ଦୃଷ୍ଟିଗୋଚର ହେଉଥିଲା । ସେ ସ୍ଥାନର ପରମ ରମଣୀୟ ଶୋଭା ସଂଦର୍ଶନ କରି ଆମ୍ଭର ନୟନ ସାର୍ଥକ ହେଲା ।

ଆମ୍ଭର ଅନୁଗ୍ରାହକ ସେହି ଭଦ୍ରଲୋକଙ୍କର ଫିଲିପ ନାମଧେୟ ଏକ ପୁତ୍ର ଥିଲେ । ସେହି ରମ୍ୟ ଉଦ୍ୟାନରେ ତାଙ୍କ ସହିତ ଆମ୍ଭର ପ୍ରଥମ ପରିଚୟ ହେଲା । ସେ ଆମ୍ଭର ସମାନ ବୟସ୍କ ଥିଲେ, ତାଙ୍କ ସଦ୍‌ପ୍ରକୃତି ଏବଂ ସଦ୍‌ବ୍ୟବହାର ଦେଖି ଆମ୍ଭେ ଅତିଶୟ ପ୍ରୀତ ହେଲୁଁ । ପ୍ରଥମେ ଆମ୍ଭେ ତାହାଙ୍କୁ ଅତି ଭଦ୍ର ଏବଂ ସୁଶୀଳ ବୋଲି ଜାଣିଥିଲୁଁ । କିନ୍ତୁ ଅଳ୍ପଦିନ ମଧରେ ଆମ୍ଭର ସେହି ଭ୍ରାନ୍ତି ଘୁଞ୍ଚିଗଲା । ତାଙ୍କର ସେହି ବ୍ୟବହାର କୃତ୍ରିମ, ଶୀଘ୍ର ଏହା ଜାଣିପାରିଲୁଁ । ଆମ୍ଭ ପରୋକ୍ଷରେ ସେ କେବେ କେବେ ଆମ୍ଭର କୁତ୍ସା କରୁଥିଲେ ଏବଂ ଆମ୍ଭର ଶିଳ୍ପନୈପୁଣ୍ୟ ଦେଖି ଈର୍ଷା ହେଉଥିଲେ । ଆମ୍ଭର

ସେଠାରେ କେହି ବନ୍ଧୁ ନଥିଲେ; ସୁତରାଂ ଆକୁଳ ହୃଦୟକୁ ଶାନ୍ତ କରିବା ନିମନ୍ତେ ତାହାଙ୍କ ସହିତ ମିତ୍ରତା କରିବାକୁ ବାଧ ହେଲୁଁ । ସେ ସୁଶିକ୍ଷିତ ନ ଥିଲେ । ତାଙ୍କୁ ବଳି ଆମ୍ଭେ ଅନେକ ବିଷୟରେ ଉତ୍କୃଷ୍ଟ ଥିଲୁଁ ପୁଣି ସେସୁଦ୍ଧା ଏହି ଅକୁଣ୍ଠିତ ହୃଦୟରେ ସ୍ୱୀକାର କରୁଥିଲେ, ଆମ୍ଭେ ମୁକ୍ତକଣ୍ଠରେ ତାଙ୍କଠାରେ ଆମ୍ଭର ତାବତ୍ ବୃତ୍ତାନ୍ତ କହିଲୁଁ । ସେ ମଧ୍ୟ କୌଣସି କଥା ଆମ୍ଭଠାରେ ଲୁଚାଉ ନ ଥିଲେ । ପ୍ରଧାନ ବୋଲି ଆମ୍ଭଠାରେ କେବେହେଁ ନିଷ୍ଠୁର ଆଚରଣ କରୁନଥିଲେ । ଆମ୍ଭର ସୌହାର୍ଦ୍ଦ ଶୃଙ୍ଖଳ ଦିନକୁଦିନ ଦୃଢ଼ୀଭୂତ ହେବାକୁ ଲାଗିଲା । ଦୁହେଁ ଦୁହିଁଙ୍କର ପରମ ପ୍ରେମାସ୍ପଦ ହେଲୁଁ । ଏମନ୍ତ ହେଲେହେଁ କେବେ କେବେ ଆମ୍ଭେ ଏକା ବସି ଚିନ୍ତାମଗ୍ନ ହେଉଥିଲୁଁ ଏବଂ ଲରା ସମ୍ବନ୍ଧୀୟ ବିଷୟମାନ ସ୍ମରଣ କରି ଅଶ୍ରୁଜଳ୍‌ରେ ବକ୍ଷସ୍ଥଳକୁ ପ୍ଳାବିତ କରୁଥିଲୁଁ ।

ସେହି ଉପବନ ନାନାବିଧ ରମଣୀୟ ବସ୍ତୁରେ ପରିପୂର୍ଣ୍ଣ ଥିଲା । ସ୍ଥାନେ ସ୍ଥାନେ ଚିକ୍କଣ ମର୍ମର ପ୍ରସ୍ତର ମୂର୍ତ୍ତି ସ୍ଥାପିତ ଥିଲା । ଶୀତଳଛାୟା ବିଶିଷ୍ଟ ଲତାମଣ୍ଡପରେ ବସି ପକ୍ଷୀମାନେ ମଧୁର ରାବ ଦେଉଥିଲେ । ସୁଗନ୍ଧଫୁଲ ସୌରଭରେ ବାସିତ ପବନ ସର୍ବଦା ଆମ୍ଭର ସୁଖସେବ୍ୟ ହୋଇଥିଲା । ଗୁଡ଼ାଏ କହିବାର କି, ସେହି ଉପବନ ଯାବତୀୟ ଚିତ୍ତରଞ୍ଜନ ପଦାର୍ଥର ଆବାସ ପ୍ରାୟେ ଥିଲା । ସେହି ବିଚିତ୍ର ସ୍ଥାନରେ କିଛିଦିନ ଅବସ୍ଥାନ କରି ଆମ୍ଭ ମନୋଦୁଃଖର କିଞ୍ଚିତ୍ ହ୍ରାସ ହେଲା । କ୍ରମଶଃ ସ୍ଥିରଚିତ୍ତ ହେଲୁଁ । ମାତ୍ର ଲରାରୂପ ହୃଦୟରେ ସର୍ବଦା ଜାଗି ରହିଲା । ବସ୍ତୁତଃ ସେ ଅଲୌକିକ ଲାବଣ୍ୟକୁ ପାସୋରିବାର ଦୁଷ୍କର ଅଟେ ।

ଏହିରୂପ ସେଠାରେ କିଛିଦିନ ଗଲା । ଅନନ୍ତର ଏକ ଭଦ୍ରମହିଳା ସେଠାକୁ ଆସିଲେ । ସେହି ମହିଳା ଆମ୍ଭ ପ୍ରଭୁଙ୍କର ଆତ୍ମୀୟା । ତାହାଙ୍କ ଜନନୀର ମରଣାନ୍ତେ ତାଙ୍କ ରକ୍ଷଣାବେକ୍ଷଣର ଭାର ଆମ୍ଭ ପ୍ରଭୁଙ୍କ ଉପରେ ପଡ଼ିଲା । ଏଥିପୂର୍ବରେ ଆମ୍ଭେ ଫିଲିପଙ୍କ ମୁଖରୁ ସେହି ଲଳନାର ରୂପର କଥା ଶୁଣିଥିଲୁଁ; ମାତ୍ର ଆମ୍ଭ ମନ ଯେଉଁ ଲାବଣ୍ୟରେ ବୁଡ଼ି ରହିଥିଲା ସେହି ଲାବଣ୍ୟର ପରି ଜଗତରେ ନାହିଁ, ଆମ୍ଭର ଏହି ଦୃଢ଼ବିଶ୍ୱାସ ଥିଲା । ସେହି ମହିଳା ଯେତେବେଳେ ସେଠାରେ ପହୁଞ୍ଚିଲେ ଆମ୍ଭେ ସେ ସମୟରେ ପ୍ରାସାଦ ମଧ୍ୟରେ ବସିଥିଲୁଁ । ସେ ଅତ୍ୟନ୍ତ ଶୋକାର୍ତ୍ତ ହୋଇଥିଲେ, ଆମ୍ଭେ ପ୍ରଥମେ ତାହାଙ୍କ ମୃଦୁଗମନ ଏବଂ ଶୋକସୂଚକ କୃଷ୍ଣବସନ ଦେଖି କ୍ଷିନ୍ନ ହେଲୁଁ । ସେ କ୍ରମଶଃ ଆମ୍ଭ ନିକଟବର୍ତ୍ତୀ ହେବାକୁ ଲାଗିଲେ । ମୁହୂର୍ତ୍ତ ଉତ୍ତାରେ ଆମ୍ଭେ ଅତ୍ୟନ୍ତ ବିସ୍ମୟାନ୍ୱିତ ହେଲୁଁ, ସେ ସେହି ଲରା । ସେହି ବାମା କୁଳେଶ୍ୱରୀ ଲରା ! ଆମ୍ଭର ସେହି ମନୋମୋହିନୀ ଲରା । ତାହାଙ୍କ ବଦନ ସୁଧାକର ଶୋକଘନରେ ଆଚ୍ଛନ୍ନ ହୋଇଥିଲା । କିନ୍ତୁ ଆମ୍ଭେ ପୂର୍ବରେ ଯେଉଁ ମାଧୁରୀ ଦେଖିଥିଲୁଁ ସେହି ମାଧୁରୀ ବୟୋବୃଦ୍ଧି ସହିତ ବହୁ ପରିମାଣରେ ବଢ଼ିଥିଲା । ପୂର୍ବରେ ଆମ୍ଭେ ଯାହାକୁ କଳିକାରୂପେ ଦେଖିଥିଲୁଁ ଏବେ ତାହା ପ୍ରସ୍ଫୁଟିତ ହୋଇଅଛି । କୌଣସି ପ୍ରସିଦ୍ଧ କବି ଲେଖିଅଛନ୍ତି ଯେ, ଯେଉଁମାନେ

ଆମ୍ଭ ସ୍ନେହପାତ୍ର ଅଟନ୍ତି ସେମାନଙ୍କୁ ଦୁଃଖିତ ଦେଖିଲେ ସେମାନଙ୍କଠାରେ ଆମ୍ଭ ସ୍ନେହ ଶତଗୁଣ ହୋଇ ବର୍ଦ୍ଧିତ ହୁଏ । ଏଥିନିମନ୍ତେ ସେହି ସୁକେଶୀ ଆମ୍ଭ ନୟନର ଅଧିକତର ମନୋହାରିଣୀ ହେଲେ ।

ଆମ୍ଭକୁ ଦେଖିବାମାତ୍ର ତାହାଙ୍କ ଦେହ କମ୍ପିଲା । ଲଜ୍ଜାରେ କୋମଳ କପୋଳ ଲୋହିତବର୍ଣ୍ଣ ହେଲା । ପୂର୍ବରେ ଯେତେବେଳେ ଆମ୍ଭେ ତାଙ୍କ ସଙ୍ଗରେ ଏକତ୍ର ଅବସ୍ଥାନ କରୁଥିଲୁଁ ସେ ସମୟରେ ତାଙ୍କ ଜନନୀ ଜୀବିତ୍ ଥିଲେ, ଆମ୍ଭକୁ ଦେଖି ତାହାଙ୍କ ମାତୃଶୋକ ଉଦ୍ଦୀପ୍ତ ହେଲା; ନୟନରୁ ମୁକ୍ତାଗଞ୍ଜି ଅଶ୍ରୁବିନ୍ଦୁ ଝରିଲା । ତାହାଙ୍କର ସେହି ଶୋଚନୀୟ ଦଶା ଦେଖି ମନରେ ଯେମନ୍ତ ଦୁଃଖ ଉଦୟ ହେଲା ତାହା କଣ କହିବୁଁ । ପୂର୍ବରେ ତାଙ୍କ ସହିତ କଥା କହିବାକୁ ସୁଦ୍ଧା ଆମ୍ଭେ ଲଜ୍ଜିତ ହେଉଥିଲୁଁ । ସେହି ଲଜ୍ଜା କ୍ରମେ ଭାଙ୍ଗିଗଲା ।

ଶ୍ରଦ୍ଧାସ୍ପଦ ଅଭିଭାବକଙ୍କ ମରଣରେ କ୍ଷିନ୍ନ ହୋଇଥିଲୁଁ । ଦୁହେଁ ଦୁହିଁଙ୍କ ଦୁଃଖରେ ବିମର୍ଷ ପ୍ରାପ୍ତ ହେଲୁଁ । ପୁଣି ସେହି ଲରାଙ୍କର ମାନସିକ ବୃତ୍ତି ଏବଂ ଅସମାନସିକ ବୃତ୍ତି ଏକପ୍ରକାର ଥିଲା । ତାହାଙ୍କ ପକ୍ଷରେ ସଂସାର ନୂଆ ପଦାର୍ଥ ପ୍ରାୟ ହୋଇଥିଲା; ଆମ୍ଭେ ମଧ୍ୟ ସଂସାରାଶ୍ରମରେ ପ୍ରବିଷ୍ଟ ହୋଇନଥିଲୁଁ । ପ୍ରାକୃତିକ ଶୋଭା ଦର୍ଶନରେ ତାହାଙ୍କର ଅତ୍ୟନ୍ତ ଆଗ୍ରହ ଥିଲା; ଆମ୍ଭର ମଧ୍ୟ ସ୍ୱଭାବ ଶୋଭା, ଦେଖିବାର ସ୍ପୃହା ବଳବତୀ ଥିଲା । ତାହାଙ୍କ ସରଳତା ଦେଖି ଆମ୍ଭେ ମୁଗ୍ଧ ହୋଇଗଲୁଁ । ତାହାଙ୍କ ଉଦାର ପ୍ରକୃତି ନବୀନବୟସ ଅତୁଳରୂପମାଧୁରୀ ଆମ୍ଭକୁ ଉନ୍ନତ କଲା । ଆମ୍ଭେ ତାହାଙ୍କୁ ସୁରାଙ୍ଗନା ବୋଲି ଅନୁମାନ କରୁଥିଲୁଁ । ଏପରି ଲଳନାର ଯୋଗ୍ୟପାତ୍ର ନୋହୁଁ । ଏହି ବିବେଚନାରେ ଆପଣାକୁ କେତେ ଧିକ୍କାର ଦେଉଥିଲୁଁ । ତଥାଚ ସେ ମାନବୀ ବିନୁ ଆନ କିଛି ନ ଥିଲେ । ତାହାଙ୍କ ମନ ପ୍ରଣୟ ରସରେ ପରିପୂର୍ଣ୍ଣ ଥିଲା । ସେ ଆମ୍ଭକୁ ସ୍ନେହ କରୁଥିଲେ । ସହୋଦରଠାରେ ସହୋଦରା ଯେମନ୍ତ ସ୍ନେହ କରଇ ସେହି ସ୍ନେହ ? ନା ! ସ୍ୱାମୀଠାରେ ପ୍ରେୟସୀ ଯେପରି ସ୍ନେହ କରଇ ସେହି ସ୍ନେହ !!!

କ୍ରମଶଃ

## ଚନ୍ଦ୍ର ଓ ତାରା

ସୃଷ୍ଟିର ପ୍ରଥମଦିନ ଦୀପ୍ତମାନ୍ ସୂର୍ଯ୍ୟ ଦିଗ୍‌ବଳୟର ପୂର୍ବରୁ ଉଦିତ ହୋଇ ଦିଗ୍‌ବଳୟର ପଶ୍ଚିମରେ ଅସ୍ତ ହେଲେ, ବିଜନ ଧରଣୀର ମୁଖ ଅନ୍ଧକାର ଦ୍ୱାରା ଆବୃତ ହେଲା, ଏମନ୍ତ ସମୟରେ ନୀଳାକାଶ ମଧରେ ଗୋଟିଏ ସୁନ୍ଦର ତାରା ସ୍ୱୀୟ କ୍ଷୁଦ୍ର ମସ୍ତକ ଉତ୍ତୋଳନ କରି ଅବତୀର୍ଣ୍ଣ ହେଲା । ନବଲବ୍ଧ ଜୀବନ ବିଚିନ୍ତା କରୁ କରୁ ସେ ଆହ୍ଲାଦ ଓ ବିସ୍ମୟରେ ମଗ୍ନ ହୋଇ ଚତୁର୍ଦ୍ଦିଗ ନିରୀକ୍ଷଣ କଲା; ମାତ୍ର ନିଜ ମୂର୍ତ୍ତି ସଦୃଶ କୌଣସି ପଦାର୍ଥ ଦେଖିଲା ନାହିଁ । ମୁହୂର୍ତ୍ତିକ ଉତ୍ତାରେ ଗୋଟି ଗୋଟି ହୋଇ ଅନେକ

ତାରା ଉଦିତ ହେଲେ । ଘଡ଼ିକ ମଧ୍ୟରେ ଅନନ୍ତ ନୀଳାମ୍ବର ଅସଂଖ୍ୟ ଗ୍ରହନକ୍ଷତ୍ରଦ୍ୱାରା ବିଭୂଷିତ ହେଲା, ସର୍ବ ଶେଷେ ଗୋଟିଏ ଦୀପ୍ତିମାନ୍ ଧୂମକେତୁ ଆକାଶ ମଧ୍ୟ ସ୍ଥଳରେ ଅବସ୍ଥାନ କରି ସ୍ୱୀୟ ପ୍ରଭା ବିସ୍ତାର କରିବାକୁ ଲାଗିଲା ।

ଏହି ନକ୍ଷତ୍ରମାନେ କ୍ଷଣକାଳ ପରସ୍ପର ସୌନ୍ଦର୍ଯ୍ୟ ଚିନ୍ତା କଲେ । ପ୍ରତ୍ୟେକେ ଆପଣାକୁ ସମୁଦାୟ ବ୍ରହ୍ମାଣ୍ଡର ମଧ୍ୟବର୍ତ୍ତୀ ଜ୍ୟୋତିଷ୍ମାନ୍ ଜ୍ଞାନ କଲେ, କିନ୍ତୁ ସେମାନଙ୍କର ଏହି ଭ୍ରାନ୍ତି ଶୀଘ୍ର ବିଦୂରିତ ହେଲା । ଆତ୍ମଜ୍ଞାନ ସର୍ବଜ୍ଞାନର ସତ୍ୟତା ପରିମାପକ ଅଟେ । ମୁହୂର୍ତ୍ତକ ଉତ୍ତାରେ ସେମାନେ ବିମଳ ଅମ୍ବୁରାଶି ଆଡ଼କୁ ଦୃଷ୍ଟି ପକାଇଲେ । ସେହି ଜଳ ଦର୍ପଣରେ ନିଜ ମୂର୍ତ୍ତିର ପ୍ରତିବିମ୍ବ ଦର୍ଶନ କରି ଅତ୍ୟନ୍ତ ଲଜ୍ଜିତ ହେଲେ ଏବଂ ନମ୍ରଭାବ ଅବଲମ୍ବନ କଲେ । ମାତ୍ର ଧୂମକେତୁ ସୂର୍ଯ୍ୟ ଆଡ଼କୁ ଦୀର୍ଘ ଉଜ୍ଜ୍ୱଳ ଲାଞ୍ଜ ବିସ୍ତାର କରି ଆପଣାକୁ ଜ୍ୟୋତିରାଜ ବୋଲି ମଣିବାକୁ ଲାଗିଲା । ଏମନ୍ତ ସମୟରେ ଗୋଟିଏ ନବୀନ ପଦାର୍ଥ ଜ୍ୟୋତିଷ୍କମାନଙ୍କ ଦୃଷ୍ଟି ଗୋଚର ହେଲା । ଗୋଟିଏ ସୂକ୍ଷ୍ମ ଜ୍ୟୋତିଃସୂତ୍ର ଦିଗ୍‌ବଳୟୋପରି ଉଦିତ ହେଲା । ଏହିଟି ପ୍ରଥମ ପ୍ରତିପ ଚନ୍ଦ୍ର । ସୌଷ୍ଠବାନ୍ୱିତ ପ୍ରଭାମୟ ନକ୍ଷତ୍ରପୁଞ୍ଜ ଅବଲୋକନ କରି ଚନ୍ଦ୍ର ଭୀତ ଓ ଲଜ୍ଜିତ ହୋଇ ଆପଣାର କୃଶ ଆଉ କୁତ୍ସିତ ରୂପକୁ ଶୀଘ୍ର ସାଗର ଗର୍ଭସ୍ଥ କଲା । ଚନ୍ଦ୍ର ଗଗନରୁ ତିରୋହିତ ହେଲା କ୍ଷଣି ନକ୍ଷତ୍ରମାନେ ବିସ୍ମୟାନ୍ୱିତ ହୋଇ ପରସ୍ପର ପ୍ରତି ଜିଜ୍ଞାସୁ ନୟନରେ ଅନାଇଲେ । ''ଆ ! ଏଉଟା କି ବଙ୍କା ମୂର୍ତ୍ତି'' ଏହା ବୋଲି ସେମାନେ ଅସ୍ତଗତ ଚନ୍ଦ୍ରକୁ ଉପହାସ କରିବାକୁ ଲାଗିଲେ । ଏମନ୍ତ ସମୟରେ ସେମାନେ ନିଜ ତେଜର ହ୍ରାସ ଅନୁଭବ କଲେ । ପ୍ରାଚୀ ଦିଗରେ ଅରୁଣ ଉଦିତ ହେଲା ଏବଂ ସେମାନେ ଚାହୁଁ ଚାହୁଁ ଗଗନରେ ବିଲୀନ ହେଲେ ।

ତହିଁ ଆର ସନ୍ଧ୍ୟାରେ ସେହି ନକ୍ଷତ୍ରମାନେ ଜାଗ୍ରତ ହୋଇ ଚକ୍ଷୁରୁନ୍ମୀଳନ କଲେ । ଚାହିଁ ଦେଖିଲେ ଯେ ପୂର୍ବ ରାତ୍ରିର ନକ୍ଷତ୍ରସମୂହ ମଧ୍ୟରୁ କେହି ଅନୁପସ୍ଥିତ ନାହିଁ । କ୍ଷୁଦ୍ର ବଙ୍କିମ ଚନ୍ଦ୍ରରେଖା ପୁନର୍ବାର ଦୃଷ୍ଟି ପଥାରୂଢ଼ ହେଲା । ଏହାର ତେଜଃ ପୂର୍ବ ରାତ୍ରିଠାରୁ କିଞ୍ଚିନ୍ମାତ୍ର ବଢ଼ିଥିଲା ସତ୍ୟ; ମାତ୍ର ଚାହୁଁ ଚାହୁଁ ଏହାର ବିଲୟ ଉପସ୍ଥିତ ହେଲା । ଏଣୁ ଧୂମକେତୁ ପୂର୍ବବତ୍ ଆକାର ଅଧିରାଜ ହୋଇ ସମସ୍ତ ନକ୍ଷତ୍ରଙ୍କୁ ଶାସନ କରିବାକୁ ଲାଗିଲା ।

ତୃତୀୟ ସନ୍ଧ୍ୟାରେ ଚନ୍ଦ୍ରର ଆକାର ଏବଂ ତେଜ ବହୁତ ବଢ଼ିଥିଲା ଏବଂ ସେ ଅପେକ୍ଷାକୃତ ଅଧିକକାଳ ଆକାଶରେ ଦେଦୀପ୍ୟମାନ ହେଲା । ନକ୍ଷତ୍ରମାନେ ଏହା ଦେଖି ବିସ୍ମିତ ହେଲେ ଏବଂ ଚନ୍ଦ୍ରାସ୍ତ ଉତ୍ତାରେ ତଦ୍ୱିଷୟକ କଥାବାର୍ତ୍ତାରେ ସେ ରଜନୀ ଯାପନ କଲେ । ଅବଶେଷେ ମୃଦୁ ପ୍ରଭାତ ବାୟୁ ବହିବାକୁ ଲାଗିଲା ସୂର୍ଯ୍ୟଙ୍କ ହିରଣ୍ମୟ ପ୍ରଭାରେ ଧରାତଳ ରଞ୍ଜିତ ହେଲା ।

ପର ରାତ୍ରିରେ ଚନ୍ଦ୍ର ଉଦିତ ହୋଇ ଆକାଶରେ ଉଚ୍ଚତର ଆସନ ଗ୍ରହଣ କଲେ । ତାଙ୍କର ପ୍ରଭା ବୃଦ୍ଧି ହେତୁରୁ ସମୀପବର୍ତ୍ତୀ ନକ୍ଷତ୍ରମାନେ ମ୍ଳାନ ହେଲେ, କେହି କେହି

ଅବା ଅଦୃଶ୍ୟ ହେଲେ । ଏହାର ଯଥାର୍ଥ କାରଣ ବୁଝି ନ ପାରି ନକ୍ଷତ୍ରମାନେ ସଶଙ୍କ ହୋଇ ବିଚାରିଲେ ଯେ, ଚନ୍ଦ୍ର ସେମାନଙ୍କ ତେଜୋ ହରଣ କରି ନିଜ କଳେବର ବର୍ଦ୍ଧିତ କରୁଅଛି ଏବଂ ଅଚିରେ ସମସ୍ତଙ୍କ ଜ୍ୟୋତିଃ ଅପହରଣ କରି ସ୍ୱଦେହ ମଣ୍ଡନ କରିବ ।

ଚନ୍ଦ୍ର ପ୍ରତିରାତ୍ର ଏହିପରି ବୃହତ୍ତର ଏବଂ ମନୋଜ୍ଞତର ହେବାକୁ ଲାଗିଲା, ତଥାପି ସେ ଏତେବେଳଯାଏ ବିନୟ ଅବଲମ୍ବନ କରିଥିଲା । ଅବଶେଷେ ଗୋଲାକାର ଧାରଣ କଲା । ପୂର୍ଣ୍ଣିମା ରାତ୍ରିରେ ଗର୍ବିତ ଭାବରେ ଗଗନ ମଧ୍ୟରେ ଅବସ୍ଥାନ କରି, ଧରଣୀ ତଳ ଶୀତଳ ଧବଳ ରଶ୍ମିରେ ରଞ୍ଜିତ କଲା । ଆପଣା ରୂପଶ୍ରୀ ସମୁଦ୍ରରେ ପ୍ରତିବିମ୍ବିତ ଦେଖି ଆପେ ମୁଗ୍ଧ ହେଲା । ନକ୍ଷତ୍ରମାନେ ଆକାଶ ମଧ୍ୟରେ ଲୁଚି ରହି ଚନ୍ଦ୍ରର ପରମ ଶୋଭା ନିରୀକ୍ଷଣ କରିବାକୁ ଲାଗିଲେ ।

ଚନ୍ଦ୍ରର ତେଜଃ ଏବଂ ଆୟତନ କେତେଦୂର ପରିବର୍ଦ୍ଧିତ ହେବ, ସେ ତାହା ନିଜେ ସ୍ଥିର କରିପାରିଲା ନାହିଁ । ଗର୍ବ ବିମୋହିତ ହୋଇ ଭାବିବାକୁ ଲାଗିଲା, ଅବଶେଷେ ଆକାଶଯାକ ଚନ୍ଦ୍ର ହୋଇ ଯିବ । ଭ୍ରାନ୍ତି ବଶମ୍ବଦ ହୋଇ ଏମନ୍ତ ଚିନ୍ତା କରିବାବେଳେ, ହଠାତ୍ ତାହାର ସୁନ୍ଦର ଆନନଶ୍ରୀ ବିବର୍ଣ୍ଣ ହୋଇଗଲା । ଚାହୁଁ ଚାହୁଁ ତାହାର ସମୁଦାୟ ଶରୀର କଳା ପଡ଼ିଗଲା । ଅବଶେଷେ ସେ ଆକାଶର କଳଙ୍କବତ୍ ପ୍ରତିଭାତ ହେଲା । ଏହି ଅବକାଶରେ ନକ୍ଷତ୍ରମାନେ ମହୋଲ୍ଲାସପୂର୍ବକ ପୁନରୁଦିତ ହୋଇ ତାହାର ଦୁର୍ଦ୍ଦଶା ଅବଲୋକନ କଲେ । କିନ୍ତୁ ସେମାନଙ୍କ ଅଯଥା ଆହ୍ଲାଦ ଶୀଘ୍ର ନିରାକୃତ ହେଲା । ଚନ୍ଦ୍ରୋପରି ପତିତଛାୟ ଶୀଘ୍ର ଅପସୃତ ହେଲା । ଚନ୍ଦ୍ର ପୂର୍ବବତ୍ ଆକାଶମଣ୍ଡଳରେ ଦେଦୀପ୍ୟମାନ ହେବାକୁ ଲାଗିଲେ ।

ତହିଁ ଆର ରଜନୀରେ ଚନ୍ଦ୍ର କିଛି ବିଳମ୍ବ କରି ଉଦିତ ହେଲା । ପୃଥିବୀ ଉପରେ ପରିଭ୍ରମଣ କରିବାବେଳେ ସେ ଆପଣାର ତେଜୋହ୍ରାସ ଅନୁଭବ କଲା । ମାତ୍ର ଯେତେବେଳେ ସେ ସମୁଦ୍ର ମୁକୁରରେ ନିଜ ପ୍ରତିବିମ୍ବ ଦେଖିଲା, ତେତେବେଳେ ତାହାର ଆଉ ସନ୍ଦେହ ରହିଲା ନାହିଁ । ଏହି ସମୟରେ ପ୍ରବଳ ଝଞ୍ଜାବାୟୁ ଉପସ୍ଥିତ ହେଲା । ଫେନଚୂଡ଼ ତରଙ୍ଗମାନେ ଗର୍ଜନ କରିବାକୁ ଲାଗିଲେ । ଚନ୍ଦ୍ରର ଆକର୍ଷଣ ପ୍ରଭାବରୁ ପ୍ରଥମ ଜୁଆର ଆରମ୍ଭ ହେଲା । ବଜ୍ରନାଦରେ ଆକାଶ ବିଦୀର୍ଣ୍ଣ ହେବାକୁ ଲାଗିଲା ଏବଂ ଅବିଶ୍ରାନ୍ତ ଧାରାରେ ବୃଷ୍ଟିପତନ ହେଲା । ଚନ୍ଦ୍ର କୃଷ୍ଣବର୍ଣ୍ଣ ମେଘାବଳୀ ମଧ୍ୟରେ ଲୁଚିଗଲେ; ନକ୍ଷତ୍ରମାନେ ମଧ୍ୟ ସେହି ଦଶା ଭୋଗ କଲେ । ତେଣୁ ଚନ୍ଦ୍ରର ଦୁର୍ଦ୍ଦଶାରେ ହେବାକୁ ଅବସର ପାଇଲେ ନାହିଁ ।

ଏଣିକି ଚନ୍ଦ୍ର ଦିନକୁଦିନ ଅଧିକ ବିଳମ୍ବ କରି ଉଦିତ ହେଲା । ତାହାର ରୂପ ମଧ୍ୟ ମ୍ଳାନତର ହେବାକୁ ଲାଗିଲା । ଯେଉଁ କ୍ଷୁଦ୍ର ନକ୍ଷତ୍ରମାନେ ପୂର୍ବେ ଅଦୃଶ୍ୟ ହୋଇଥିଲେ, ସେମାନେ ଚନ୍ଦ୍ରର ହ୍ରାସ ଦେଖି ପୁନର୍ବାର ଆବିର୍ଭୂତ ହେଲେ । କିଛିଦିନ ପୂର୍ବରେ ଚନ୍ଦ୍ର

ସୌଭାଗ୍ୟମଦରେ ମତ୍ତ ହୋଇଥିଲା, ସମ୍ପ୍ରତି ବିପ୍ଲାତ ହେବାରୁ ପୁନର୍ବାର ବିନୟ ଅବଲମ୍ବନ କରି ମୃଦୁ ସୌନ୍ଦର୍ଯ୍ୟ ଦ୍ୱାରା ନକ୍ଷତ୍ରମାନଙ୍କର ଆଦର ଲାଭ କଲା ।

ଅବଶେଷେ ଏମନ୍ତ ଏକ ରଜନୀ ଆସିଲା ଯେ ତହିଁରେ ଚନ୍ଦ୍ରୋଦୟ ହେଲା ନାହିଁ । ଏଥିପୂର୍ବରୁ ଧୂମକେତୁ ଅନ୍ତର୍ହିତ ହୋଇଥିଲା । ନକ୍ଷତ୍ରମାନେ ସେ ରଜନୀରେ ସ୍ତବ୍ଧ ଭାବ ଅବଲମ୍ବନ କରି ସମୁଦାୟ ମାସର ପରିବର୍ତ୍ତନ ବିଷୟ ଚିନ୍ତା କରିବାକୁ ଲାଗିଲେ । ସେ ଚିନ୍ତାରୁ ସନ୍ତୋଷ ଓ ବିନୟ ଶିକ୍ଷା କରି ସ୍ୱ ସ୍ୱ ଭାଗ୍ୟ ଲାଗି ଈଶ୍ୱରଙ୍କ ଠାରେ କୃତଜ୍ଞ ହେଲେ ।

ତହିଁ ଆର ସନ୍ଧ୍ୟାରେ ପ୍ରତୀପଚନ୍ଦ୍ର ପୁନର୍ବାର ଦୃଷ୍ଟିଗୋଚର ହେଲା । ନକ୍ଷତ୍ରମାନେ ବିସ୍ମୟ ଏବଂ ଆହ୍ଲାଦରେ ତାହାଙ୍କୁ ଅଭିନନ୍ଦନ କଲେ । ଚନ୍ଦ୍ରାସ୍ତର ପ୍ରାକ୍କାଳେ ଗୋଟିଏ ଦିବ୍ୟ ପୁରୁଷ ଧନୁସ୍ୱରୂପ ଚନ୍ଦ୍ରର ଦୁଇ କୋଟିରେ ଚରଣ ସ୍ଥାପନ କରି ଥରେ ସମୁଦାୟ ବ୍ରହ୍ମାଣ୍ଡକୁ ଅବଲୋକନ କଲେ । ଦେଖିଲେ ତାଙ୍କ ପଛଆଡ଼େ ସୂର୍ଯ୍ୟ, ପାଦତଳେ ଚନ୍ଦ୍ର, ସମ୍ମୁଖରେ ପୃଥିବୀ ଏବଂ ମସ୍ତକୋପରି ନକ୍ଷତ୍ରରାଜି । ଏହା ଦେଖିଲାକ୍ଷଣି ଈଶ୍ୱରଙ୍କ ମହିମା ଚିନ୍ତାରେ ତାଙ୍କ ହୃଦୟ ସ୍ତବ୍ଧ ହୋଇଗଲା । ପ୍ରୀତିପୂର୍ଣ୍ଣ ଦିବ୍ୟ ସ୍ୱରରେ ସେ ଈଶ୍ୱରଙ୍କୁ ଏହି ପ୍ରକାର ଆରାଧନା କଲେ –

ସତ୍ୟଂ ଜ୍ଞାନ ମନନ୍ତଂ ବ୍ରହ୍ମ
ଆନନ୍ଦ ରୂପମମୃତଂ ଯଦ୍ୱିଭାତି
ଶାନ୍ତଂ ଶିବମ୍ ଦ୍ୱୈତଂ
ଶୁଦ୍ଧମ ପାପ ବିଦ୍ଧଂ

ସେହି ମୁହୂର୍ତ୍ତଠାରୁ ସମସ୍ତ ଗ୍ରହନକ୍ଷତ୍ରମାନେ ଏହି ସୁମହାନ୍ ସଙ୍ଗୀତ ଗାନ କରି ନିରନ୍ତର କାଳଚକ୍ରରେ ପରିଭ୍ରମଣ କରୁଅଛନ୍ତି ।

## ଶାସନ ପ୍ରଣାଳୀ

କରୁଣାମୟ ଜଗଦୀଶ୍ୱର ମନୁଷ୍ୟ ମନରେ ବଳବତୀ ଆସଙ୍ଗଲିପ୍ସା ରୋପଣ କରିଅଛନ୍ତି । ତେଣୁ ମନୁଷ୍ୟମାନେ ପରସ୍ପର ସଂମିଳିତ ହୋଇ ପୃଥିବୀରେ ଅଧିବାସ କରନ୍ତି । ଯଦି ସମସ୍ତ ଲୋକେ ନ୍ୟାୟ ପରାୟଣ, ପରୋପକାରୀ ଏବଂ ଧାର୍ମିକ ହୋଇଥାନ୍ତେ ତେବେ ସଂସାରରେ କୌଣସି ପ୍ରକାର ଶାସନ ପ୍ରଣାଳୀର ପ୍ରୟୋଜନ ହୁଅନ୍ତା ନାହିଁ । ପୁରାକାଳର କବିମାନେ ଯେଉଁ ଶାନ୍ତିମୟ ସତ୍ୟଯୁଗର ବର୍ଣ୍ଣନା କରିଅଛନ୍ତି, ତାହା ସମ୍ପୂର୍ଣ୍ଣରୂପେ କାଳ୍ପନିକ ଏବଂ ଅପ୍ରାକୃତ । ପୃଥିବୀରୁ କୌଣସି କାଳରେ ଯେ ପାପ ଏବଂ ଦୁରାଚାର ତିରୋହିତ ହୋଇଥିଲା, ତାହା ଆମ୍ଭେମାନେ ବିଶ୍ୱାସ କରିପାରୁ ନାହିଁ । ଆମ୍ଭେମାନେ ଯେତିକି ପୂର୍ବକାଳର ଇତିବୃତ୍ତ ବିଷୟ ଅନୁସନ୍ଧାନ କରିବାକୁ

ପ୍ରବୃତ୍ତ ହେଉଅଛୁଁ, ତେତିକି ତତ୍କାଳୀୟ ସମାଜର ଦୁରବସ୍ଥା ଆମ୍ଭର ମାନସ ପ୍ରତ୍ୟକ୍ଷ ହେଉଅଛି । ସର୍ବକାଳରେ ଏବଂ ପୃଥିବୀର ସର୍ବ ଅଞ୍ଚଳରେ ଅବସ୍ଥା ବୈଷମ୍ୟାଦି କାରଣରୁ କେହି କେହି ଲୋକ ଅନ୍ୟ ଲୋକମାନଙ୍କ ଉପରେ ଆକ୍ରମଣ କରନ୍ତି; ଏଣୁ ଆକ୍ରାନ୍ତ ଲୋକେ ନାନା କ୍ଷତିଗ୍ରସ୍ତ ହୋଇ ସ୍ୱାଧୀନ ଭାବରେ ଜୀବନ ଯାତ୍ରା ନିର୍ବାହ କରିବାକୁ ଅସମର୍ଥ ହୋଇଯାନ୍ତି । ସମାଜ ବିଶୃଙ୍ଖଳ ହୋଇଯାଏ । ଏହି ଶୋଚନୀୟ ଅବସ୍ଥାର ପରିହାର ନିମନ୍ତେ ଶାସନ ପ୍ରଣାଳୀର ପ୍ରୟୋଜନ ହୁଏ । ଯେଉଁ ବ୍ୟକ୍ତି ଶାସନ ପ୍ରଣାଳୀ କାର୍ଯ୍ୟ ପରିଚାଳନ କରନ୍ତି, ତାହାଙ୍କୁ ରାଜା ବୋଲାଯାଏ ଏବଂ ଯେଉଁ ନିୟମାବଳୀ ଦ୍ୱାରା ସେ କାର୍ଯ୍ୟ ନିଷ୍ପନ୍ନ ହୁଏ, ତାହା ବ୍ୟବସ୍ଥା ନାମରେ ଅବିହିତ ହୁଏ । ଏହି ପ୍ରକାର ରାଜା ଏବଂ ପ୍ରଜାର ସମ୍ବନ୍ଧ ସଂସ୍ଥାପିତ ହୁଏ ।

ପୃଥିବୀର ପ୍ରଥମାବସ୍ଥାରେ ମନୁଷ୍ୟମାନେ ଜ୍ଞାନାଭାବ ହେତୁରୁ ଅତ୍ୟନ୍ତ ଅସଭ୍ୟତାପନ୍ନ ଥିଲେ । ସେମାନଙ୍କ ମଧ୍ୟରେ ବାହୁବଳ, ଶ୍ରେଷ୍ଠତାର ଏକମାତ୍ର କାରଣ ହେଉଥିଲା । ତେଣୁ ଯେଉଁ ବ୍ୟକ୍ତି ସ୍ୱୀୟ ବଳ ଓ ସାହସଦ୍ୱାରା ଯୁଦ୍ଧରେ ବିଜୟ ଲାଭ କରୁଥିଲେ, ସେ ଅଧିପତି ପଦରେ ଅଭିଷିକ୍ତ ହେଉଥିଲେ । ଏହି ପ୍ରକାରେ ଏକ ବ୍ୟକ୍ତି ଆଧିପତ୍ୟ ସ୍ଥାପନ କରନ୍ତି ତାହାର ସନ୍ତାନସନ୍ତତି ସେହି ପଦରେ ଅଧିରୋହଣ କରୁଥିଲେ । ପ୍ରଜାମାନେ ରାଜାକୁ ଈଶ୍ୱରାବତାର ମଣି ତାଙ୍କ କାର୍ଯ୍ୟକଳାପର ଦୋଷାଦୋଷ ବିଚାରରେ ତତ୍ପର ହେଉ ନ ଥିଲେ । କାଳକ୍ରମେ ବିଦ୍ୟାଲୋଚନା ସହକାରେ, ସେମାନେ ରାଜାଙ୍କ ଗର୍ହିତ କାର୍ଯ୍ୟ ସବୁ ବୁଝିପାରିଲେ । ରାଜାଙ୍କ ଦୌରାତ୍ମ୍ୟ ସେମାନଙ୍କ ପ୍ରତି ଅସହନୀୟ ହେଲା । ଏଣୁ ସେମାନେ ରାଜବିଦ୍ରୋହ ଆଚରିଲେ, ସେହି ବିଦ୍ରୋହ, ବିପ୍ଳବରେ ପରିଣତ ହେଲା । ବିପ୍ଳବ ଦ୍ୱାରା ରାଜା ପଦଚ୍ୟୁତି ହେଲେ, ନୂତନ ପଦ୍ଧତିବିଶିଷ୍ଟ ଶାସନ ପ୍ରଣାଳୀ ପ୍ରବର୍ତ୍ତିତ ହେଲା ଅଥବା ରାଜାଙ୍କ କ୍ଷମତା କତିପୟ ନିୟମ ଦ୍ୱାରା ସୀମାବଦ୍ଧ ହେଲା । ରାଜବିପ୍ଳବ ରାଜା ପ୍ରଜା ଉଭୟଙ୍କୁ ଅମୂଲ୍ୟ ଉପଦେଶ ପ୍ରଦାନ କରଇ । ରାଜା ଯଥେଚ୍ଛାଚାରିତ୍ୱ ତ୍ୟାଗ କରି ପ୍ରଜାଙ୍କ ମନୋବୃତ୍ତି ଏବଂ ଅବସ୍ଥାର ପରିବର୍ତ୍ତନ ସହକାରେ, ଶାସନପ୍ରଣାଳୀରେ କେତେକ ଅଭିନବ ଉପଯୋଗୀ ପରିବର୍ତ୍ତନ ବିଧାନ କରନ୍ତି । ପ୍ରଜାମାନେ ମଧ୍ୟ ବିବେକାନୁମୋଦିତ ନିୟମାବଳୀର ବଶବର୍ତ୍ତୀ ହେବାକୁ ଶିକ୍ଷା କରନ୍ତି । ଇଂଲଣ୍ଡରେ କ୍ରମଓଏଲକାଳୀନ ବିପ୍ଳବ, ୧୭୮୯ ସାଲର ଫ୍ରାନ୍ସ ଦେଶ ବିପ୍ଳବ, ଆମେରିକାର ଔପନିବେଶିକ ବିପ୍ଳବ ପ୍ରଭୃତି ଏହି ବିଷୟର ଉଦାହରଣ ସ୍ଥଳ ।

ମନୁଷ୍ୟମାନଙ୍କ ଅବସ୍ଥା ବୈଷମ୍ୟାଦି ହେତୁରୁ ପୃଥିବୀର ସର୍ବଦେଶରେ କଦାପି ଏକପ୍ରକାର ଶାସନପ୍ରଣାଳୀ ପ୍ରଚଳିତ ହୋଇ ନ ପାରେ । ଆହୁରି ବକ୍ତବ୍ୟ ଯେ ମାନବ ବୁଦ୍ଧି କଳ୍ପିତ କୌଣସି ପ୍ରକାର ଶାସନପ୍ରଣାଳୀ ସମ୍ପୂର୍ଣ୍ଣରୂପେ ଦୋଷ ବିହୀନ ହେବାର ସମ୍ଭବପର ନୁହେଁ । ଏହି ମାତ୍ର ବୋଲାଯାଇପାରେ ଯେ, କେତେଗୁଡ଼ିଏ ସାଧାରଣ

ଅପରିବର୍ତ୍ତନୀୟ ସତ୍ୟ ରାଜନୀତି ଅଛି । ସର୍ବଦେଶୀୟ ସଂହିତାରେ ସେହି ସମସ୍ତ ନୀତି ବିନ୍ୟସ୍ତ ଥିବାର ଉଚିତ । ଶାସନ ପ୍ରଣାଳୀ ଯେତିକି ପ୍ରଜାମାନଙ୍କ ଅବସ୍ଥା ଏବଂ ଉନ୍ନତିର ଉପଯୋଗୀ ହୁଏ, ତେତିକି ତାହା ଉତ୍କୃଷ୍ଟ ବୋଲି ପରିଗଣିତ ହୁଏ । ଅଜ୍ଞତା ସବୁପ୍ରକାର ଅମଙ୍ଗଳର କାରଣ । ଅତଏବ ସର୍ବଦେଶୀୟ ଶାସକମାନଙ୍କର କର୍ତ୍ତବ୍ୟ ଏହି ଯେ ସେମାନେ ସ୍ୱ ସ୍ୱ ପ୍ରକାର ମାନସିକ ଉନ୍ନତି ସାଧନର ଉପାୟ ବିଧାନ କରିବେ । ସେମାନଙ୍କ ଭାବ, ରୁଚି ଏବଂ ବୁଦ୍ଧି ପରିମାର୍ଜିତ ହେଲେ, ଶାସନପ୍ରଣାଳୀର ଦୋଷ ସଂଶୋଧିତ ହୁଏ ଏବଂ ଶାସକମାନେ ଅପ୍ରତିହତରୂପେ ଅତ୍ୟାଚାର କରିପାରନ୍ତି ନାହିଁ । ରାଜା, ସମାଜ ପ୍ରତିଷ୍ଠିତ ବ୍ୟବସ୍ଥା ବିରୁଦ୍ଧ କାର୍ଯ୍ୟ କଲେ, ତାହାର ପ୍ରତିଫଳ ଭୋଗ କରନ୍ତି । ଉପରୋକ୍ତ ନିୟମ ଅନୁସାରେ ଶାସନପ୍ରଣାଳୀ କାର୍ଯ୍ୟ ପରିଚାଳିତ ହେଲେ କୌଣସି ଆଶଙ୍କାର ସମ୍ଭାବନା ନାହିଁ ।

ଇଦାନୀ ପୃଥିବୀରେ ନାନାବିଧ ଶାସନପ୍ରଣାଳୀ ପ୍ରତିଷ୍ଠିତ ଅଛି । ତନ୍ମଧ୍ୟରେ ଯଥେଚ୍ଛାଚାର ରାଜତ୍ୱ, ନିୟମବଦ୍ଧ ରାଜତ୍ୱ, ପ୍ରଜାତନ୍ତ୍ର ଶାସନପ୍ରଣାଳୀ ଏହି କେତୋଟି ପ୍ରଧାନ । ଏହି ସମସ୍ତଙ୍କର ଉତ୍ପତ୍ତି ପୂର୍ବ ନିର୍ଦ୍ଦିଷ୍ଟ ପ୍ରକାରରେ ହୋଇଅଛି । ବାରାନ୍ତରରେ ଏମାନଙ୍କ ବିବରଣ ଲେଖାଯିବ ।

## ମେଘଦୂତ

### ରାଗ – କଳହଂସକେଦାର

ଦକ୍ଷିଣ ଦେଶେ ରାମଗିରି ଶୋଭନ ।
ଯହିଁ ଅଳି ସୁନୀଳ ନଦୀ ଜୀବନ
ଜନକ-କନ୍ୟା ସ୍ନାନେ ପବିତ୍ର ଅତି ।
ନିତ୍ୟ ପଲ୍ଲବ ଯହିଁ ତରୁ ବ୍ରତତୀ । ଯେ ।
ତହିଁ କୁବେର ଶାପେ ହୋଇ ପ୍ରେରିତ ।
ରହିଲା ଜଣେ ଯକ୍ଷ ଆତୁର ଚିତ ।
ବତ୍ସର ଅନ୍ତେ ହେବ ଶାପ ମୋଚନ ।
ବତ୍ସର ଅନ୍ତେ ବାଳା ସଙ୍ଗେ ମିଳନ;
ଯାପିଲା କେତେ କାଳ ସେ ମହୀଧରେ ।
ବାଳା ବିରହୀ କାମୀ ଯକ୍ଷ କାତରେ
କ୍ରମେ ଶରୀର କାନ୍ତି ହେଲା ବିଳୟ ।
ଖସିଲା ଶୀର୍ଣ୍ଣ କରୁଁ ସ୍ୱର୍ଣ୍ଣ ବଳୟ;

ଆଷାଢ଼ ଆଦ୍ୟ ଦିନେ ତୁଙ୍ଗ ଶିଖର ।
ଗର୍ଜିତ ଗ୍ରାସିଲା ନୀଳ ଘନ ସୁନ୍ଦର ।
କ୍ରୀଡ଼ା ନିମନ୍ତେ ବିପ୍ରେ କରୀ ଯେସନ ।
ତେସନେ ମନୋହର ଦିଶଇ ଘନ ।
କେତକୀ ପ୍ରକାଶକ ଘନ ଦର୍ଶନେ ।
ଅଧୀର ଯକ୍ଷ ପୂର୍ବ ସୁଖ ସ୍ମରଣେ,
ବେଗେ ବହିଲା ଶୋକ-ଅଶ୍ରୁ ନୟନେ ।
କହି ନୁହଇ କେତେ ପାଞ୍ଚିଲା ମନେ ।
ଅଙ୍ଗନା ସଙ୍ଗେ ମଧ ଥିଲା ଲୋକର ।
ଘନାଗମେ ଆକୁଳ ହୋଏ ଅନ୍ତର;
ଭିଡୁଥିଲା ଅବଳା ହୃଦେ ଲଗାଇ ।
ଯେହୁ ପୂର୍ବରେ ତାର କଥାତ ନାହିଁ ।
ନୀଜ କୁଶଳ ବାର୍ତ୍ତା ମେଘ ହସ୍ତରେ ।
ପ୍ରେରିବ ପ୍ରିୟା ପାଶେ ନିଜ ନଗରେ;
ପାଇବାରତା କାନ୍ତା ହୋଇବ ସ୍ଥିର ।
ଆଶା ପ୍ରଭା ଶୋଷିବ ତା ନେତ୍ର ନୀର ।
ଏ ଭାବେ ପ୍ରାଣ କାନ୍ତା ଦୁଃଖେ ବିକଳ ।
ଅର୍ଘ୍ୟସ୍ୱରୂପେ ଦେଲା ନିର୍ଝର ଜଳ;
ପୂଜିଣ ଜୀମୂତଙ୍କୁ କୁଟଜ ଆଣି ।
ତା ଅନ୍ତେ ପଚାରଇ ସ୍ୱାଗତ ବାଣୀ ।
ଧୂମ ଜ୍ୟୋତି ସଲିଳ ବାୟୁ ରଚିତ ।
କାହିଁ ଜୀମୂତ ସେହୁ ଜୀବ ବର୍ଜିତ;
ମାନବ ବହନୀୟ କାହିଁ ସନ୍ଦେଶ ।
ଯକ୍ଷ ନ ବିଚାରିଲା ଏଥି ବିଶେଷ ।
ଉତ୍କଣ୍ଠାକୁଳ ହୋଇ ଘନକୁ ଭାଷେ ।
ସଜୀବ ମଣି ହୃଦ କଥା ପ୍ରକାଶେ;
ଯାକୁ ବିନ୍ଧଇ ନିତ୍ୟ ଅନଙ୍ଗ ବାଣ ।
ଚେତନ ଅଚେତନ ତାର ସମାନ ।
ପୁଷ୍କର ଆବର୍ତ୍ତକ ବଂଶେ ସମ୍ଭୂତ ।
ବିଖ୍ୟାତ ଧରାତଳେ ଅଟ ଜୀମୂତ;

କାମଚାରି ସଚିବ ତୁମ୍ଭେ ଇନ୍ଦ୍ରର ।
ଦୂରବନ୍ଧୁ ମୁଁ ମୋତେ କରୁଣା କର ।
ବିଫଳା ହୋଏ ଯେବେ ମୋହୋ କାମନା ।
ଜଳଦ ! ନ କରଇଁ ତହିଁ ଭାବନା,
ଫଳବତୀ ପ୍ରାର୍ଥନା ଅଧମ ଠାରେ ।
ନିନ୍ଦନୀୟ ଅଟଇ ମୋହୋ ବିଚାରେ ।
ତାପିତ ଜନଙ୍କର ଅଟ ଶରଣ ।
ହେ ଜଳଦ ! ରଖ ମୋ ପ୍ରିୟା ଜୀବନ;
ଧନପତି ଶାପେ ମୁଁ କାତର ଅତି ।
ମୋ ବିନା କାତର ସେ ବର ଯୁବତୀ ।
ଯାଅ ମୋ ବାର୍ତ୍ତା ଘେନି ହେ ନୀରଧର ।
ଅଳକା ନଗରୀ କି, ତହିଁ ସୁନ୍ଦର;
ବହିରୁଦ୍ୟାନେ ଛନ୍ତି ଶଶିଶେଖର ।
ସେ ଶଶି କରେ ଧଳା ସୌଧନିକର ।
ତୁମ୍ଭ ଦର୍ଶନେ ପାନ୍ଥ ବନିତା କୁଳ ।
ହୃଦୟେ ବିକାଶିବ ଆଶା ମୁକୁଳ;
ଧରିଣ ବେଣୀ ବାମ କର କମଳେ ।
ଦେଖିବେ ଗତି ତୋର ଅମ୍ବରତଳେ ।
କେ କ୍ରୂର ଏ କାଳରେ ବିଦେଶେ ଥାଇ ।
ବନିତା ମନ ଖେଦ ହ୍ରଦେ ବୁଡ଼ାଇ,
ନିଶ୍ଚିନ୍ତରେ ରହଇ କହ ମୋ ବିନା ? ।
ପରାଧୀନର ଘନ ! ଏ ଗତି ସିନା !
ଅନୁକୂଳ ସମୀର ଧୀରେ ବହଇ ।
ବାମେ ଚାତକ ମନୋହର କୂଜଇ;
ତୁମ୍ଭ ଉଦୟେ ତାର ଗର୍ବ ଉଦିତ ।
ଆକାଶ ଝଙ୍କାରଇ ଏଣୁ ତା ଗୀତ,
ତୋର ଆଗମ କାଳେ ଯାହା ଉପୃତ୍ତି ।
ତୋତେ ସେବିବ ସେହି ବକ ପଙ୍କତି;*

* ବର୍ଷାକାଳରେ ବକମାନଙ୍କର ଗର୍ଭାଧାନ ହୁଏ ।

ଧବଳ ପୁଣ୍ଡରୀକ ମାଳ ପରାୟେ ।
ଦିଶିବେ ଅଭିରାମ ତୋ ନୀଳ କାୟେ ।
ଶ୍ରୁତିମଧୁର ତୋର ନାଦ ଗଭୀର ।
(ଭୂଷଇ ଯାହା ଧରାଦେବୀ ଶରୀର
ନବକଦଳୀଦଳ ଶ୍ୟାମଳ ବାସେ) ।
ମିଳାଇବ ତୋ ସଙ୍ଗୀ ଆଣି ଆକାଶେ;
ରାଜହଂସେ ଶୁଣିଲେ ତୋର ଗର୍ଜନ ।
ନୀଳାମ୍ବୁ ମାନସକୁ ଯିବେ ବହନ;
ପାଥେୟରୂପେ ଘେନି ମୃଦୁ ମୃଣାଳ ।
କୈଳାସଯାଏଁ ସଙ୍ଗେ ଯିବେ ମରାଳ ।
ପ୍ରିୟ ସଖା ତୋହୋର ଏ ଧରାଧର ।
ଦେହେ ଧରନ୍ତି ରାମଚନ୍ଦ୍ର ପୟର ।*
ଏଣୁ ଅଟନ୍ତି ଗିରି ଅତି ପବିତ୍ର ।
ମିତ୍ର ତୁମ୍ଭର ଗିରି ନୋହେ ବିଚିତ୍ର ।
ଉଭୟେ ଯଥାକାଳେ ହେଲେ ମିଳିତ ।
ପ୍ରେମଅଶ୍ରୁ ପ୍ରବାହ ବହେ ତୁରିତ ।
ଅମ୍ବୁଦ ! ଗିରି ଠାରେ ମାଗ ମେଲାଣି ।
କାତର ଅଟଇ ମୂରଖ ମୋ ବାଣୀ ।
ତୁମ୍ଭ ଗମନ ଯୋଗ୍ୟ ମାର୍ଗ ନିର୍ଦ୍ଦେଶ ।
କରଇଁ, ଅବଧାନ ହେଉ ବିଶେଷ;
ଆମ୍ଭ ସନ୍ଦେଶ ପୁଣି କହିବି ପରେ ।
ଶୁଣି ହରଷ ଜାତ ହେବ ଅନ୍ତରେ ।
କ୍ଳାନ୍ତ ହୋଇଲେ ଗିରି ଶୃଙ୍ଗେ ରହିବ ।
କ୍ଷୀଣ ହୋଇଲେ ନଦୀ ବାରି ସେବିବ;
ଏଣୁ ହୋଇବ ସୁଖେ ତୁମ୍ଭ ଗମନ ।
କଷ୍ଟ ନୋହିବ ମୋହ ବାଞ୍ଛା ପୂରଣ ।
ଘନ ବେତସ ପୂର୍ଣ୍ଣ ଏ ସ୍ଥାନ ତ୍ୟଜି ।
ବେଗେ ଗଗନେ ଉଠ ଧୀରେ ଗରଜି ।

---

* ପୟର = ପଦାଙ୍କ

ଚକିତ ନୟନରେ ସିଦ୍ଧ ରମଣୀ ।
ଅନାଇବେ ତୁମ୍ଭକୁ ବିସ୍ମୟ ମଣି;
ପରସ୍ପରେ ଭାଷିବେ "ଦେଖ ଗୋ ସହି !
କିଅବା ବାୟୁ ଗିରି ଶୃଙ୍ଗ ହରଇ"
ଅନମ୍ବର ମାର୍ଗରେ ଦିଗ ବାରଣେ ।
ତେଜିବେ କର ଗର୍ବ ତୁମ୍ଭ ଦର୍ଶନେ ।
ବଲ୍ମୀକ ଶିଖାଗ୍ରରୁ ହୋଇ ବାହାର ।
ସୁରେନ୍ଦ୍ର-ଚାପ ଲତା ଦିଶେ ବାହାର;
ରତନ-କାନ୍ତି-ସ୍ରୋତ ଯେହ୍ନେ ଉଚ୍ଛଳେ ।
କି ଶୋଭା ପାଉଅଛି ତୋ ଉରସ୍ତଳେ !
ଏହି ରୂପେ ଜଳଦ ! କୃଷ୍ଣ ଦେହରେ ।
ମୟୂର ପୁଚ୍ଛ ଶୋଭା ନୟନ ହରେ;
ଯାହା ରୂପେ ମଜ୍ଜିଲା ଗୋପିକା ମନ ।
ତାହା ଉପମାପାଇଁ ତୁମ୍ଭେ ଭାଜନ ।
କ୍ଷମତା ଅଛି ତୋର ଶସ୍ୟ ବର୍ଦ୍ଧନେ ।
ଏଣୁ କୃଷକ ବାଳା ସ୍ଥିର ଲୋଚନେ,
ଦେଖିବେ ତୋ ମୋହନ ଛବି ଆକାଶେ ।
ଅନଭିଜ୍ଞ ସରଳା ନେତ୍ର ବିଳାସେ
ମାନକ୍ଷେତ୍ରକୁ ଘନ ! କର ପ୍ରୟାନ ।
ସୀର-କର୍ଷିଣ-ଜାତ ମୃତ୍ତିକା ଘ୍ରାଣ
ତୋଷିବ ନାସା ତୋର, ତହୁଁ ଉତ୍ତାରେ ।
ଲଘୁଗତି ଗମିବ ଶୂନ୍ୟ ସାଗରେ ।
ଗିରିଙ୍କର ତୁ ଅଟୁ ମଙ୍ଗଳକାରୀ ।
ନିଭାଉ ଦାବାନଳ ବିସର୍ଜିବାରି,
ଶ୍ରାନ୍ତ ହୋଇଣ, ଆମ୍ରକୁଟ* ସଦନେ ।
ଗଲେ, ସେବିବେ ଗିରି ଅତି ଯତନେ ।
କ୍ଷୁଦ୍ରେ ଭଦ୍ର ଭବନେ ନେଲେ ଶରଣ ।
ନିରାଶ ନ ହୁଅନ୍ତି ଯାଚକଗଣ;

* ଆମ୍ରକୂଟ – ଏକ ପର୍ବତର ନାମ ।

ଗିରି ମହତ ପୁଣି ତୁ ହିତକର ।
ମସ୍ତକେ ସ୍ଥାନ ତୋତେ ଦେବେ ଭୂଧର ।
ସେ କାଳେ ଦାବବହ୍ନି ଗିରି କାନନେ ।
ଜଳୁଥିବ, ଯଦ୍ୟପି, ଜଳ ବର୍ଷଣେ ।
ଲିଭାଇବ ଅନଳ ସଂଶୟ ନାହିଁ ।
ମହତ ଲୋକର ଏସୁରୀତି ଭାଇ !
ମହତ ଜନଠାରେ କରୁଣା କଲେ ।
ସେ କରୁଣା ନ ଯାଏ କେବେ ବିଫଳେ ।
ଆଶୁ ସୁଫଳ ଜାତ ନିଶ୍ଚେ ହୁଅଇ ।
କରୁଣା ପ୍ରଭା ପୁଣି ପ୍ରତି ଫଳଇ ।
ରସାଳଚୟ ସ୍ୱର୍ଣ୍ଣ କାନ୍ତି ଫଳରେ ।
ବିନତ ହୋଇଥିବ ଗିରି ପ୍ରାନ୍ତରେ;
ତୁ ପୁଣି ଗିରିଶିରେ ବସିବୁ ଯାଇ ।
ଦୂରୁଁ ସୁର ମିଥୁନବିମାନେ ଥାଇ ।
ମନୋରଞ୍ଜନ ଗିରି ଶୋଭା ଦେଖିବେ ।
ନଗଙ୍କୁ ପୃଥ୍ୱୀସ୍ତନ ବୋଲି ମଣିବେ,
ସୁମେରୁଶିରେ ନୀଳକାନ୍ତ ଶିଖର ।
ପରାୟେ ଦିଶୁଥିବ ତୋ କଳେବର ।
ବନଚର ଲଳନା ରତି ନିଳୟ ।
ରାଜଇକୁଞ୍ଜ, ତହିଁ ଅଳ୍ପ ସମୟ,
ରହି, ଆସାରଦାନେ ନବଜୀବନ ।
ତରୁ ଦଳକୁ ଦେଇ, କର ଗମନ ।
ଏଥୁ ଅନ୍ତେ ଅଗ୍ରତେ, ରେବା* ଦିଶଇ ।
ଶିଳା ବିଷମ ବିନ୍ଧ୍ୟ ପାଦେ ବହଇ;
କରି-ଅଙ୍ଗେ ରଚିତ ଭୂଇଁ ଯେସନ ।
ତେସନ ନର୍ମଦା ସୁ-ରମ୍ୟ ଦର୍ଶନ ।
ଅବଗାହନ୍ତି ବନ୍ୟ ବାରଣେ ତହିଁ ।
ଗଣ୍ଡରୁ ମଦ ସ୍ରବି ଜଳେ ମିଶଇ;

* ରେବା – ନର୍ମଦା ନଦୀ । ବିନ୍ଧ୍ୟ ଏବଂ ସପ୍ତପୁର ଏହି ଦୁଇ ଗିରି ମଧ୍ୟବର୍ତ୍ତୀ ଉପତ୍ୟକାରେ ରେବା ପ୍ରବାହିତ ହେଉଅଛି ।

ଏଣୁ ନର୍ମଦା ନୀର ନିତ୍ୟ ବାଂସିତ ।
ଆବରେ ସେ ସଲିଳ ନେବୁ ତ୍ୱରିତ ।
ସବଳ କାୟା ତୋର ଦେଖି ପବନ ।
ତୁଚ୍ଛ ନ ମଣି ଦେବେ ପୃଷ୍ଠ ଆସନ;
ସର୍ବତ୍ର ବଳହୀନ ହିତ ଆଦର ।
ବଳୀ ଲଭଇ ମାନ ରୀତି ଭବର ।
ହରିତ ପୀତ ନୀପ କୁସୁମେ ବସି ।
ମଧୁ ପିଅଇ ଭୃଙ୍ଗ ସୁରସେ ରସୀ,
ଭ୍ରମନ୍ତି ମୃଗୀକୁଳ ସଦା ଆତୁର ।
ଭୁଞ୍ଜନ୍ତି ନବଜାତ ତୃଣ ଅଙ୍କୁର,
ପ୍ରମତ୍ତ ମତଙ୍ଗଜ ଶୁଣ୍ଡେ କାନନେ ।
ଘେନଇ ଭୂମି ଗନ୍ଧ ଶ୍ୱାସ ପବନେ,
ଚାତକେ ଊର୍ଦ୍ଧ୍ୱମୁଖେ ତରୁ ଉପରେ ।
ଅମ୍ବୁ-କଣା ଯାଚନ୍ତି ଆରତ ସ୍ୱରେ,
ତୋହୋ କୃପାରେ ଧରା ଦେହ ଶୀତଳ ।
ନବପଲ୍ଲବ ମୟ ତରୁ ସଫଳ,
ସାନନ୍ଦ ତୃଣଜୀବୀ ଏକାଳ ପାଇ ।
ଶୁଝିବେ ତୋହୋ ଋଣ ମାର୍ଗ ଦର୍ଶାଇ ।
ବାରି ଶୀକର ଯେବେ ତୋ ଦେହୁ ଖସେ ।
ଉଡ଼ନ୍ତି ଚାତକାଳୀ ନଭେ ରଭସେ
ଏକାଳେ ସିଦ୍ଧଗଣ ବନିତା ସଙ୍ଗେ ।
ଚାତକ ଶ୍ରେଣୀ ଦେଖି ହସିବେ ରଙ୍ଗେ
ସରଳା ମନୋରମା ସିଦ୍ଧ ରମଣୀ ।
ଅଙ୍ଗୁଳି ନିର୍ଦ୍ଦେଶରେ ବଳକା ଗଣି
ଚାହୁଁଥିବେ କାନ୍ତକୁ ସ୍ନିଗ୍ଧ ଲୋଚନେ ।
ସେକାଳେ ଖତମାଳ ! ଭୀଷଣ ସ୍ୱନେ,
ପୂରିବୁ ବନଭୂମି, କୌତୁକେ ଭୟେ ।
ଭିଡ଼ିବେ କାନ୍ତ ତନୁ ବାଳା ନିଶ୍ଚୟେ,

ସିଦ୍ଧ ମାନସ ତହୁଁ ତୁଷ୍ଟ ହୋଇବ ।
ତୋ ଆଗମନକୁ ସେ ଶ୍ଳାଘ୍ୟ ମଣିବ ।
ହେ ନୀଳ ନୀରଧର ! ତୁମ୍ଭ ଗମନେ ।
ବିଳମ୍ୱ ଉପୁଜିବ ଭାଳଇ ମନେ
ତୁଙ୍ଗ ଅଚଳାବଳୀ ମାର୍ଗେ ରାଜିତ ।
ଅର୍ଜ୍ଜୁନ ପୁଷ୍ପ ବାସେ ଦେହ ବାସିତ;
ସେ ସୌରଭ କର୍ଷଣେ ଲବ୍ଧ ହୃଦୟ ।
ଗମିବ ଶୈଳେ ଘନ ! ବହୁ ସମୟ;
କଳାପି କଳ କେକା ତାପରେ ଶୁଣି ।
ମନେ ପଡ଼ିବ ପୁଣି ମୋର ମାଗୁଣି ।
*ଦଶାର୍ଣ୍ଣ ଦେଶ ଘନ ଦିଶେ ତା ପରେ ।
ଏଦେଶ ସମାକୁଳ ବଟଦ୍ରୁମରେ;
ଦ୍ରୁମେ ବାୟସ ତାର ନୀଡ଼ ରଚନ୍ତି ।
ଏ କାରଣେ ପ୍ରାବୃଟେ ସୁଖେ ରହନ୍ତି,
କେତକୀ ଜାଲ ବୃତ୍ତି ତହିଁ କାନନ ।
କେତକୀ ପରାଗରେ ପାଣ୍ଡୁ ବରଣ,

(କ୍ରମଶଃ)

## ବିବିଧ ସମ୍ବାଦ

ପ୍ରାୟ ଦୁଇ ସପ୍ତାହ ହେବ ବ୍ରାହ୍ମଧର୍ମ ପ୍ରଚାରକ ଶ୍ରୀଯୁକ୍ତ ବାବୁ ଅଘୋରନାଥ ଗୁପ୍ତ ଏ ନଗରରେ ଉପସ୍ଥିତ ହୋଇଅଛନ୍ତି । ଏ ଜଣେ ପ୍ରକୃତ ବ୍ରାହ୍ମ, ଧାର୍ମିକ ଓ ସଦ୍‌ବକ୍ତା । ଦୁଇ ତିନିଥର ବ୍ରାହ୍ମଭ୍ରାତାମାନଙ୍କୁ ଡକାଇ ଅତି ଉତ୍ତମରୂପରେ ଉପଦେଶ ଦେଇଥିଲେ । ଗତ ୨୩ ତାରିଖ ବୁଧବାର ରାତ୍ର ୬ ଘଣ୍ଟାଠାରୁ ୯ ଘଣ୍ଟା ପର୍ଯ୍ୟନ୍ତ ଇଂରାଜୀ ଇସ୍କୁଲ ଗୃହରେ ମନୁଷ୍ୟ ଜୀବନର ପ୍ରକୃତ ଉଦ୍ଦେଶ୍ୟ ବିଷୟକ ଏକ ସୁଦୀର୍ଘ ବକ୍ତୃତା କରିଥିଲେ । ସେଠାରେ ପ୍ରାୟ ଦେଡ଼ଶତ ଲୋକ ଉପସ୍ଥିତ ଥିଲେ । ସମସ୍ତେ ଏକମନରେ ବକ୍ତୃତା ଶୁଣି ଅତିଶୟ ପ୍ରୀତ ହୋଇଅଛନ୍ତି ।

---

* ଦଶାର୍ଣ୍ଣ – ଆର୍ଯ୍ୟାବର୍ତ୍ତାନ୍ତର୍ଭୂତ ଦେଶବିଶେଷ ।

## ଦୁର୍ଘଟନା ।

ଆମ୍ଭେମାନେ କେତୋଟି ଶୋକସମ୍ବାଦ ପାଠକମାନଙ୍କୁ ଜଣାଉଁଅଛୁଁ । ବୋଧକରୁଁ ପାଠକେ ଶୁଣି ଆମ୍ଭମାନଙ୍କ ଦୁଃଖରେ ଦୁଃଖିତ ହେବେ । ଆମ୍ଭମାନଙ୍କର ଦୟାଳୁ ମେଜଷ୍ଟରସାହେବ ଯାତ୍ରୀମାନଙ୍କୁ ସହର ମଧ ଦେଇ ଆସିବାକୁ ନ ଦେବାରୁ ଏବର୍ଷ ଗ୍ରୀଷ୍ମକାଳରେ କୌଣସି ସଂକ୍ରାମକ ରୋଗର ପ୍ରାଦୁର୍ଭାବ ନ ଥିଲା । ଏଠାକୁ ଖଣ୍ଡିଏ ଷ୍ଟିମାର ଯାତାୟାତ କରିବାରୁ ଯାତ୍ରୀମାନେ ସହର ମଧ ଦେଇ ଯିବାଆସିବା କଲେ, ତେଣୁ ଓଲାଓଠା ରୋଗ ସହର ମଧରେ ପ୍ରବେଶ ହେଲା । ଏକେ ବୃଷ୍ଟିକାଳ ଯାହାକୁ ଧରୁଅଛି ପ୍ରାୟ କେହି ବଞ୍ଚୁ ନାହାନ୍ତି ।

ଗତ ୨୦ ତାରିଖ ରବିବାର ଆମ୍ଭମାନଙ୍କର ଅତ୍ୟନ୍ତ ଦୁଃଖର ସମୟ । ଏଦିନ ପ୍ରାତଃକାଳରୁ ଶଯ୍ୟାରୁ ଉଠି ଗୋଟିଏ ଦୁର୍ଘଟନା କଥା ଶୁଣିଲୁଁ ଏବଂ ରାତ୍ରିରେ ଆହୁରି ଗୋଟିଏ ଶୋକସମ୍ବାଦ ପାଇ ଅତ୍ୟନ୍ତ ଦୁଃଖିତ ହେଲୁଁ ।

ଆମ୍ଭମାନଙ୍କର ପରମାତ୍ମୀୟ ୰ ସୁନ୍ଦରନାରାୟଣ ରାୟ ଓଲାଓଠା ରୋଗଗ୍ରସ୍ତ ହୋଇ ଉକ୍ତ ତାରିଖ ରାତ୍ରରେ ଅକାଳେ ମୃତ୍ୟୁମୁଖରେ ପତିତ ହୋଇଅଛନ୍ତି । ସୁନ୍ଦରବାବୁ ଜଣେ ପ୍ରକୃତ ହିନ୍ଦୁ, ସ୍ପଷ୍ଟ ବକ୍ତା, ପରିଶ୍ରମୀ, କାର୍ଯ୍ୟଦକ୍ଷ, ପରୋପକାରୀ ଓ ମିତବ୍ୟୟୀ ଥିଲେ । ପାରସ୍ୟଭାଷାରେ ଏହାଙ୍କର ଉତ୍ତମ ପ୍ରତିପତ୍ତି ଥିଲା । ଚିକିତ୍ସକମାନେ ସଂକ୍ରାମକ ରୋଗୀଙ୍କଠାକୁ ଯିବାକୁ ନିଷେଧ କରନ୍ତି, ଏ ଭୟରୁ ଅନେକେ ରୋଗଗ୍ରସ୍ତ ବ୍ୟକ୍ତିଙ୍କଠାକୁ ଯାଆନ୍ତି ନାହିଁ; କିନ୍ତୁ ସୁନ୍ଦରବାବୁଙ୍କଠାରେ ତାହାର ବିପରୀତ ଦେଖିଲୁଁ । ଭଦ୍ରାଭଦ୍ର ଯାବତୀୟ ଲୋକ ଉପସ୍ଥିତ ହୋଇ ଦେଖାସାକ୍ଷାତ୍ କରୁଥାନ୍ତି । ଡାକ୍ତରମାନେ ଅନେକ ଯତ୍ନ କଲେ, ନାନାବିଧ ଔଷଧ ଦେଲେ କିନ୍ତୁ ନିଷ୍ଠୁର ଶମନ କିଛି ହିଁ ଶୁଣିଲା ନାହିଁ । ଏହାଙ୍କର ମୃତ୍ୟୁସମ୍ବାଦ ଶୁଣି ଏଠାକାର ଯାବତୀୟ ଲୋକେ ଦୁଃଖିତ ହୋଇ ଅଛନ୍ତି । କିଲେଟରସାହେବ ପୀଡ଼ିତାବସ୍ଥାରେ ଦୁଇ ତିନିଥର ଦେଖିବାକୁ ଆସିଥିଲେ ଏବଂ ମୃତ୍ୟୁସମ୍ବାଦ ପାଇ ଏମନ୍ତ ଦୁଃଖିତ ହୋଇଥିଲେ ଯେ ଦିନେ ସମ୍ପୂର୍ଣ୍ଣ କଚେରି କରିପାରିଲେ ନାହିଁ । ସୁନ୍ଦରବାବୁ ବାଲେଶ୍ୱରର ସଦର କାନନଗୋଇ ଥିଲେ, ଅତିଶୀଘ୍ର କିଲେଟରୀ ସେରେସ୍ତାଦାର ହେବାର କଥା ହୋଇଥିଲା; କିନ୍ତୁ ପରମେଶ୍ୱରଙ୍କର କେମନ୍ତ ବିଡ଼ମ୍ବନା, ଅକାଳରେ ମୃତ୍ୟୁମୁଖରେ ପତିତ ହେଲେ !!!

ଫୌଜଦାରୀର ଭୂତପୂର୍ବ ସେରସ୍ତାଦାର ୰ ପୁରୁଷୋତ୍ତମ ଦାସଙ୍କର ଉକ୍ତ ଦିବସ ବେଳ ୭ ଘଣ୍ଟା ସମୟରେ ଆଶ୍ଚର୍ଯ୍ୟରୂପରେ ମୃତ୍ୟୁ ହୋଇଅଛି । ଏହାଙ୍କର ବୟଃକ୍ରମ

୬୯ ବର୍ଷ ହୋଇଥିଲା; ମାତ୍ର ଏମନ୍ତ ସବଳ ଥିଲେ ଯେ ଲୋକେ ଦେଖିଲେ ୬୦ କରୁ ବେଶି ବୋଲୁ ନ ଥିଲେ। କୌଣସି ଉତ୍କଟ ରୋଗ ନ ଥିଲା କେବଳ ଦୁଇ ତିନି ଦିନ ପୂର୍ବରୁ ପ୍ରାତଃକାଳରେ ଦୁଇ ଏକ ଘଣ୍ଟା ପର୍ଯ୍ୟନ୍ତ ଛାତିକି ଗୋଟାଏ ବାତ ଉଠାଉ ଥିଲା। ସେଦିନ ସଖାଳୁ ଉଠି ପ୍ରାତଃକ୍ରିୟା କରିବାକୁ ଯାଇଥିଲେ, ଆସି ହାତମାଟି କରି ବସିଅଛନ୍ତି ଏମନ୍ତ ସମୟରେ ଛାତିକି ବାତ ଉଠିଲା। ପୁତ୍ର ନାମ ଧରି ଡାକି ଅଜ୍ଞାନ ହୋଇଗଲେ। ଲୋକ ରୁଣ୍ଡ ହୋଇ ପଡ଼ିଲେ, ଅନେକ ଚେଷ୍ଟା କଲେ; କିନ୍ତୁ ଆଉ ଜ୍ଞାନ ହେଲା ନାହିଁ। ଅଳ୍ପକ୍ଷଣ ମଧ୍ୟରେ ମୃତ୍ୟୁ ହେଲା। ପୁରୁଷୋତ୍ତମବାବୁ ଯଥାର୍ଥ ହିନ୍ଦୁ ଥିଲେ ଏହାଙ୍କର ଅକ୍ଳେଶ ମୃତ୍ୟୁର ସମ୍ବାଦ ପାଇ ଲୋକେ ଧନ୍ୟବାଦ ଦେଉ ଅଛନ୍ତି।

—

**ପ୍ରଥମ ବର୍ଷ ନବମ ସଂଖ୍ୟା**
**ସେପ୍ଟେମ୍ବର, ୧୮୭୩**

# ଇଟାଲୀୟ ଯୁବା

## ପୂର୍ବ ପ୍ରକାଶିତ ଉତ୍ତାରୁ

ଆମ୍ଭକୁ ସ୍ନେହ କରନ୍ତି ବୋଲି ଆମ୍ଭେ ପ୍ରଥମରେ କି ରୂପେ ବୁଝିପାରିଲୁଁ ତାହା ଆମ୍ଭର ସ୍ମରଣ ହେଉ ନାହିଁ । କି ପ୍ରକାରେ ଏହି ଭାବ ଆମ୍ଭ ମନରେ ପ୍ରବିଷ୍ଟ ହେଲା କହି ନ ପାରୁଁ । ଦୁହେଁ ନବୀନ ବୟସ୍କ ଥିଲୁଁ । ସବୁବେଳେ ପରସ୍ପର ବାକ୍ୟାଳାପ କରୁଥିଲୁଁ, ଏକରୂପ କର୍ମରେ ସର୍ବଦା ରତ ଥିଲୁଁ । ସଙ୍ଗୀତ, କାବ୍ୟାଧ୍ୟୟନ, ଚିତ୍ରବିଦ୍ୟା ଶିକ୍ଷା ଆମ୍ଭର ପ୍ରଧାନ ବିନୋଦନ ଥିଲା । ସେ ସମୟରେ ଆମ୍ଭେ ଯେଉଁ ସ୍ଥାନରେ ଅବସ୍ଥାନ କରୁଥିଲୁଁ, ସେହି ସ୍ଥାନ ମନୋହର ପୁଣି ନିର୍ଜନ ହେବାରୁ ଅଧିକତର ପ୍ରୀତିକର ହୋଇଥିଲା ଏପରି ସ୍ଥଳ, ଏପରି ଅବସ୍ଥାରେ ଯେ ପରସ୍ପର ପ୍ରୀତି ଜନ୍ମିବ ଏଥିରେ ବିଚିତ୍ର କଅଣ ?

ଆହା କି ସୁଖର ସମୟ ! କି ଅନିର୍ବଚନୀୟ ଆନନ୍ଦର ସମୟ ! ମନୁଷ୍ୟମାନଙ୍କ ସୁଖ ଯେବେ ଚିରସ୍ଥାୟୀ ହୁଅନ୍ତା ତାହା ହେଲେ ଇହକାଳରେ ପରକାଳର ସୁଖ ଲବ୍ଧ ହୁଅନ୍ତା । ବିଶ୍ୱନିୟନ୍ତାର ଏପରି ନିୟମ ନୁହେଁ । ନରମାନଙ୍କ ସୌଭାଗ୍ୟ କ୍ଷଣଭଙ୍ଗୁର । ଆମ୍ଭକୁ ସେହି ସ୍ଥାନ ସ୍ୱର୍ଗବତ୍ ବୋଧ ହେଲା । କିପାଇଁ ଅବା ନ ହେବ ? ଏପରି ରମଣୀ, ଏପରି ପ୍ରଣୟମୟୀ ରମଣୀର ସହବାସରେ କାହାର ମନଃ ହର୍ଷ ସମୁଦ୍ରରେ ନିମଗ୍ନ ନ ହୁଏ ? ସେହି କାମିନୀରତ୍ନକୁ ସଙ୍ଗେ ଘେନି ଆମ୍ଭେ କେଡ଼େ କେଡ଼େ ସ୍ଥାନରେ ପରିଭ୍ରମଣ କରୁଥିଲୁଁ; ସମୁଦ୍ର କୂଳରେ ଚନ୍ଦ୍ରୋଦୟ ଦେଖି ଦୁଇଜଣ କେଡ଼େ ଆନନ୍ଦ ଅନୁଭବ କରୁଥିଲୁଁ । ଚଞ୍ଚଳ ଅଚଳପ୍ରାୟ ସାଗରର ଉତ୍ତଙ୍ଗ ତରଙ୍ଗମାଳା ଦେଖୁଥିଲୁଁ । ସେହି ସର୍ବାଙ୍ଗ ସୁନ୍ଦରୀ କେବେ କେବେ ପର୍ବତ ଆରୋହଣ କରିବାକୁ ଅଭିଳାଷ କରନ୍ତେ ଆମ୍ଭେ ତାହାଙ୍କ ସଙ୍ଗେ ଗମନ କରୁଥିଲୁଁ । ସେ ଆମ୍ଭ ବାମହସ୍ତ ଧରି ଚଳୁଥିଲେ । ଦୁଇଜଣ ଘନ ଅରଣ୍ୟରେ ପ୍ରବିଷ୍ଟ ହୋଇ ମଧୁରକଣ୍ଠ ପକ୍ଷୀମାନଙ୍କର ସଙ୍ଗୀତ ଶୁଣୁଥିଲୁଁ । ଆହା ! କିଛି ହିଁ ଚିରସ୍ଥାୟୀ ନୁହେ, ଦିନ ଗଲେ ରାତ୍ର ହୁଅଇ, ପ୍ରଖର ରୌଦ୍ର ଉତ୍ତାରେ ବୃଷ୍ଟି ହୁଅଇ ଜଗତର ଏହି ନୀତି ଆମ୍ଭେ ପାସୋରି ଗଲୁଁ ।

ଏହି ସ୍ୱପ୍ନତୁଲ୍ୟ ଅବସ୍ଥାରେ କେତେକ ଦିନ ଗଲା । ଦୁହିଁଙ୍କ ମଧ୍ୟରେ ଆଗେ ଆମ୍ଭର ଚେତନା ହେଲା । ଆମ୍ଭେ ଲରାର ମନୋହରଣ କରିଥିଲୁଁ; ମାତ୍ର ସେଥିରୁ ଆମ୍ଭର କିଛି ଭାବୀ ଶୁଭ ସମ୍ଭାବନା ନ ଥିଲା । ଆମ୍ଭେ ଦରିଦ୍ର ଥିଲୁଁ । ଧନହୀନ ହୋଇ ଲରାର ପାଣି ଗ୍ରହଣ କରିବା ଆଶା ଦୁରାଶା ମାତ୍ର । ଆମ୍ଭଠାରେ ଲରାଙ୍କର ଅତ୍ୟନ୍ତ ସ୍ନେହ ଥିଲା; ତାଙ୍କ ପାଣିପୀଡ଼ନ କରି ତାହାଙ୍କୁ ଚିରଦୁଃଖିନୀ କରିବାର ଆମ୍ଭ ପକ୍ଷରେ କି ରୂପରେ

ନ୍ୟାୟସଙ୍ଗତ ହୋଇପାରେ ? ଆମ୍ଭେ କଅଣ ଏହିରୂପେ ତାହାଙ୍କ ପ୍ରଣୟର ପରିଶୋଧ କରନ୍ତୁ ? ସେହି ଉଦ୍ୟାନର ଅଧିକାରୀ ଆମ୍ଭ ପ୍ରଭୁ ଆମ୍ଭର ଯଥେଷ୍ଟ ଆଦର କରୁଥିଲେ । ଆମ୍ଭେ କଅଣ ଏହି ରୂପେ ତାହାଙ୍କ ଠାରେ କୃତଜ୍ଞତା ପ୍ରଦର୍ଶନ କରନ୍ତୁ ?

ଏତେଦିନେ ଆମ୍ଭେ ବୁଝିଲୁ ଯେ, ଅକୃତ୍ରିମ ପ୍ରଣୟରେ ସୁଦ୍ଧା ଅନିଷ୍ଟ ଜନ୍ମିପାରେ । ଚିନ୍ତାକୀଟ ଥରକୁଥର ଆମ୍ଭ ହୃଦୟ କଲି କଟିଲା । କୌଣସି ଗୁରୁତର ଅପରାଧ କଲା ପରେ ଅପରାଧୀର ମନ ଯେପରି ଅସ୍ଥିର ହେଉଥାଏ, ଆମ୍ଭ ମନ ସେହିପରି ହେଲା । କ୍ଷିପ୍ତପ୍ରାୟ ଏଣେତେଣେ ବୁଲିବାକୁ ଲାଗିଲୁ । ଚୋର ମନ ଯେମନ୍ତ ନିତି ଶଙ୍କିତ ହୁଏ ଆମ୍ଭ ମନ ମଧ୍ୟ ସେହିପରି ହେଲା । ପ୍ରଭୁଙ୍କୁ ଦେଖିଲେ ଆମ୍ଭ ବଦନ ବିଷଣ୍ଣ ହୋଇଯାଏ; ତାହାଙ୍କ ଠାରେ ବିଶ୍ୱାସଘାତକତା କରିଅଛୁଁ, ଏହି ଚିନ୍ତାରେ ଯତ୍ପରୋନାସ୍ତି ଭୀତ ହେଉଁ । ପୂର୍ବରେ ଆମ୍ଭ ପ୍ରଭୁ ଆମ୍ଭକୁ ଅତ୍ୟନ୍ତ ସ୍ନିଗ୍ଧ ନୟନରେ ଚାହୁଁଥିଲେ ଏବଂ ଆମ୍ଭଠାରେ ଅତ୍ୟନ୍ତ ସ୍ନେହ କରୁଥିଲେ । ଏବେ ସେହି ସ୍ନେହ ଊଣା ହେବାର ଦେଖିଲୁ, ଏଣିକି ସେ ଆମ୍ଭକୁ ଦେଖି ବିରକ୍ତି ପ୍ରକାଶ କଲେ । ଆମ୍ଭ ସହିତ ସାହଙ୍କାର ବାକ୍ୟରେ କଥା କହିଲେ ।

ଫିଲିପର ଆଚରଣରେ ମଧ୍ୟ ବୈଲକ୍ଷଣ୍ୟ ଦେଖିଲୁଁ । ସେ ଆଉ ପୂର୍ବପରି ଆମ ସହିତରେ ମଧୁରାଳାପ ନ କଲେ । ପୂର୍ବରେ ଆମ୍ଭସଙ୍ଗେ ଯେପରି ଘନିଷ୍ଠତା କରିଥିଲେ ଏବେ ଆଉ ସେପରି ଦେଖିଲୁଁ ନାହିଁ । ଏହି ସବୁ ଦେଖି ଶୁଣି ଆମ୍ଭେ ହତାଶ ହେଲୁଁ । ଆପଣାକୁ ନିତାନ୍ତ ଦୁର୍ଭାଗ୍ୟ ମଣିଲୁଁ । ଜୀବନ ଭାର ହେଲା । ଆମ୍ଭେ ସ୍ୱଭାବତଃ ଅତ୍ୟନ୍ତ ଅଭିମାନୀ ଥିଲୁଁ; ସୁତରାଂ ଅଭିଭାବକଙ୍କ ସେହି ଆଚରଣ ଆମ୍ଭର ଅସହ୍ୟ ହେଲା । ସେଠାରୁ ସ୍ଥାନାନ୍ତରିତ ହେବା ନିମନ୍ତେ ପ୍ରତିଜ୍ଞା କଲୁଁ । ସ୍ଥାନାନ୍ତରିତ ଅବା କିରୂପେ ହେବୁଁ ? ଲରାର ସହବାସରୁ ବଞ୍ଚିତ ହେବାଠାରୁ ଆମ୍ଭକୁ ମରଣ ଶ୍ରେୟସ୍କର ବୋଧ ହେଲା, ତାହାଙ୍କ ବିରହରେ କିରୂପେ ଦିନ ଗମିବୁଁ ।

ଅଭିଭାବକ ପ୍ରଭୃତିଙ୍କର ଏହି ଗର୍ହିତ ବ୍ୟବହାର ଦେଖି ଆମ୍ଭେ ଅତ୍ୟନ୍ତ ବିରକ୍ତ ହେଲୁଁ; ଆମ୍ଭର ଅହଂକାର ଉତ୍ତରୋତ୍ତର ବଢ଼ିଲା । ଆମ୍ଭେ ଯେ ସହଂଶୋଦ୍ଭବ ଏହା ସେମାନଙ୍କୁ ଜଣାଇବା ନିମନ୍ତେ କେବେ କେବେ ଆମ୍ଭର ବାସନା ହେଉଥିଲା । ମାତ୍ର ସେହି ବାସନା ଅଳ୍ପକାଳ ସ୍ଥାୟିନୀ । ଆମ୍ଭେ ଯେ ନିଜେ ସେହି ମହତ୍ ପରିବାରରୁ ଭ୍ରଷ୍ଟ ହୋଇଅଛୁଁ; ଏହା ମନ ମଧ୍ୟରେ ରହିତ ହେଲାକ୍ଷଣି ଆମ୍ଭର ଗର୍ବ ଚୂର୍ଣ୍ଣ ହୋଇଯାଏ । ନୈରାଶ୍ୟ କୂପରେ ଅନ୍ତଃକରଣ ନିପତିତ ହୁଅଇ ।

ଏହି ଦୁର୍ଭାବନାରେ ଆମ୍ଭ ମାନସିକ ଶାନ୍ତି ଏବଂ ଶାରୀରିକ ସ୍ୱାସ୍ଥ୍ୟର ହାନି ହେଲା । ଲରା ଆମ୍ଭକୁ ସ୍ନେହ କରନ୍ତି ଏହି ଚିନ୍ତାରେ ଆମ୍ଭେ ଆହ୍ଲାଦିତ ନ ହୋଇ ଆହୁରି ଦୁଃଖିତ ହେଲୁଁ । ଆମ୍ଭେ ଏମନ୍ତ ରତ୍ନରୁ ବଞ୍ଚିତ ହେବୁ, ଯେତେବେଳେ ଏହି କଥା ଆମ୍ଭ ମନରେ

ପଡ଼େ, ଆମ୍ଭର ହୃଦୟ ଅତଳ ଶୋକଜଳରେ ନିମଗ୍ନ ହୁଏ । ଲରା ଯେବେ ଆମ୍ଭଠାରେ ସ୍ନେହ କରୁ ନ ଥାନ୍ତେ, ତେବେ ଆମ୍ଭର କଦାଚ ଏପରି କଷ୍ଟ ହୁଅନ୍ତା ନାହିଁ । ପୂର୍ବରେ ସେହି ଲରାଙ୍କୁ ଦେଖିଲେ ଆମ୍ଭେ ହର୍ଷରେ ଅଧୀର ହେଉଥିଲୁଁ; ମାତ୍ର ଏବେ ବିଷାଦରେ ଅଧୀର ହେଲୁଁ, ଆଉ ସେହି ଲାବଣ୍ୟ ଆମ୍ଭର ନୟନାନନ୍ଦକର ହେଲା ନାହିଁ; ସେହି ବୀଣାଗଞ୍ଜିତ ସ୍ୱର କର୍ଣ୍ଣକୁ ସୁଖପ୍ରଦ ହେଲା ନାହିଁ । ସେହି ମନ୍ଦମନ୍ଦ ଦରହାସ୍ୟ ପ୍ରୀତିକର ହେଲା ନାହିଁ ।

ଲରା ଅତିଶୟ ସରଳହୃଦୟା ଥିଲେ । ଆମ୍ଭଠାରେ ଏହି ବୈଲକ୍ଷଣ୍ୟ ଦେଖି ଦିନେ ନିର୍ଜ୍ଜନରେ ଆମ୍ଭକୁ ସେଥିର ହେତୁ ପଚାରିଲେ । ତାହାଙ୍କ ପ୍ରଶ୍ନର ଉତ୍ତର ନ ଦେଇ ରହି ହେଲା ନାହିଁ । ଆମ୍ଭେ ଏଡ଼େ କାତର ହୋଇଥିଲୁଁ ଯେ, ତାଙ୍କଠାରେ ଆପଣା ମନୋଗତ ଦୁଃଖ ମୁକ୍ତ କଣ୍ଠରେ ଫେଡ଼ି କହିଲୁଁ । କାତର ସ୍ୱରରେ ତାହାଙ୍କୁ ସମ୍ବୋଧନ କରି କହିଲୁଁ "ଲରା ! ଆମ୍ଭେ ତୁମ୍ଭର ଯୋଗ୍ୟପାତ୍ର ନୋହୁଁ, ଆମ୍ଭେ ପରିବାର ଭ୍ରଷ୍ଟ, ଆମ୍ଭର ଘର ନାହିଁ, ଅର୍ଥ ନାହିଁ, ଖ୍ୟାତି ନାହିଁ କିପରିରେ ଅବା ତୁମ୍ଭର ଉପଯୁକ୍ତ ହେବୁଁ । ଲର ! ଆମ୍ଭେ ଏପରି ଦରିଦ୍ର ହେଲେ ହେଁ ତୁମ୍ଭ ପାଣିଗ୍ରହଣାକାଂକ୍ଷୀ ହୋଇଅଛୁଁ, ଆମ୍ଭର କେଡ଼େ ଦୁରାକାଂକ୍ଷା, କେଡ଼େ ମୂଢ଼ତା, ବାମନ ହୋଇ ଚନ୍ଦ୍ରମା ଧରିବାର ଇଚ୍ଛା !!

ଆମ୍ଭର ଏହି କାତରୋକ୍ତିରେ କୋମଳସ୍ୱଭାବ । ଲରାର ନୟନରୁ ପ୍ରବଳ ବେଗରେ ଲୋତକ ଝରିଲା । ମାତ୍ର ଆମ୍ଭେ ଯେ କିରୂପେ ତାଙ୍କର ଅଯୋଗ୍ୟ, ସେ ତାହା ବୁଝି ନ ଥିଲେ । କିରୂପେ ଅବା ବୁଝି ପାରିବେ ? ମଠରେ ଶିକ୍ଷିତ, ସଂସାରର ଗତିବିଧି ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲେ । ଅଭାବଜନିତ କଷ୍ଟ କେବେହେଁ ଅନୁଭବ କରି ନ ଥିଲେ । ପ୍ରଣୟ ଯେତେବେଳେ ହୃଦୟକୁ ବଶୀଭୂତ କରେ, ସେ ସମୟରେ ଆନ ବିଷୟମାନଙ୍କ ପ୍ରତି ଦୃଷ୍ଟି ନ ଥାଏ । ଲରାର ବିବେଚନାରେ ଆମପରି ପୁରୁଷ ମହୀରେ ଅନ୍ୟ କେହି ନ ଥିଲା । ଆମ୍ଭେ ପୂର୍ବରେ ତାହାଙ୍କୁ ଅନେକ ଉପନ୍ୟାସ ଶୁଣାଇଥିଲୁଁ । ଆମ୍ଭଠାରୁ ସେ ଅନେକ ବୀରପୁରୁଷ, ରାଜା ଏବଂ ବିଦ୍ୱାନ୍‌ମାନଙ୍କର ଇତିହାସ ଶୁଣି ଥିଲେ । କେବେ କେବେ ହର୍ଷରେ ଅଧୀର ହୋଇ ସେମାନଙ୍କ ସହିତ ଆମ୍ଭର ତୁଳନା କରୁଥିଲେ । ପ୍ରେମରେ ଉନ୍ମତ୍ତ ହୋଇ ଆମ୍ଭ ମନ୍ଦଗୁଣମାନଙ୍କର ସୁଦ୍ଧା ପ୍ରଶଂସା କରୁଥିଲେ । ଆମ୍ଭକୁ ସବୁ ସଦ୍ଗୁଣର ଆଧାର କରି ଜାଣିଥିଲେ । ସେ କହୁଥିଲେ ଯେ ଆମ୍ଭପରି ରସିକ, ରୂପବାନ୍, ବୁଦ୍ଧିମାନ୍ ପୁରୁଷ ମହୀରେ ଦୁର୍ଲଭ । ତାହାଙ୍କର ଆମ୍ଭଠାରେ ଏପରି ପ୍ରେମ ଦେଖି ଆମ୍ଭେ କେବେ କେବେ ଆପଣା ଦୁଃଖ ବିସ୍ମୃତ ହେଉଥିଲୁଁ ।

ଆମ୍ଭର ଇତିହାସର ଏହି ଅଂଶ ଅତି ବିସ୍ତାରିତ ରୂପେ କହିଲୁଁ । ଆମ୍ଭେ ସେହି ସମୟରେ ନିର୍ଦ୍ଦୋଷ ଥିଲୁଁ, ନିର୍ଦ୍ଦୋଷୀ ମନୁଷ୍ୟ ସ୍ୱଭାବତଃ ସୁଖୀ ହୁଅଇ । ଆମ୍ଭେ

ଦୁଇପ୍ରକାର ସୁଖ ଭୋଗ କରୁଥିଲୁଁ । ପ୍ରଥମତଃ ନିର୍ଦ୍ଦୋଷିତାଜନିତ ସୁଖ, ଦ୍ୱିତୀୟତଃ ଲରାର ସହବାସ ସୁଖ । ଏପରି ସୁଖର ସମୟ ବାହୁଲ୍ୟରୂପେ ବର୍ଣ୍ଣନା ନ କରି ଆଉ କେଉଁ ସମୟର ବାହୁଲ୍ୟ ବର୍ଣ୍ଣନ କରିବୁଁ । ଆମ୍ଭର ଏହି ବିସ୍ତାରିତ ବର୍ଣ୍ଣନାରେ ବିରକ୍ତ ହେବ ନାହିଁ; ଆମ୍ଭ ଅବସ୍ଥାରେ ପଡ଼ିଲେ ତୁମ୍ଭେ ସୁଦ୍ଧା ଏହିପରି ବିସ୍ତାରିତ ବର୍ଣ୍ଣନ କରିଥାନ୍ତ । ସେ ଯାହା ହେଉ ଏବେ ଆନ ବିଷୟ ଶୁଣ ।

ଏହି ସମୟରେ ଆମ୍ଭ ଜ୍ୟେଷ୍ଠଙ୍କର ମୃତ୍ୟୁ ହେଲା, ଆମ୍ଭେ କୌଣସି ସାପ୍ତାହିକ ପତ୍ରିକାରୁ ଏହି ସମ୍ବାଦ ପ୍ରାପ୍ତ ହେଲୁଁ, ସେହି ପତ୍ରିକାରେ ଏହି ବିଜ୍ଞାପନ ଲେଖା ହୋଇଥିଲା ।

## ବିଜ୍ଞାପନ

"ଆମ୍ଭ ଜ୍ୟେଷ୍ଠ ପୁତ୍ରର ମୃତ୍ୟୁ ହେବାରୁ ଶୋକରେ ଅଧାର ହୋଇଅଛୁଁ । ଏତେବେଳେ ଆମ୍ଭକୁ ସାନ୍ତ୍ୱନା ଦେବ ଏମନ୍ତ କେହି ନାହିଁ । କନିଷ୍ଠ ପୁତ୍ରର ଅନୁଦେଶ ହେତୁରୁ ଆମ୍ଭର ଦୁଃଖ ଦୁଇ ଗୁଣ ହୋଇଅଛି । ଯେବେ କୌଣସି ମହୋଦୟ ଆମ୍ଭ ପ୍ରତି ସଦୟ ହୋଇ ଆମ୍ଭର ସେହି କନିଷ୍ଠ ପୁତ୍ରର ତତ୍ତ୍ୱ କରନ୍ତି ତେବେ ଆମ୍ଭେ ତାଙ୍କଠାରେ ଚିରଜୀବନ କୃତଜ୍ଞ ରହିବୁ । ଯେବେ ଏହି ବିଜ୍ଞାପନ ସେହି ପୁତ୍ରର ନୟନରେ ପଡ଼େ ଏବଂ ତାହାଠାରେ ଯେବେ ପିତୃ ସ୍ନେହ ଥାଏ ତେବେ ତାହାକୁ ଆମ୍ଭେ ଏହି ଆଦେଶ କରୁଅଛୁଁ ଯେ, ବିଜ୍ଞାପନ ପଢ଼ିଲାମାତ୍ରକେ ଗୃହକୁ ପ୍ରତ୍ୟାଗମନ କରିବା ନିମନ୍ତେ ସଯତ୍ନ ହେବ ।"

ଆମ୍ଭେ ଏହି ବିଜ୍ଞାପନ ପଢ଼ି ଭ୍ରାତୃଶୋକରେ ଅକୁଳି ହେଲୁଁ । ଆମ୍ଭ ପିତା ଆମ୍ଭ ପ୍ରତି ଅତ୍ୟନ୍ତ ନିଷ୍ଠୁର ଆଚରଣ କରିଥିଲେ, କିନ୍ତୁ ତାହାଙ୍କୁ ପୁତ୍ର ଶୋକରେ ଅଭିଭୂତ ହେବାର ପାଠକରି ଆମ୍ଭେ ତାହା ପାସୋରିଲୁଁ । ପିତୃସ୍ନେହର ବଶୀଭୂତ ହୋଇ ଘରକୁ ଯିବା ନିମନ୍ତେ ଉତ୍କଣ୍ଠିତ ହେଲୁଁ । ପୁଣି ଆମ୍ଭର ବିଷାଦରେ ହର୍ଷ ଉପସ୍ଥିତ ହେଲା । ଯେତେବେଳେ ଭାବିଲୁଁ ଯେ, ଆମ୍ଭର ଦରିଦ୍ରାବସ୍ଥା ସମ୍ପୂର୍ଣ୍ଣ ଘୁଞ୍ଚି ଯିବ, ସେତେବେଳେ ଆନନ୍ଦର ସୀମା ନ ରହିଲା । ଅର୍ଥ, ଖ୍ୟାତି, ପଦବୀର ପୁନଃ ପାପ୍ତିର ଆଶା ସଙ୍ଗେ ଅନ୍ୟ ଆଶା ସଞ୍ଚରିଲା । ତେତେବେଳେ ଆଉ ଆପଣାକୁ ଲରାର ଅଯୋଗ୍ୟ ମଣିଲୁଁ ନାହିଁ । ସେହିକ୍ଷଣି ଲରା ନିକଟକୁ ଯାଇ କହିଲୁଁ "ଲରା ! ପ୍ରଭୁଙ୍କ କୃପାରୁ ଏବେ ଆମ୍ଭ ମନୋରଥ ସିଦ୍ଧ ହୋଇପାରିବ ! ଆମ୍ଭର ଆଉ ସେ ଭାବନା ନାହିଁ; ଆଉ ଏବେ ଆମ୍ଭକୁ କେହି ଅନାଥ, ଅପରିଚିତ, ନିର୍ଦ୍ଧନ ବୋଲିପାରିବେ ନାହିଁ । ଏହି ଦେଖ, ଏଥିରେ ଯାହା ଲେଖା ହୋଇଅଛି ତାହା ପଢ଼ିଲେ ବୁଝିପାରିବ ।"

ଲରାର ତାତ୍କାଳିକ ମନୋଭାବ କିପରି ହୋଇଥିବ ପାଠକ ବିବେଚନା କରନ୍ତୁ । ଆମ୍ଭର ଅବସ୍ଥା ପରିବର୍ତ୍ତନର କଥା ଶୁଣି ସେ ଅତ୍ୟନ୍ତ ଆନନ୍ଦିତ ହେଲେ । ତାହାଙ୍କର ଏହି ଦୃଢ଼ ବିଶ୍ୱାସ ଥିଲା ଯେ, ଯେ କୌଣସି ଉପାୟରେ ହେଉ ଆମ୍ଭେ ଅବଶ୍ୟ ଧନବାନ୍ ଏବଂ ବିଖ୍ୟାତ ହେବୁଁ; ସୁତରାଂ ଏହି ସମ୍ବାଦ ତାହାଙ୍କୁ ବିସ୍ମୟକର ବୋଧ ହେଲା ନାହିଁ । ଏହି ଘଟନାରେ ଆମ୍ଭର ମନୋଦୁଃଖର ହ୍ରାସ ହେବ ଏହା ଭାଳି ସେ ଆହ୍ଲାଦିତ ହେଲେ । ଉଲ୍ଲାସରେ ଅବା ଛାତି ଫୁଲିଗଲା । ଆଉ ଅଧୋବଦନରେ ଚାଲିଲୁଁ ନାହିଁ । ସୌଭାଗ୍ୟ ଗର୍ବରେ ସର୍ବଦା ଉନ୍ନତ ମୁଖ ହୋଇ ଚାଲିଲୁଁ । ମୁଖ ହର୍ଷ ପ୍ରଫୁଲ୍ଲ ହେଲା । ପୂର୍ବ ଦୁଃଖଯାକ ମୁହୂର୍ତ୍ତ ମଧ୍ୟରେ ପାସୋରିଲୁଁ ।

ଉପସ୍ଥିତ ସୌଭାଗ୍ୟକଥା ଆମ୍ଭ ପ୍ରଭୁଙ୍କୁ ଜଣାଇବା ନିମନ୍ତେ ଆମ୍ଭର ଏକାନ୍ତ ବାସନା ହେଲା । ନିଜ ପରିଚୟ ପ୍ରଦାନ କରି ଲରାର ପାଣିଗ୍ରହଣର ଅଭିଳାଷ ତାଙ୍କଠାରେ ପ୍ରକାଶ କରନ୍ତୁ; ମାତ୍ର ସେ ସେହି ସମୟରେ ସ୍ଥାନାନ୍ତରେ ଅବସ୍ଥାନ କରୁଥିଲେ । ତେଣୁ ଫିଲିପଙ୍କଠାରେ ସବୁକଥା ବ୍ୟକ୍ତ କଲୁଁ । ଯେରୂପରେ ପ୍ରଥମେ ଆମ୍ଭ ଅନ୍ତଃକରଣରେ ପ୍ରଣୟ ରସର ସଞ୍ଚାର ହୋଇଥିଲା । ଯେଉଁ ଯେଉଁ କାରଣରୁ ଆମ୍ଭେ ହତାଶ ହୋଇଥିଲୁଁ, ପୁଣି ଯେଉଁ ଆକସ୍ମିକ ସମ୍ବାଦ ଦ୍ୱାରା ଆମ୍ଭ ମନରେ ଭାବୀସୁଖ ଆଶା ସଞ୍ଚରିଲା ଆମ୍ଭେ ମୁକ୍ତକଣ୍ଠରେ ତାଙ୍କଠାରେ ସମସ୍ତ କହିଲୁଁ । ଫିଲିପ ଯତ୍‌ପରୋନାସ୍ତି ଆହ୍ଲାଦିତ ହେଲେ ଏବଂ ଯୋଗ୍ୟପାତ୍ରରେ ଆମ୍ଭ ପ୍ରଣୟ ନ୍ୟସ୍ତ ହୋଇଅଛି ବୋଲି ଥରକୁଥର ଆମ୍ଭର ପ୍ରଶଂସା କଲେ । ତାଙ୍କର ଭଦ୍ରତା ଦେଖି ଆମ୍ଭେ ହର୍ଷପୂର୍ଣ୍ଣ ମନରେ ତାଙ୍କୁ ଆଲିଙ୍ଗନ କଲୁଁ । ତାଙ୍କଠାରେ ଆମ୍ଭର ଯେ ପୂର୍ବରେ ଅବିଶ୍ୱାସ ହୋଇଥିଲା ତାହା ଦୂର ହେଲା ଏବଂ ତାଙ୍କର ବନ୍ଧୁତାକୁ ଯେ କୃତ୍ରିମ ବୋଲି ଜାଣିଥିଲୁଁ ସେଥି ନିମନ୍ତେ ତାଙ୍କଠାରେ କ୍ଷମା ମାଗିଲୁଁ ।

ଯୁବାମାନଙ୍କ ମଧ୍ୟରେ ଅକୃତ୍ରିମ ପ୍ରଣୟ ହେଲେ ସେମାନେ ପରସ୍ପରର ଉପକାର ସାଧନ ନିମନ୍ତେ ଅତ୍ୟନ୍ତ ଯତ୍ନବାନ୍ ହୁଅନ୍ତି । ଫିଲିପ ଅତ୍ୟନ୍ତ ଆଗ୍ରହ ସହିତ ଆମ୍ଭ ବିଷୟରେ ପ୍ରବୃତ୍ତ ହେଲେ । ଆମ୍ଭେ ତାହାଙ୍କୁ ଅକପଟରେ ସବୁ କଥା ଜଣାଇଲୁଁ ଏବଂ ତାଙ୍କଠାରୁ ସତ୍‌ପରାମର୍ଶ ନେଲୁଁ । ଚଞ୍ଚଳ ନେପ୍‌ଲସ ନଗରକୁ ନଉଟିଯାଇ ପିତାଙ୍କର ସ୍ନେହଭାଜନ ହେବା ନିମନ୍ତେ ଫିଲିପ ଉପଦେଶ ଦେଲେ । ତଦନନ୍ତର ଜନକଙ୍କର ଅନୁମତି ନେଇ ଗୃହରୁ ପୁଣି ଆସି ଲରାକୁ ବିବାହ କରିବୁଁ । ଫିଲିପୋ କହିଲେ ସେ ତାଙ୍କ ପିତାଙ୍କଠାରୁ ଏହି ବିଷୟ ସମ୍ମତି କରାଇବା ନିମନ୍ତେ ସେ ସାଧ୍ୟମତେ ଯତ୍ନ କରିବେ ଏବଂ ଆମ୍ଭର ଯେରୂପେ ମଙ୍ଗଳ ହେବ ସେଥିରେ କଦାଚ ଅବହେଳା ନ କରିବେ । ଆମ୍ଭେ ତାଙ୍କର ଏହି ଆଶ୍ୱାସ ବାକ୍ୟରେ ଆପ୍ୟାୟିତ ହେଲୁଁ ।

(କ୍ରମଶଃ)

# ମେଘଦୂତ

## ପୂର୍ବ ପ୍ରକାଶିତଉତ୍ତାରୁ

ଜମ୍ବୁ ପାଦପ ନତ ଶ୍ୟାମଳ ଫଳେ ।
ସରସେ କଳହଂସ ନାଦ ଉଛୁଳେ;
ତହୁଁ ଉତ୍ତରେ ଯିବ ନଭଃ ସନ୍ତରି ।
ଅଗ୍ରେ ବିଦିଶା* ନାମେ ରମ୍ୟ ନଗରୀ
ରମିବ ତୋ ନୟନ ସେ ରାଜଧାନୀ ।
ଅଟଇ ଧରାତଳେ ନଗରୀ ରାଣୀ ।
ବେତ୍ରବତୀ ତଟିନୀ ତହିଁ ବହଇ ।
ତରଙ୍ଗ-ଭ୍ରୂ-ବିଳାସେ ନେତ୍ର ହରଇ;
ଭ୍ରୂଙ୍ଗି ବିମୋହନ ବାଳା ବଦନ ।
ଯେହ୍ନେ ଚୁମ୍ବଇ କାନ୍ତ ରସେ ମଗନ ।
ବେତ୍ରବତୀ ଆନନ ଚୁମ୍ବି ହରଷେ ।
ତୁ ପୁଣି ନବଘନ ! ମଜ୍ଜିବୁ ରସେ ।
ଲଜ୍ଜାରେ ବାଳା ଯେହ୍ନେ ଅସ୍ଫୁଟ ସ୍ୱନେ ।
ନଦୀ ଭାଷିବ ତୋତେ କଳନିଃସ୍ୱନେ ।
ଅଦୂରରେ ଶୋଭଇ ନୀଚଶିଖରୀ** ।
ସୁଖେ ବିଶ୍ରାମ ଲଭ ତହିଁ ଉତ୍ତରି ।
ଗିରି ତୋସଙ୍ଗ ପାଇ ରାଜିବ ଭଲେ ।
ରୋମାଞ୍ଚ ପ୍ରକଟିବ କଦମ୍ବଛଳେ ।
ଶିଳା ଗୃହରେ ତହିଁ ନବନାଗରୀ
ବାନ୍ଧି ପ୍ରାଣନାଥଙ୍କୁ ଭୁଜବଲ୍ଲରୀ ।
ପାଶରେ, ସନ୍ତୋଷନ୍ତି ରମଣମନ ।
ସୁରତ ପରିମଳ ବହେ ପବନ ।
ନୀଚ ଗିରିରୁ ଚାରୁ ନିର୍ଝର ଝରେ ।
ପୁଷ୍ପବନ ବିରାଜେ ବେନି ପାର୍ଶ୍ୱରେ ।

---

* ବିଦିଶା — କାଦମ୍ବରୀ ପାଠକଙ୍କଠାରେ ସମ୍ୟକ୍ ପରିଚିତ ।
** ନୀଚଶିଖରୀ — ପର୍ବତବିଶେଷ ।

ଯୂଥିକାଫୁଲଜାତ* ତହିଁ ଫୁଟଇ ।
ମନୋଜ୍ଞ ସୌରଭରେ ନାସା ଦର୍ପଇ ।
ଉଦ୍ୟାନେ ପୁଷ୍ପନାରୀ** ତୋଳନ୍ତି ଫୁଲ ।
ସ୍ୱେଦେ ମଳିନ ତାଙ୍କ କର୍ଣ୍ଣ ଉତ୍ପଳ ।
ତୋର ଶୀତଳ ଛାୟା ହେଲେ ପତିତ ।
ଊର୍ଦ୍ଧ୍ୱେ ଚାହିଁବେ ବାଳା ହୋଇଣ ପ୍ରୀତ ।
ଉତ୍ତର ପ୍ରଦେଶକୁ ଗମନେ ମନ ।
ଉଜ୍ଜୟିନୀକୁ*** ଗଲେ ମାର୍ଗ ବର୍ଦ୍ଧନ ।
ହୋଇବ, ନିଶ୍ଚେ ଜାଣୁଅଛି ବିଶେଷ ।
ମାତ୍ର ସେଠାକୁ ଗଲେ ସୁଖ ଅଶେଷ ।
ସୌଧ ଉତ୍ସଙ୍ଗେ ତହିଁ ପୁର ଅଙ୍ଗନା ।
ମନ୍ଦ ବିହରୁଥିବେ ହଂସଗମନା ।
ଦେଖି ତୋ ଗାତ୍ରେ କ୍ଷଣ ପ୍ରଭା ସ୍ଫୁରଣ ।
ଚକିତ ହେଉଥିବ ତାଙ୍କ ଲୋଚନ ।
ମାର୍ଗେ ନିର୍ବିନ୍ଧ୍ୟା ନଦୀ ତୋ ପ୍ରଣୟିନୀ ।
ଅଳି-ଶ୍ୟାମଳ ଚାରୁ ଉର୍ମ୍ମିମାଳିନୀ
ବୀଚିକ୍ଷୋଭ ଚଞ୍ଚଳ ମରାଳସ୍ୱନ ।
ଶୁଭିବ କାଞ୍ଚି ଶବ୍ଦ ପ୍ରାୟେ ମୋହନ ।
ଆବର୍ତ୍ତ ରୂପ ନାଭି ନେତ୍ର ମୋହିବ ।
ତୋଠାରେ ନଦୀ ସ୍ନେହ ସେହି ସୂଚିବ ।
ରସିକ ତୁ ଜଳଦ ! କହିବି କେତେ ।
କାମିନୀ ପ୍ରକାଶନ୍ତି ଭାବ ସଂକେତେ ।
କୃଶ ସଲିଳ ରେଖା ବେଣୀ ପରାୟ ।
ଦିଶଇ, ପୁଣି ନଦୀ ପୁଲିନକାୟେ ।
ସ୍ଖଳିତ ତୀର ତରୁ ପତ୍ର ନିବହ ।
ଏଣୁ ପାଣ୍ଡୁର କାନ୍ତି ନଦୀ ବିଗ୍ରହ ।

---

* ଫୁଲଜାତ – ପୁଷ୍ପସମୂହ

** ପୁଷ୍ପନାରୀ – ମାଳିନୀ

*** ଉଜ୍ଜୟିନୀ– ସୀପ୍ରାତଟବର୍ତ୍ତୀ ନଗରୀ, ଅଦ୍ୱିତୀୟ କବି କାଳିଦାସଙ୍କ ଜନ୍ମଭୂମି । କାଦମ୍ବରୀ ପ୍ରଣେତା ବାଣଭଟ୍ଟ ସ୍ୱରଚିତ କାବ୍ୟରେ ଏହି ନଗରୀର ସୁବିସ୍ତୃତ ବର୍ଣ୍ଣନ କରିଅଛନ୍ତି ।

ଶୈବଳିନୀ ବିରହ ଦଶା ପ୍ରକାଶି ।
ସୂଚିବ ତୋଠାରେ ସେ କେଡ଼େ ପ୍ରୟାସୀ ।
ଯେଉଁ ଉପାୟେ ପୂର୍ବ ରୂପ ଲଭିବ ।
ସେ ବିଧାନ ଅବଶ୍ୟ ଘନ କରିବ ।
ପୁରୋବର୍ତ୍ତୀ ତୁମ୍ଭର ଅବନ୍ତୀ ପୁରୀ ।
(ଯେ ପୁରେ ଉଦୟନ* କଥା ମାଧୁରୀ
ଗନ୍ଧପ୍ରିୟ ସ୍ଥବିର ତୁଣ୍ଡୁ ଝରଇ) ।
ତା' ଅନ୍ତେ ଉଜ୍ଜୟିନୀ ପୁରୀ ରାଜଇ ।
ବର୍ଣ୍ଣି ନୁହଇ ତାର ଚାରୁ ସୁଷମା ।
ଭୂତଳେ ନାହିଁ ଘନା ତାହା ଉପମା,
ସ୍ୱର୍ଗର କାନ୍ତିମାନ ଖଣ୍ଡ ସ୍ଖଳିତ ।
ପ୍ରାୟେ ଦିଶଇ ପୁରୀ ସୌଧ ରାଜିତ ।
ଯହିଁ ପ୍ରତ୍ୟୁଷେ ସିପ୍ରାନଦୀ ପବନ ।
ଦ୍ୱିଗୁଣିତ କରଇ ହଂସ କୂଜନ ।
ପ୍ରଫୁଲ୍ଲ ସରସିଜ ସୌରଭ ହରି ।
ସେବଇ ଅଙ୍ଗନାଙ୍କୁ ମନ୍ଦେ ସଂଚରି ।
କ୍ଳାନ୍ତ କାମିନୀ ବ୍ରଜ ନିଶି ଜାଗରେ ।
ଅନୁକୂଳ ସମୀର ସେ କ୍ଳାନ୍ତି ହରେ ।
ନିତମ୍ବ ନୀଳାମ୍ବର ମନ୍ଦ ଧୂନଇ** ।
ଦୟିତ ପ୍ରାୟେ କେତେ ଚାଟୁ କରଇ ।
କେଶ ସଂସ୍କାର ଧୂପ ଗବାକ୍ଷ ଦ୍ୱାରେ ।
ବାହାରିଣ ମିଶିବ ତୋହୋ କାୟାରେ ।
ନାଚିବେ ତୋ ଦର୍ଶନେ ଗୃହ ମୟୂର ।
ଗଭୀର କେକାରବେ ପୂରିବେ ପୁର ।
କୁସୁମ ପୂର୍ଣ୍ଣ ହର୍ମ୍ମ୍ୟ ପୃଷ୍ଠ ଆସନେ ।
ମାର୍ଗଶ୍ରମ ନୋଦିବୁ*** ସୁଖ ଶୟନେ,

---

* ଉଦୟନ — ମହାକବି ଶ୍ରୀହର୍ଷଦେବ ବିରଚିତ ରତ୍ନାବଳୀ ନାଟକର ନାୟକ ।
** ଧୂନଇ — କମ୍ପିତକରଇ
*** ନୋଦିବୁ — ଅପନୋଦନ କରିବୁଁ

ସୀମନ୍ତିନୀ ପଦାଙ୍କ ତହିଁ ଉପରେ ।
ଦେଖିବୁ ହର୍ମ୍ମ୍ୟ ଯେହ୍ନେ ରକ୍ତିମା ଝରେ ।
ଉଜ୍ଜୟିନୀ ସନ୍ନିଧେ ଶିବଭବନ*
ଅତି ପବିତ୍ର ଧାମ ଲୋକ ପାବନ ।
ଗନ୍ଧବତୀ ତଟିନୀ ବହଇ ପାଶେ ।
କୁବଳୟ ସୁରଭି ସମୀର ଶ୍ୱାସେ ।
କ୍ରୀଡ଼ନ୍ତି ଜଳେ ତହିଁ କେତେ ସୁନ୍ଦରୀ ।
ତମାଳ ଶାଖେ ଯେହ୍ନେ ହେମ ବଲ୍ଲରୀ ।
ହର-କଣ୍ଠ-ବରଣ ରାଜେ ତୋ ଦେହେ ।
ଦେଖିବେ ଶିବଗଣ ତୁମ୍ଭକୁ ସ୍ନେହେ ।
ପୂର୍ବ୍ବ କଥିତ ମହାକାଳ ନିଳୟେ ।
ଉତ୍ତରବି ଯଦ୍ୟପି ଅନ୍ୟ ସମୟେ,
ନଳିନୀସଖାଙ୍କର ଅସ୍ତଗମନ
ଯାଏ ପ୍ରତୀକ୍ଷା କରି ରହିବୁ ଘନ !
ସନ୍ଧ୍ୟା ଆଗମେ ତୋର ଧ୍ୱନି ଗଭୀର ।
ବଳି-ପଟହ ପ୍ରାୟେ ହରମନ୍ଦିର ।
ପୂରିଣ, ସଂତୋଷିବ ହର ଶ୍ରବଣ ।
ଶ୍ଳାଘ୍ୟ ସଫଳ ତହୁଁ ହେବ ଗର୍ଜ୍ଜନ ।
ମନ୍ଦିର-ପାର୍ଶ୍ୱେ ବାର-ବାଳା ନିକର ।
ରତ୍ନ-ଛାୟା ଖଚିତ ଚାରୁ ଚାମର ।
ଘେନିଣ ବିଞ୍ଚୁଥିବେ ଲୀଳା ବୀଜନେ ।
ସିଞ୍ଚିବୁ ସେମାନଙ୍କୁ ସଲିଳ କଣେ ।
ଭ୍ରମର-ରାଜି ରମ୍ୟ ନୟନେ ଚାହିଁ ।
ତୋ ମନ ନୀରଧରା ! ନେବେ ଭୁଲାଇ
ତୋ ଶ୍ରବଣ ତୋଷିବ ରମ୍ୟ ଶିଞ୍ଜିତ ।
ବୀଣା ଝଂକାର ଗଞ୍ଜି ମଧୁ ସଂଗୀତ ।
ମଣ୍ଡଳାକାରେ ଘେରି ତରୁ-କାନନ ।
ଶୋଭିବ ଉଚ୍ଚେ ତହିଁ ଘୋଡ଼ି ଗଗନ ।

* ଶିବଭବନ — ମହାକାଳ ନିକେତନ ।

ଉଜ୍ଜ୍ୱଳ ସନ୍ଧ୍ୟାରାଗେ ହୋଇ ରଞ୍ଜିତ ।
ଦିଶିବ ନବଜବା ପ୍ରାୟେ ଲୋହିତ ।
ନର୍ତ୍ତନକାଳେ ଶିବ ତୋତେ ଦେଖିବେ ।
ଆର୍ଦ୍ର-ନାଗ-ଅଜିନ ତହୁଁ ତ୍ୟଜିବେ ।
ନଗେନ୍ଦ୍ରବାଳା ଦେଖି ତୋହୋ ଭକତି ।
ସୁଅଶିଷ କରିବେ ହରଷେ ସତୀ ।
ରଜନୀକାଳେ ଦାଣ୍ଡେ କେତେ ଯୁବତୀ ।
ଉଦ୍‌ବେଗେ ଯାଉଥିବେ କାନ୍ତ ବସତି ।
ଘୋର ଅନ୍ଧାରେ ମାର୍ଗ ଦିଶିବ ନାହିଁ ।
କମ୍ପିବେ ଭୟେ ଚାରିଆଡ଼େ ଅନାଇ ।
ତୋସଙ୍ଗେ ଥିବ ସ୍ୱର୍ଣ୍ଣମୟୀ ତଡ଼ିତ ।
ଏକାଳେ ବାଳାଙ୍କର ସାଧିବ ହିତ ।
ଘନ ! ମୁଞ୍ଚିବୁ ନାହିଁ ଭୀମ ନିନାଦ ।
ନାଦ ମଣିବେ ବାମା ଘୋର ପ୍ରମାଦ ।
କ୍ଳାନ୍ତ ହେଲେ ତଡ଼ିତ ଚିର ନର୍ତ୍ତନେ ।
ଥୋଇବୁଁ ଅବଳାକୁ କ୍ରୋଡ଼ ଶୟନେ,
ଯାପି ଚନ୍ଦ୍ରଶାଳାରେ* ଶେଷ ରଜନୀ ।
ନିଦ୍ରା ତ୍ୟଜିବୁ ଶୁଣି କପୋତ ଧ୍ୱନି ।
ଫିଟାଇ ପୂର୍ବ-ଆଶା ହୈମତୋରଣ** ।
ମୌକ୍ତିକ ବ୍ରଜ ପଦ୍ମ କରେ ବହନ
ପ୍ରାତେ ଖଣ୍ଡିତା ପାଶେ ନାୟକ ଆସି ।
ପୋଛନ୍ତି ସ୍ନେହେ ନେତ୍ର ସଲିଳ ରାଶି ।
ଏଣୁ ନଳିନୀ ପଦ୍ମ-ନୟନ ନୀର ।
ପୋଛିବେ ନିଜ ହସ୍ତେ କାନ୍ତ ମିହିର ।
ଏକାଳେ ତାଙ୍କ ମାର୍ଗ ରୋଧିବୁ ନାହିଁ ।
ନତି କରିବୁ ବହୁ ଦୂରରେ ଥାଇ ।
ମାର୍ଗ ରୋଧିଲେ ନିଶ୍ଚେ ରୋଷିବେ ହରି*** ।
ଏଣୁ କରିବୁ କାର୍ଯ୍ୟ ମୋ ବାଣି ସ୍ମରି ।

---

* ଚନ୍ଦ୍ରଶାଳା – ଅଟ୍ଟାଳିକା ଉପରିସ୍ଥ ଗୃହ । ଏରୂପ ଗୃହ ପ୍ରାୟ ସର୍ବଦା ପାରାବତ ସଂକୁଳ ।

** ପୂର୍ବଆଶା ହୈମତୋରଣ – ପୂର୍ବ ଦିଗର କାଞ୍ଚନ ରଚିତ ଦ୍ୱାର ।

*** ହରି – ସୂର୍ଯ୍ୟ ।

ସୁଗଭୀର ନିର୍ମଳ ନଦୀ ଜୀବନ ।
ନିତ୍ୟ ପ୍ରସନ୍ନ ଯେହ୍ନେ ମହତ ମନ ।
ଦେଖିବୁ ଘନ ! ନଦୀ ଦର୍ପଣ ତଳେ ।
ସ୍ୱକୀୟ ବିମ୍ବ ବହୁ ଯୋଜନ ତଳେ ।
ମାର୍ଜିତ ହିରା ଖଣ୍ଡ ପ୍ରାୟେ ସଫରି ।
ଚଞ୍ଚଳେ ଖେଳୁଥିବେ ନୀରେ ସଂଚରି ।
ତଟିନୀ ନେତ୍ରମାଳ ପ୍ରାୟେ ଦିଶିବେ ।
ଉନ୍ମେଷ କଲା ପ୍ରାୟେ ବୁଡ଼ି ଭାଷିବେ ।
ତୀରଜଘନୁଁ ନୀଳ ସଲିଳ ବାସ ।
ସ୍ରସ୍ତ ଦେଖି ଅନ୍ତରେ ହେବ ଉଲ୍ଲାସ,
ଲମ୍ବମାନ ହୋଇଣ ନଦୀ ଉପରେ ।
ଧରିବ ନୀଳବସ୍ତ୍ର ବେତସକରେ* ।
ବନ୍ଧୁ ମାଗୁଣି ପୁଣି ହେଲେ ସ୍ମରଣ ।
ହୋଇବ ଅତି କଷ୍ଟେ ତହୁଁ ଗମନ ।
ବୁଣିବ ଧରା ପରେ ଉଷା ରଙ୍ଗିଣୀ ।
ସେକାଳରେ ଛାଡ଼ିବୁ ତୁ ଉଜୟିନୀ । (କ୍ରମଶଃ)

## ବାରୁଣୀ ସ୍ତୋତ୍ର

### ମହାଭାରତରୁ ଅନୁବାଦିତ ।

ଦେବି ! କଳିସହୋଦରେ ! ଜଳରୂପିଣି ! ତୁମ୍ଭଙ୍କୁ ମୁଁ କୋଟି କୋଟି ପ୍ରମାଣ କରୁଅଛି ।୧।

ଭୂଲୋକର ସର୍ବାଞ୍ଚଳରେ ତୁମ୍ଭର କରାଳକୀର୍ତ୍ତିରାଜି ପ୍ରକାଶିତ ହେଉଅଛି । ତୁମ୍ଭେ ମହାର୍ଘ ମଣି ବିନିନ୍ଦିତ ସୁଶୋଭନ କାଚପାତ୍ର ବାହନରେ ଅଧ୍ୟାସୀନ ହୋଇ ଏହି ଜଗତ୍ ପରିଭ୍ରମଣ କରୁଅଛ । ତୁମ୍ଭେ ସର୍ବତ୍ର ବିଦ୍ୟମାନ, ସହସ୍ର ସହସ୍ର ଲୋକେ ତ୍ରିକାଳ ସନ୍ଧ୍ୟାରେ ନିବିଷ୍ଟଚିତ୍ତ ହୋଇ ପ୍ରଗାଢ଼ ଭକ୍ତି ସହକାରେ ତୁମ୍ଭର ଆରାଧନା କରୁଅଛନ୍ତି । ତୁମ୍ଭର ଜୟ ବୈଜୟନ୍ତୀ ସର୍ବତ୍ର ବିରାଜିତ । ଅତଏବ ମୁଁ ତୁମ୍ଭଙ୍କୁ ପ୍ରଣାମ କରୁଅଛି ।୨।

---

* ବେତସକରେ – ଶଂସିତ ନଦୀତୀର ବେତସଲତା ପୂର୍ଣ୍ଣ ।

ତୁମ୍ଭର ଅତୁଲ୍ୟ ମହିମା ବିଷୟ ଚିନ୍ତା କଲେ, କଳ୍ପନା ନିରସ୍ତ ହୁଏ ଏବଂ ହୃଦୟ ଭୟରେ କମ୍ପିତ ହୁଏ । ତୁମ୍ଭର ବିଶ୍ୱବ୍ୟାପିନୀ କ୍ଷମତା ବର୍ଣ୍ଣିବାକୁ କେହି ସମର୍ଥ ନୋହେ । ମୁଁ ଅବା କେଉଁ ଛାର, ନିଜେ ଶେଷ ଦେବ ସହସ୍ର ଜିହ୍ୱା ପ୍ରୟୋଗ କଲେ ସୁଦ୍ଧା ତୁମ୍ଭ ଅମେୟ କ୍ଷମତାର କାଣିଚାଏ ମହାତ୍ମ୍ୟ ବର୍ଣ୍ଣିପାରିବେ ନାହିଁ । ହେ ଶୁଣ୍ଡିକ ସଦ୍ମବାସିନୀ ! କୃପା କରି ଅକିଞ୍ଚନର ପୂଜା ଗ୍ରହଣ କର ।୩।

କି ଧନୀ, କି ନିର୍ଧନ, କି ପଣ୍ଡିତ, କି ମୂର୍ଖ, କି ଯୋଦ୍ଧା, କି ଭୀରୁ ସମସ୍ତ ଲୋକେ ତୁମ୍ଭ ଉପାସନାରେ ପ୍ରବୃତ୍ତ । ତୁମ୍ଭେ ଅତୁଲ୍ୟ ମାୟାବଳରେ ସ୍ୱୀୟ ମୁଷ୍ଟି ମଧ୍ୟରେ ସେମାନଙ୍କୁ ଆବଦ୍ଧ ରଖିଅଛ । ହେ ସେବକ ମନୋହାରିଣୀ ! ମୁଁ ତୁମ୍ଭଙ୍କୁ ପ୍ରଣାମ କରୁଅଛି ।୪।

ତୁମ୍ଭର ଭକ୍ତବତ୍ସଳତା ଅତି ବିଚିତ୍ର । ତୁମ୍ଭେ ବିତ୍ତଶାଳୀ କୋଟିପତିର ସର୍ବସ୍ୱାନ୍ତ କରି ପ୍ରାୟୋପବେଶନଦ୍ୱାରା ତାହାର ପ୍ରାଣ ବିନାଶ କର । ତୁମ୍ଭେ ଶତସମର ଜୟୀ ମହାବୀରର ବଳ ହରଣ କରି ତାହାର କଳେବରକୁ ଅଷ୍ଟିମୟ କଳଙ୍କରେ ପର୍ଯ୍ୟବସିତ କର । ତୁମ୍ଭେ ଶତ ଶତ କାମିନୀମାନଙ୍କର ପ୍ରାଣପତି ବିନାଶ କରି ସେମାନଙ୍କୁ ତୀବ୍ର ବୈଧବ୍ୟ ଯନ୍ତ୍ରଣାରେ ନିଷ୍ପୀଡ଼ିତ କର । ତୁମ୍ଭେ ସହସ୍ର ସହସ୍ର ଶିଶୁମାନଙ୍କୁ ଅକାଳେ ପିତୃହୀନ କରି ସେମାନଙ୍କ ନିରାଶ୍ରୟ ଅନାଥ କର । ତୁମ୍ଭେ ସୁନ୍ଦର ଗୃହକୁ ଶ୍ମଶାନ କର । ତୁମ୍ଭେ ମାନିମାନଙ୍କର ମାନହରଣ କରି ମୁହୁର୍ମୁହୁଃ ତୀବ୍ର ଅପମାନାଧୀନ କର । ଅତଏବ ହେ ଭକ୍ତବତ୍ସଳେ ମୁଁ ତୁମ୍ଭଙ୍କୁ ପ୍ରଣାମ କରୁଅଛି ।୫।

ତୁମ୍ଭ ପ୍ରଭାବରେ ମନୁଷ୍ୟ ପଶୁବତ୍ ଅମୂଲ୍ୟ ବୈରାଗ୍ୟ ଶିକ୍ଷା କରେ । ତୁମ୍ଭର ଉପାସକମାନେ ଧନ, ମାନ, ବିଦ୍ୟା, ଧର୍ମ, ଲଜ୍ଜା ପ୍ରଭୃତି ବିସର୍ଜନ କରି ତୁମ୍ଭର ଆରାଧନା ନିମନ୍ତେ ସର୍ବଦା ବ୍ୟାକୁଳ ହୁଅନ୍ତି । ଯେତେବେଳେ ସେହି ମହାପୁରୁଷମାନେ ବିବସ୍ତ୍ର ଏବଂ ଧୂଳିଧୂସରିତ ହୋଇ ପଥମଧ୍ୟରେ ଅଥବା ଶ୍ମଶାନରେ ଶୟନ କରନ୍ତି, ତେତେବେଳେ ଶକୁନୀ ତୀକ୍ଷ୍ଣ ଚଞ୍ଚୁପୁଟରେ ସେମାନଙ୍କ ଚକ୍ଷୁକୁ ଆଘାତ କରେ; କୁକୁର ଓ ଶୃଗାଳମାନେ ହସ୍ତ ପଦାଦି ଟାଣି କାମୋଡ଼ି ପକାନ୍ତି । ଏଥିରେ ସୁଦ୍ଧା ସେମାନଙ୍କ ଧ୍ୟାନ ଭାଙ୍ଗେ ନାହିଁ । ହେ ବୈରାଗ୍ୟ ପ୍ରଦାୟିନୀ ସୁରେଶ୍ୱରି ! ମୁ ତୁମ୍ଭଙ୍କୁ କୋଟି କୋଟି ପ୍ରଣାମ କରୁଅଛି ।୬।

ତୁମ୍ଭେ ସ୍ୱୀୟ ଭକ୍ତମାନଙ୍କୁ ଯେଉଁ ବର ପ୍ରଦାନ କର, ତାହା ଅତି ବିଚିତ୍ର । ତୁମ୍ଭ ପ୍ରସାଦରୁ କଳଙ୍କକିରୀଟ ସେମାନଙ୍କ ମସ୍ତକକୁ ଭୂଷଣ କରେ, ନିର୍ଲଜ୍ଜତାମାଳା ସେମାନଙ୍କ କଣ୍ଠଦେଶ ବେଷ୍ଟନ କରେ ଏବଂ ପ୍ରଳାପ ବଚନାବଳୀ ସେମାନଙ୍କର ରସନାକୁ ପବିତ୍ର କରେ । ତୁମ୍ଭ କୃପାରେ ସେମାନଙ୍କ ଦେହ ଭୀଷଣ ସକୃତାଦି ରୋଗର

ଆବାସଭୂମି ହୁଏ । ଏହିପରି ବିବିଧ ବର ପ୍ରଦାନ କରି ତୁମ୍ଭେ ଭକ୍ତ ହୃଦୟରେ ଅଟଳ ସିଂହାସନ ସଂସ୍ଥାପନ କର । ଅତଏବ ହେ ବରଦେ । ମୁଁ ତୁମ୍ଭଙ୍କୁ ପ୍ରଣାମ କରୁଅଛି ।୭।

ଅମିତ ବିକ୍ରମେ ସୁରାଦେବି ! ମୋସ୍ତୋତ୍ରଗତ ଅପରାଧ ସମୁଦାୟ ମାର୍ଜନା କର । ମୁଁ ତୁମ୍ଭ ପ୍ରଭାବ ବିଷୟ ଚିନ୍ତା କରି ଭୟ ବିହ୍ୱଳ ହୋଇଅଛି । ମାୟାବିନି ! ମୁଁ ତୁମ୍ଭଙ୍କୁ କୋଟି କୋଟି ପ୍ରଣାମ କରୁଅଛି ।

# ପ୍ରେରିତ

## ଏ ଦେଶର ଉନ୍ନତିର ପ୍ରତିବନ୍ଧକ

ସମ୍ପାଦକ ମହାଶୟ ! ଶିରୋନାମାଙ୍କିତ ବିଷୟଟି ମାଦୃଶ ଥିବ ଲେଖକ ପକ୍ଷରେ ଅତିଶୟ ଅସମସାହସିକ ଚେଷ୍ଟା ହେଲେ ସୁଦ୍ଧା ଏ ବିଷୟରେ ଯତ୍‌କିଞ୍ଚିତ୍ ଯାହା ଲେଖୁଅଛୁଁ, ତାହା ଆପଣଙ୍କ ପତ୍ରିକାରେ ସ୍ଥାନ ପାଇଲେ ଅତିଶୟ କୃତାର୍ଥମ୍ମନ୍ୟ ହେବୁଁ ।

ବିଦ୍ୟା ଓ ଧନ ଏ ଦୁହେଁ ଉନ୍ନତିର ପ୍ରଧାନ ସହାୟ, ଏ ଦୁହିଁଙ୍କ ଅଭାବରେ ଉନ୍ନତି ହୋଇପାରଇ ନାହିଁ । ଏତଦ୍ଦେଶରେ ଏ ଦୁହିଁଙ୍କର ନିତାନ୍ତ ଅସମ୍ଭବ ନ ଥିଲେ ସୁଦ୍ଧା କିପାଇଁ ଉନ୍ନତିର ବ୍ୟାଘାତ ଜନ୍ମୁଅଛି ତାହା କିଞ୍ଚିତ୍ ଲେଖିବାକୁ ପ୍ରବୃତ୍ତ ହେଲୁଁ । ଏ ଦେଶରେ ତିନିପ୍ରକାର ଲୋକଙ୍କଠାରୁ ଉନ୍ନତିର ଆଶା କରାଯାଇପାରେ ।

ପ୍ରଥମ । ଯେଉଁମାନେ ଇଂରାଜୀ ଦୁଇଚାରି ପତ୍ର ପଢ଼ି ନକଲ ବା ଅନୁବାଦ କରି ଶିଖି ଅଥବା ସାମାନ୍ୟରୂପେ ଦେଶୀୟ ଭାଷା ଜାଣି ଉତ୍ତମ ଚାକିରି ପାନ୍ତି, ଖଣ୍ଡିଏ କୌଣସି ପ୍ରକାର ଚାକିରି ମିଳିଲେ ଆଉ ସେମାନଙ୍କର ଲେଖାପଢ଼ା ଚଳେ ନାହିଁ, କାରଣ ଅନ୍ନବସ୍ତ୍ରର ଉପାୟତ ହୋଇଗଲା, ତେଣିକି କ୍ରମେ କ୍ରମେ ଭଦ୍ର ଧନୀ ଲୋକଙ୍କଠାରେ ଆଳାପ ବନ୍ଧୁତା ହେଲା, ତଦ୍ଦ୍ୱାରା ସାଧାରଣ ଲୋକଙ୍କଠାରେ ଏକପ୍ରକାର ପ୍ରତିପତ୍ତି ଲାଭ ହେଲା, ତତ୍‌ପରେ ଦେଶର ହିତଜନକ ଗୋଟେ ଦୁଇଟା ହିତଜନକ କାର୍ଯ୍ୟ କରିବାକୁ ପ୍ରସ୍ତାବ କରି ତହିଁରୁ କିଛି କିଛି ଆରମ୍ଭ କରିଦେଇ ଦେଶର ସମସ୍ତଙ୍କଠାରୁ ଏକପ୍ରକାର ପ୍ରଶଂସା ମିଳିଲା ଓ ପ୍ରଧାନ ରାଜକର୍ମଚାରୀଙ୍କଠାରେ ନାମ ପଡ଼ିବାରୁ କ୍ରମେ କ୍ରମେ ବଡ଼ ଚାକିରି ମିଳିଲା । ଏହାଠାରୁ ବଳି ଆଉ କିସ ଅଛି ? ଏଥର ଚୂଡ଼ାନ୍ତ ହେଲା । ଏବେ ଖଣ୍ଡେ ଦୁଇଖଣ୍ଡ କ୍ଷୁଦ୍ର ଗ୍ରନ୍ଥ ରଚନା ବା ଅନୁବାଦ କରି କୌଣସି ବଡ଼ଲୋକ ନାମରେ ଉତ୍ସର୍ଗ କରି

ଦେଲେ ଯଶ ଓ ତାହା ସଙ୍ଗେ ସଙ୍ଗେ କିଞ୍ଚିତ୍ କିଞ୍ଚିତ୍ ଅର୍ଥଲାଭ ମଧ୍ୟ ହେଲା, ଏହିପ୍ରକାରେ ଏମାନଙ୍କ ଜୀବନର ମୁଖ୍ୟ ଉଦ୍ଦେଶ୍ୟ । ଯଶୋଲାଭ ଓ ଅର୍ଥଲାଭ ଉଭୟ ସାଧିତ ହେଲା । ଏମାନେ ଉନ୍ନତି କାହାକୁ ବୋଲନ୍ତି ତାହା ବୁଝିଲେ ନାହିଁ ବରଂ ଶୁଣିଲେ ଚମକି ପଡ଼ନ୍ତି ଓ ଅଶ୍ରଦ୍ଧା କରନ୍ତି ।

୨ । କେତେ ଲୋକ ରୀତିମତ ଉତ୍ତମରୂପେ ଲେଖାପଢ଼ା ଶିଖି ଏଲ.ଏ., ବି.ଏ. ପ୍ରଭୃତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବଡ଼ ବଡ଼ ଚାକିରି ପାଇଗଲେ । ପାଠଦ୍ଦଶାରେ ବା କୌଣସି ଚାକିରି ବଡ଼ଚାକିରି ପାଇବା ପୂର୍ବରୁ ସେମାନଙ୍କ ସହିତ ବାକ୍ୟାଳାପ କଲେ ଦେଶର ଉନ୍ନତି ନିମନ୍ତେ ତୁମ୍ଭର ଆଉ କୌଣସି ଚିନ୍ତା ଥିଲା ନାହିଁ । ବାବୁ ଖଣ୍ଡିଏ ବଡ଼ ଚାକିରି ପାଇଲେ ଦେଶର ଉନ୍ନତି ପକ୍ଷରେ ବିଶେଷ ଚେଷ୍ଟିତ ହେବେ । ଏହି କଥା ମନରେ ପାଞ୍ଚୁଥିବେ । ବାବୁ ବଡ଼ ଚାକରି ପାଇଲେ ବାବୁଙ୍କର କ୍ଷମତା ହେଲା । ଅନେକ ଲୋକ ବାବୁଙ୍କର ଅଧୀନରେ ରହିଲେ ସମସ୍ତେ ବାବୁଙ୍କର ଅନୁଗ୍ରହଲିପ୍ସୁ, ବାବୁଙ୍କର ନାନାପ୍ରକାର ଅକାରଣ ପ୍ରଶଂସା ଓ ବାବୁଙ୍କ ତୁଲ୍ୟ ଅଥବା ଆପଣାର ବିଦ୍ୱେଷୀ ଲୋକମାନଙ୍କର କୁତ୍ସାଭିନ୍ନ ବାବୁଙ୍କଠାରେ ସେମାନଙ୍କ ମୁଖରୁ ଆଉ କିଛି ଶୁଣିବ ନାହିଁ । ବାବୁଙ୍କଠାକୁ ଗଲେ ଏଥର ସାବଧାନ ହୋଇ କଥା କହିବାକୁ ହେବ । ପୂର୍ବେ ବାବୁଙ୍କ ସଙ୍ଗେ ତୁମ୍ଭର ଯେପରି ସ୍ୱାଧୀନ ଭାବରେ କଥାବାର୍ତ୍ତା ହେଉଥିଲା ବର୍ତ୍ତମାନ ଆଉ ତାହା ଚଳିବ ନାହିଁ । ଏତେବେଳେ ବାବୁଙ୍କ ମିଜାଜ ବୁଝି କଥା କହିବାକୁ ହେବ, ନହଲେ କାଳେ ବାବୁ ରାଗିଯିବେ ବା ତୁମ୍ଭର କୌଣସି ପ୍ରକାର ଅନିଷ୍ଟ ସାଧନରେ ପ୍ରବୃତ୍ତ ହେବେ ବା ଯଦି ତୁମ୍ଭେ ତାଙ୍କର ଅଧୀନ ଥାଅ କାଳେ ତୁମ୍ଭର ଦାନା ଉପରେ ହାତ ପଡ଼ିବ । ଅତଏବ ବାବୁଙ୍କଠାରେ ମୌନାବଲମ୍ବନ ଅଥବା ବାବୁଙ୍କ କଥାରେ ହଁ ହଁ ଶ୍ରେୟ ଯେଉଁ ଉନ୍ନତି କଥା ପଡ଼ିଲେ ବାବୁ ଆଗକୁହା ହୋଇ କେତେ କଥା କହି ପକାଉ ଥିଲେ କେତେ ହୁଙ୍କାର ଝଙ୍କାର କରୁଥିଲେ ବର୍ତ୍ତମାନ ତାହା ଶୁଣିଲାକ୍ଷଣି ବାବୁ ଅନ୍ୟମନସ୍କ ହୁଅନ୍ତି ବା ଆପଣା ବିଷୟ କାର୍ଯ୍ୟରେ ବ୍ୟାପୃତ ହୁଅନ୍ତି ବା ତାହା ନ କରି କେଉଁଠାକୁ ଚାଲିଯାନ୍ତି ସୁତରାଂ ତୁମ୍ଭର ଆଶା ବିଫଳ ହେଲା । ତୁମ୍ଭ ମୁଖ ବନ୍ଦ ହେଲା । ତୁମ୍ଭେ ଧୀରେ ଧୀରେ ଉଠିଆସିଲ, ତୁମ୍ଭେ ଉଠି ଆସିଲା କ୍ଷଣି ଚାଟୁକାରମାନେ ବାବୁଙ୍କୁ ଘେରି ତୁମ୍ଭର କେତେ ନିନ୍ଦା କରିବେ । ଏଥିରେ ବାବୁଙ୍କ ମନ ବିଚଳିତ ହେଲା । ବାବୁ ଏଥର ଆଉ ତୁମ୍ଭ ସଙ୍ଗରେ ଅଧିକ ବାକ୍ୟାଳାପ କରିବେ ନାହିଁ କାରଣ ତାହାଙ୍କର ମାନହାନି ହେବ ଓ ଚାଟୁକାରମାନେ ଶୁଣିଲେ ମିଷ୍ଟଭର୍ତ୍ସନା କରିବେ ଓ ''ବାବୁ ବଡ଼ ସରଳ ଓ ଅମାୟିକ ଲୋକ, ଚାତୁରୀ ବା ପ୍ରତାରଣା ଜାଣନ୍ତି ନାହିଁ । ଲୋକ ଚିହ୍ନନ୍ତି ନାହିଁ, କେତେ ଲୋକ କେତେ ଫନ୍ଦିରେ

ବୁଲୁ ଅଛନ୍ତି ତାହା ବୁଝିପାରନ୍ତି'' । ଏହିପରି କେତେ କଥା ସେଠାରେ ପରସ୍ପର କୁହାକୁହି କରିବେ ଏଥିରେ ବାବୁଙ୍କ ମନ ଆହୁରି ବଳିଯିବ ଓ ଆହୁରି ସନ୍ଦିଗ୍ଧ ହେବ । ଆଉ ତୁମ୍ଭ ସଙ୍ଗରେ ବାବୁଙ୍କର କଥାବାର୍ତ୍ତା ହେବ ନାହିଁ । ବାବୁ ତୁମ୍ଭଠାରେ ବିରକ୍ତ ଅଛନ୍ତି ଏଥର ତାଙ୍କ ଅନୁଗ୍ରହ ଲାଭ କରିବା ସର୍ବତୋଭାବେ ବିଧେୟ; କାରଣ ଭୟ ଅଛି ବାବୁ କେତେବେଳେ ତୁମ୍ଭର କୌଣସି ଅନିଷ୍ଟ ସାଧିବେ । ଏଥର ତାଙ୍କ ଚାଟୁକାରତ୍ୱ ସ୍ୱୀକାର କର, ବାବୁଙ୍କର ସାଧ୍ୟମତ ଉପକାର କର, ଉନ୍ନତି କଥା ମୁହଁକୁ ଆଣ ନାହିଁ ତେବେ ବାବୁ ପୁନଶ୍ଚ ତୁମ୍ଭର ହେଲେ; ଏଥର ତୁମ୍ଭ ସଙ୍ଗରେ ବାବୁ କଥାବାର୍ତ୍ତା କହିବେ । ତୁମ୍ଭର ଆଉ ଦୁଃଖ ରହିବ ନାହିଁ । ବାବୁଙ୍କ ସନ୍ମାର୍ଗକୁ ଆଣିବାକୁ ଆଉ କେହି ନାହାନ୍ତି, ସମସ୍ତେ ତାଙ୍କର କବି, ଯେ ନୁହେ ବା ନହେବ ସେ ଶତ୍ରୁ, ବାବୁ ତାଙ୍କୁ ଘୃଣା କରିବେ, ଭଲ ପାଇବେ ନାହିଁ, ତାହା ସଙ୍ଗରେ ଆଳାପ କରିବେ ନାହିଁ । ସମୟ ପାଇଲେ ତାହାର ଅନିଷ୍ଟ କରିବାକୁ ତ୍ରୁଟି କରିବେନାହିଁ । ଅତଏବ ଆଉ ଉନ୍ନତି ହେଲା ନାହିଁ । ତୁମ୍ଭରତ କିଛି କରିବାର କ୍ଷମତା ନାହିଁ, ଯାହାଙ୍କର ଅଛି ତାଙ୍କର ଦଶା ଏ ରୂପ, ତେବେ ଏଥର ଉନ୍ନତି କଥା ମୁଖକୁ ଆଣ ନାହିଁ, ଆଣିଲେ ତୁମ୍ଭ ମନ ଯିବ, ତୁମ୍ଭକୁ କେହି ଭଲ ପାଇବେ ନାହିଁ, ତୁମ୍ଭେ ଉପହାସାସ୍ପଦ ହେବ ।

୩ । ଏ ଦେଶର ଧନୀ ଲୋକଙ୍କ କଥା କାହାଠାରେ ଅବଦିତ ଅଛି ? ଉନ୍ନତି କାହାକୁ କହନ୍ତି ତାହା ଏମାନେ ବୁଝନ୍ତି ନାହିଁ । ଉନ୍ନତି ନିମନ୍ତେ ଅର୍ଥ ବ୍ୟୟ କରିବାକୁ ସେମାନେ ଅପବ୍ୟୟ ବୋଲି ମଣନ୍ତି । ଯଦିବା ଜଣେ ଦୁଇଜଣ ବୁଝନ୍ତି ଓ ଅର୍ଥଦାନରେ ସ୍ୱୀକୃତ ଥାନ୍ତି ମାତ୍ର ତାଙ୍କର ଚାଟୁକାରମାନେ ସେହି ଦାନକୁ ଅପବ୍ୟୟ ବୋଲି ଏମନ୍ତ ଉତ୍ତମରୂପେ ବୁଝାଇ ଦେବେ ଯେ ତୁମ୍ଭେ ସହସ୍ର ଯତ୍ନ କଲେ ସୁଦ୍ଧା ତାଙ୍କର ମତ ଖଣ୍ଡନ ବା ଫେରାଇ ପାରିବ ନାହିଁ । ସେମାନେ ତୁମ୍ଭ କଥାକୁ ଅଳୀକ ଓ ସ୍ୱାର୍ଥ ସମ୍ବନ୍ଧ ବୋଲି ମଣି ତୁମ୍ଭକୁ ଉପହାସ କରିବେ, ତୁମ୍ଭେ ଲଜ୍ଜିତ ଓ ଅପମାନିତ ହୋଇ ଫେରିଆସିଲ । ଅତଏବ ଉନ୍ନତିର ସବୁ ପଥ ବନ୍ଦ ହେଲା, ଯେଉଁମାନଙ୍କଠାରୁ ଆଙ୍କ୍ଷା କରିଥିଲ ସେମାନେତ ତୁମ୍ଭକୁ ନିରାଶ କଲେ, ତୁମ୍ଭେ ଚୁପ୍ ହୋଇ ରହିଲ । ତୁମ୍ଭ କଥା କେହି ଶୁଣିଲେ ନାହିଁ । ଉନ୍ନତି ତେଣିକି ଥାଉ ଚେଷ୍ଟା ସୁଦ୍ଧା ହେଲା ନାହିଁ ।

ବାଲେଶ୍ୱର
୧୫ ତାରିଖ ଅଗଷ୍ଟ
୧୮୭୩ ସାଲ

ବଶମ୍ବଦ
ସ୍ୱାଧୀନ ବକ୍ତା ।

# ମାଇକେଲ ମଧୁସୂଦନ ଦତ୍ତ

ବର୍ତ୍ତମାନ ଆମ୍ଭେମାନେ ପାଠକମାନଙ୍କୁ ଗୋଟିଏ ଅତି ଶୋଚନୀୟ ସମ୍ବାଦ ଜଣାଉଁଅଛୁଁ । ଏହି ସମ୍ବାଦ ପାଠ କରି ଯେଉଁମାନେ ମାଇକେଲଙ୍କର ଗ୍ରନ୍ଥାବଳୀରୁ ଦୁଇ ଏକ ଖଣ୍ଡ ଗ୍ରନ୍ଥ ପାଠ କରିଥିଲେ ସେମାନେ ଅବଶ୍ୟ ଆନ୍ତରିକ ଦୁଃଖିତ ହେବେ । କାରଣ ବର୍ତ୍ତମାନ ସମୟରେ ମାଇକେଲଙ୍କ ପରି କବି ପୃଥିବୀରେ ନାହିଁ ବୋଲି ଅନେକେ ସ୍ୱୀକାର କରିଅଛନ୍ତି । ବାସ୍ତବିକ୍ ମୁକ୍ତକଣ୍ଠରେ ଏହା ସ୍ୱୀକାର କରିବାକୁ ହେବ ଯେ ମାଇକେଲଙ୍କଦ୍ୱାରା ବଙ୍ଗଭାଷା ଯେତେଦୂର ଉନ୍ନତି ଲାଭ କରିଅଛି ଅନ୍ୟ କୌଣସି ବ୍ୟକ୍ତିଙ୍କଦ୍ୱାରା ତାହାର ଶତାଂଶରୁ ଏକାଂଶ ସୁଦ୍ଧା ହୋଇ ନାହିଁ । କେତେକ ଦିନ ଗତ ହେଲା । ସେହି ମହାମୂଲ୍ୟ ରତ୍ନକୁ ଭାରତଭୂମି ହରାଇଅଛି । ଏହି ଘଟନାଦ୍ୱାରା ଯେ ଆମ୍ଭମାନଙ୍କର କେତେଦୂର ହାନି ହୋଇଅଛି ତାହା କହିବା ବାହୁଲ୍ୟ । ସେହି ମହାନ୍ ବ୍ୟକ୍ତିର ଜୀବନ ବୃତ୍ତାନ୍ତ ପାଠକମାନଙ୍କୁ ଜଣାଇବା ବିହିତ ବିବେଚନା ହେବାରୁ ନିମ୍ନରେ ସଂକ୍ଷେପେ କିଛି ଲେଖିଲୁଁ ।

ଦତ୍ତଜ ସନ ୧୮୨୮ ସାଲରେ ଯଶୋହର ଜେଲାର ଅନ୍ତର୍ଗତ ସାଗର ଦାଁଡ଼ଗ୍ରାମରେ ୰ ରାଜନାରାୟଣ ଦତ୍ତଙ୍କ ଔରସରେ ଓ ଜାହ୍ନବୀଦାସୀଙ୍କ ଗର୍ଭରୁ ଜନ୍ମଗ୍ରହଣ କରିଥିଲେ । ଦତ୍ତଜ ତାଙ୍କ ପିତାର ଜ୍ୟେଷ୍ଠ ସନ୍ତାନ ଥିଲେ । ସେ ପ୍ରଥମେ ଗ୍ରାମ୍ୟ ପାଠଶାଳାରେ ଅଧ୍ୟୟନ କରନ୍ତି । ପରେ ଯଥାସମୟରେ କଲିକତା ହିନ୍ଦୁ କଲେଜରେ ପ୍ରବିଷ୍ଟ ହେଲେ । ସେହି କଲେଜରେ ସେ ଉତ୍ତମରୂପେ ଇଂରାଜୀ ଓ ପାରସିକ ଭାଷା ଶିକ୍ଷା କରନ୍ତି । ୧୬/୧୭ ବର୍ଷ ବୟଃକ୍ରମ ସମୟରେ କଲେଜ ତ୍ୟାଗ କରି ଖ୍ରୀଷ୍ଟଧର୍ମ ଗ୍ରହଣ କଲେ ।

୰ ରାଜନାରାୟଣ ଦତ୍ତ ସଦର ଅଦାଲତର ଜଣେ ପ୍ରଧାନ ଓକିଲ ଥିଲେ ଦତ୍ତଜ ତାଙ୍କର ଏକମାତ୍ର ସନ୍ତାନ । ରାଜନାରାୟଣବାବୁ ହଠାତ୍ ଏପରି ବିପତ୍‌ପାତ୍ ଦେଖି ଅତ୍ୟନ୍ତ ମର୍ମାନ୍ତିକ ଦୁଃଖପ୍ରାପ୍ତ ହେଲେ ଏବଂ ପୁତ୍ରକୁ ସ୍ୱଧର୍ମକୁ ଆଣିବା ନିମନ୍ତେ ଅନେକ ଯତ୍ନ କଲେ କିନ୍ତୁ ସେ ଫେରିଲେ ନାହିଁ । ପରେ ତାଙ୍କ ପିତାଙ୍କ ବ୍ୟୟରେ ସେ ୪ ବର୍ଷକାଳ 'ବିସ୍‌ପସ' କଲେଜରେ ଅଧୟନ କଲେ । ଏହିଠାରେ ସେ ଲାଟିନ ଓ ଗ୍ରୀକ୍‌ଭାଷା ଶିକ୍ଷା କରନ୍ତି । ସେ କଲେଜ ଛାଡ଼ିଲାର କିଛିଦିନ ଉତ୍ତାରୁ ଭ୍ରମଣ ପାଇଁ ମାନ୍ଦ୍ରାଜ ଗମନ କଲେ । ସେଠାରେ ତାଙ୍କର ବିଦ୍ୟାବୁଦ୍ଧି

ପ୍ରକାଶ ପାଇବାରୁ ମାନ୍ଦ୍ରାଜ କଲେଜର ଏକ ଅଧ୍ୟାପକ ପଦରେ ନିଯୁକ୍ତ ହେଲେ। ସେ ସେହି ପ୍ରଦେଶର ପ୍ରଚଳିତ 'ଏଥିନିୟମ' ନାମକ ଖଣ୍ଡେ ସମ୍ବାଦପତ୍ର ଲେଖି ଅତ୍ୟନ୍ତ ସୁଖ୍ୟାତି ଲାଭ କଲେ। ଏକ ଇୟୁରୋପୀୟ ମହିଳାର ପାଣିଗ୍ରହଣ କଲେ ଓ 'କାପଟିଭଲେଡି' କାବ୍ୟ ଲେଖି କବିରୂପରେ ବିଖ୍ୟାତ ହେଲେ। ୧୮୫୬ ସାଲରେ ବଙ୍ଗଦେଶକୁ ଫେରିଆସି ପୁଲିସରେ କର୍ମ କଲେ ଓ ବନ୍ଧୁମାନଙ୍କ ଅନୁରୋଧରେ ୧୮୫୮ ସାଲରେ 'ରତ୍ନାବଳୀ' ନାଟକ ଇଂରାଜୀ ଭାଷାରେ ଅନୁବାଦ କଲେ।

ପ୍ରଥମେ ସେ କଲେଜର ଅନ୍ୟାନ୍ୟ ଛାତ୍ରମାନଙ୍କ ପରି ଦେଶୀୟ ଭାଷାପ୍ରତି ଅତ୍ୟନ୍ତ ଅଯତ୍ନ କରୁଥିଲେ। ପରେ ସ୍ୱଦେଶୀୟ ଭାଷାର ଉନ୍ନତି ସାଧନ ବିହିତ ବିବେଚନା କରି ଅଳ୍ପଦିନ ମଧ୍ୟରେ ପ୍ରଗାଢ଼ ପରିଶ୍ରମ ସହକାରେ ସଂସ୍କୃତ ଓ ବଙ୍ଗଭାଷା ଶିକ୍ଷା କଲେ ଓ ଅତି ଅଳ୍ପଦିନ ମଧ୍ୟରେ 'ଶର୍ମିଷ୍ଠା', 'ପଦ୍ମାବତୀ', 'ତିଳୋତ୍ତମା', 'ଏକେଇ ବୋଲେ ସଭ୍ୟତା', 'ବୁଡ଼ସାଲିକେରଘାଡ଼େରୌଁ', 'ମେଘନାଦ', 'ବ୍ରଜାଙ୍ଗନା', 'କୃଷ୍ଣକୁମାରୀ', 'ବୀରଙ୍ଗନା' ଏହି କେତେକ ଖଣ୍ଡକାବ୍ୟ ଲେଖି ବଙ୍ଗଦେଶର ପ୍ରଧାନ କବିର ଆସନ ଗ୍ରହଣ କରିଥିଲେ। ସେ କିଛିଦିନ ଉତ୍ତାରୁ ଆଇନ ଶିକ୍ଷା ନିମନ୍ତେ ବିଲାତ ଗମନ କଲେ; ସେଠାରେ କିଛିଦିନ ମଧ୍ୟରେ ଆଇନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବାରିଷ୍ଟର ହୋଇ ଆସିଲେ। ଆସିଲାବେଳେ ଭ୍ରମଣ ପାଇଁ ଫ୍ରାନ୍‌ସ ଗମନ କରିଥିଲେ। ସେଠାରେ ପାରିସ ନଗରରେ ରହି ଚତୁର୍ଦ୍ଦଶପଦୀ 'କବିତାବଳୀ' ଲେଖିଥିଲେ। ପୁଣି ଏଠାରେ ଉପସ୍ଥିତ ହୋଇ 'ହେକ୍‌ଟରବଧ' କାବ୍ୟ ପ୍ରକାଶ କରନ୍ତି। ଏପ୍ରକାର ଜନରବ ହୋଇ ଅଛି ଯେ 'ପାଣ୍ଡବବିଜୟ' ନାମକ ଖଣ୍ଡେ କାବ୍ୟ ତାଙ୍କର ଆହୁରି ଅପ୍ରକାଶ ରହିଗଲା। ଏତେ ଅଳ୍ପ ସମୟ ମଧ୍ୟରେ ସେ ଏତେଗୋଡ଼ିଏ ଗ୍ରନ୍ଥ ଲେଖି ଯେ ବଙ୍ଗଭାଷାର କେତେଦୂର ଉନ୍ନତି କରିଅଛନ୍ତି ସେକଥା କହିବା ବାହୁଲ୍ୟ ମାତ୍ର।

ମାତ୍ର ଅତ୍ୟନ୍ତ ଦୁଃଖର ବିଷୟ ଏହି ଯେ ସେ ଏଡ଼େ ବଡ଼ ଲୋକ ହୋଇ ଶେଷକୁ ଅର୍ଥ ନିମନ୍ତେ ଅତ୍ୟନ୍ତ କଷ୍ଟ ପାଇଥିଲେ। ଏମନ୍ତ କି ପୀଡ଼ିତାବସ୍ଥାରେ ଚିକିତ୍ସା କରିବାର ସଙ୍ଗତି ସୁଦ୍ଧା ନ ଥିଲା, ଋଣୀ ହୋଇ ମଲେ କିନ୍ତୁ ବଙ୍ଗଦେଶରେ ଏଡ଼େ ଏଡ଼େ ଧନୀ ଥାଉଁ ଥାଉଁ କେହି ତାଙ୍କର ବେଳେ ସାହାଯ୍ୟ କଲେ ନାହିଁ। ଏଥିପାଇଁ ସେମାନଙ୍କୁ ନିନ୍ଦା କରିବାକୁ ହେବ। ଦତ୍ତଜ ଗତ ଆଷାଢ଼ମାସ ଦି୧୬ନରେ ଅକାଳେ କଳେବର ତ୍ୟାଗ କଲେ ତାଙ୍କ ମୃତ୍ୟୁର ତିନିଦିନ ପୂର୍ବରୁ ତାଙ୍କ ପ୍ରିୟତମା ରମଣୀ ପ୍ରାଣତ୍ୟାଗ କରିଥିଲେ। ବର୍ତ୍ତମାନ ତାଙ୍କର ଗୋଟିଏ ପୁତ୍ର

ଓ ଗୋଟିଏ କନ୍ୟା ବିଦ୍ୟମାନ ଅଛନ୍ତି । ସମୁଦାୟ ବ୍ୟକ୍ତିମାନଙ୍କଠାରେ ନିବେଦନ ଯେ ଯେପରି ତାଙ୍କର ଅନାଥ ବାଳକ ବାଳିକା କଷ୍ଟ ନ ପାନ୍ତି ତାହାର ଚେଷ୍ଟା କରନ୍ତୁ ।

## ବିବିଧ ସଂବାଦ

ଗତ ଅଗଷ୍ଟମାସ ତା୨୨ରିଖରେ ବୁଢ଼ାବଳଙ୍ଗ ନଦୀରୁ ଗୋଟିଏ କୁମ୍ଭୀର ମରା ହୋଇଅଛି, ଏହା ଲମ୍ବାରେ ୧୨ ହାତ ଓ ମୋଟାରେ ୪ ହାତ । କୁମ୍ଭୀରଟୀ ନଦୀରେ ଦୌରାତ୍ମ୍ୟ ଆରମ୍ଭ କରିବାରୁ କେତେକ ଜଣ ଭଦ୍ରଲୋକଙ୍କ ଅନୁରୋଧରେ ଶିକାରୀମାନେ ଥୋପ ପକାଇ ଅନେକ କଷ୍ଟରେ କୁମ୍ଭୀରକୁ ମାରିଲେ । ସରକାରରୁ କିଛି ପୁରସ୍କାର ପାଇବାର ଆଶା ଥିଲା । କିନ୍ତୁ ଦୁଃଖର ବିଷୟ ଏହି ଯେ ସରକାର କିଛି ପୁରସ୍କାର ଦେଲେ ନାହିଁ । ବର୍ତ୍ତମାନ ଆଉ ଗୋଟାଏ କୁମ୍ଭୀର ନଦୀରେ ମନୁଷ୍ୟାଦିକୁ ଝାଁପୁଅଛି, ବୋଧହୁଏ ଅନିଷ୍ଟ କରିପାରେ; କାରଣ ମନୁଷ୍ୟମାନେ ପ୍ରାୟ ନଦୀରେ ସ୍ନାନ ଓ ଜାହାଜାଦିରେ କର୍ମ କରିବା ପାଇଁ ସର୍ବଦା ଯାତାୟାତ କରନ୍ତି; ଯଦି ଶିକାରୀମାନଙ୍କୁ କିଛି ପୁରସ୍କାର ମିଳିଥାନ୍ତା ତେବେ ସେମାନେ ଅବଶ୍ୟ ଏଟାକୁ ସୁଦ୍ଧା ମାରିବାର ଚେଷ୍ଟା କରନ୍ତେ । ମହାତ୍ମା ଜାନ୍‌ବୀମସ୍ ଥିଲେ ଶିକାରୀମାନେ କଦାପି ନିରାଶ ହୋଇନଥାନ୍ତେ ବରଂ ଉତ୍ସାହିତ ହୋଇ ଅନେକ କାର୍ଯ୍ୟ କରନ୍ତେ ।

ଗତ ୧ ଅଗଷ୍ଟ ସଂବାଦବାହିକାରେ ସମ୍ପାଦକ ଅଘୋରବାବୁଙ୍କ ବିଷୟରେ ଯାହା ଯାହା ଲେଖିଅଛନ୍ତି ସେଥିରେ ଆମ୍ଭମାନଙ୍କର କୌଣସି ଆପତ୍ତି ନାହିଁ, କେବଳ ଶେଷକୁ ଯେ ସମ୍ପାଦକ ବ୍ରାହ୍ମେତର ଧର୍ମାବଲମ୍ବୀମାନଙ୍କୁ ଲକ୍ଷ୍ୟ କରି ଗୁରୁମାନଙ୍କୁ ବ୍ୟଙ୍ଗ କରିଅଛନ୍ତି ଏହା ଅତ୍ୟନ୍ତ ଅବିବେଚନାର କାର୍ଯ୍ୟ ହୋଇଅଛି; କାରଣ ସମ୍ପାଦକମାନଙ୍କର କୌଣସି ଧର୍ମର ବିଦ୍ୱେଷୀ ହେବାର ଉଚିତ ନୁହେ ।

୩/୪ ସପ୍ତାହ ହେଲା ଷ୍ଟିମାର ଏ ନଗରକୁ ଆସୁ ନାହିଁ । ଏଥିପାଇଁ ଲୋକମାନଙ୍କର ଯାତାୟାତର ଓ ବାଣିଜ୍ୟାଦିର ଅତ୍ୟନ୍ତ ଅସୁବିଧା ଘଟୁଅଛି ।

ଆଜିକାଲି ଏ ଅଞ୍ଚଳରେ ଉତ୍ତମ ବୃଷ୍ଟି ହେଉଅଛି । ଦିନଯାକ ଖରା, ରାତିଯାକ ବର୍ଷା, ଲୋକେ ସୁଫଳର ଆଶା ଦେଖି ଅତ୍ୟନ୍ତ ଖୁସି ଅଛନ୍ତି । ବିଶେଷରେ

ଚାଷୀକୁଳ ଅତିଶୟ ହୃଷ୍ଟ, କାରଣ ଆଜିକାଲି ସେମାନଙ୍କର ସବୁ ଚାଷରୁ ସୁଫଳ ଫଳିବାର ସମ୍ଭାବନା ।

ଆମ୍ଭମାନଙ୍କର ଢ଼ଏଣ୍ଟଇନ୍ସ୍‌ପେକଟର ସ୍କୁଲ ପରିଦର୍ଶନ ନିମନ୍ତେ ଏ ନଗରରେ ଉପସ୍ଥିତ ହୋଇଅଛନ୍ତି । ବର୍ତ୍ତମାନ ଗବର୍ଣ୍ଣମେଣ୍ଟ ସ୍କୁଲର ପରୀକ୍ଷା ହେଉଅଛି ।

—

**ପ୍ରଥମ ବର୍ଷ ଦଶମ ସଂଖ୍ୟା**
**ଅକ୍ଟୋବର, ୧୮୭୩**

# ଇଟାଲୀୟ ଯୁବା

## ପୂର୍ବ ପ୍ରକାଶିତ ଉତ୍ତାରୁ

ଅବଶେଷରେ ମେଲାଣି ହେବା ନିମନ୍ତେ ଲରା ନିକଟକୁ ଗଲୁଁ । ସେହି ମେଲାଣିବେଳ ମନରେ ପଡ଼ିଲେ ଆମ୍ଭର ଦୁଃଖସାଗର ଉଦ୍ବେଳ ହୁଅଇ । ଉଦ୍ୟାନ ମଧ୍ୟରେ ଗୋଟିଏ ପଟ୍ଟଗୃହ ଥିଲା; ଲରା ସେଠାରେ ବସି ପୁସ୍ତକାଦି ପଢୁଥାଆନ୍ତି । ଆମ୍ଭର ଗୃହଗମନ ସମୟରେ ସେ, ସେହି ପଟ୍ଟଗୃହରେ ଥିଲେ, ଆମ୍ଭେ ସେଠାକୁ ଯାଇ ମେଲାଣି ମାଗିଲୁଁ । ଲରା ଅଶ୍ରୁପୂର୍ଣ୍ଣନୟନା ହୋଇ ଆମ୍ଭକୁ ଗମନାନୁମତି ଦେଲେ, ଅକୃତ୍ରିମ ପ୍ରେମର କେମନ୍ତ ଅନିର୍ବଚନୀୟ ପ୍ରଭାବ ! କିଛିଦୂର ଗମନ କରି ଆମ୍ଭେ ପୁଣି ଫେରି ଲରା ନିକଟକୁ ଗଲୁଁ । ତାହାକୁ ଚକ୍ଷୁଜଳରେ ଅଭିଷିକ୍ତ ଦେଖି ନୟନକୁ ପରିତୃପ୍ତ କଲୁଁ । ସେହି ପ୍ରବାଳ ଲୋହିତ ସୁକୋମଳ କରପଲ୍ଲବ ସ୍ପର୍ଶ ଏବଂ ଚୁମ୍ବନ କଲୁଁ । ଆହା ! ପ୍ରଣୟୀମାନଙ୍କର ମେଲାଣି ବେଳେ ଯେଉଁ ମନୋବେଦନା ହୁଏ, ସେହି ମନୋବେଦନାରେ ସୁଦ୍ଧା ଏକ ଅନିର୍ବଚନୀୟ ରସ ଅଛି, ସେ ରସର ତୁଳନାରେ ଅମୃତସୁଦ୍ଧା ତୁଚ୍ଛ ବୋଧ ହୁଅଇ । ଆଜିଯାଏ ସେହି ସ୍ଥାନ ଆମ୍ଭ ହୃଦୟପଟ୍ଟରେ ଅଙ୍କିତ ଅଛି । ସେହି ପୁଷ୍ପ ତରୁବେଷ୍ଟିତ ସୁରମ୍ୟ ପଟ୍ଟଗୃହ, ସେହି ରମଣୀୟ ଉଜ୍ଜ୍ୱଳ ମୁଖଚନ୍ଦ୍ରିକା, ସେହି ଅଶ୍ରୁପୂର୍ଣ୍ଣ ନୟନ ଯୁଗଳ, ସେହି ସ୍ନିଗ୍ଧ ଅବଲୋକନ ଏପର୍ଯ୍ୟନ୍ତ ଆମ୍ଭ ମନରେ ଜାଗରୂକ ଅଛି ।

ଅନନ୍ତର ଆମ୍ଭେ ଅପରାହ୍ନ ଚାରିଘଟିକା ସମୟରେ ଜାହାଜରେ ଚଢ଼ିଲୁଁ । କ୍ରମେ କ୍ରମେ ଦୂରବର୍ତ୍ତୀ ହେବାକୁ ଲାଗିଲୁଁ । ଗମନ ସମୟରେ ଆମ୍ଭର ନୟନଦ୍ୱୟ ସେହି ଉପବନସ୍ଥ ପଟ୍ଟଗୃହ ଆଡ଼କୁ ଧାଇଁଲା । ଥରକୁଥର ଆଗ୍ରହ ସହିତ ସ୍ଥିର ଦୃଷ୍ଟିରେ ତାହାକୁ ଦେଖିବାକୁ ଲାଗିଲୁଁ । ଦୂରତା ବଶତଃ ସେହି ପଟ୍ଟଗୃହ କ୍ରମଶଃ କ୍ଷୁଦ୍ର ଦିଶିଲା ଏବଂ ଶେଷକୁ ଗୋଟାଏ ଶଙ୍ଖପ୍ରାୟ ବୋଧ ହେଲା । କିଛିକାଳ ପରେ ସୂର୍ଯ୍ୟ ଅସ୍ତ ଉନ୍ମୁଖ ହେବାରୁ ସାଗରର ଜଳ ରକ୍ତବର୍ଣ୍ଣ ହେଲା । ତରଙ୍ଗମାଳା ଦେଖି ବୋଧ ହେଲା ଯେମନ୍ତ ପଦ୍ମରାଗମଣି ଘଟିତ ଚଞ୍ଚଳ ଗିରିମାନେ ଏକତ୍ରିତ ହୋଇ କୋଳାହଳ କରୁଅଛନ୍ତି । ଅନନ୍ତର ରଜନୀ କଳାବସ୍ତ୍ର ପିନ୍ଧି ଆସିଲେ, ଗଗନରେ ତାରା ଫୁଟିଲା; ମାତ୍ର ଆମ୍ଭେ ସେହି ପ୍ରାକୃତିକ ଶୋଭା ଦେଖିବାରେ ରତ ନ ହୋଇ ସେହି ଉପବନ ଦିଗକୁ ଥରକୁଥର ଅନାଇଲୁଁ । ଶେଷକୁ ତାହା ଆମ୍ଭର ଦୃଷ୍ଟି ପଥାତୀତ ହେଲା ।

ନେପ୍‌ଲସରେ ପହୁଞ୍ଚି ସତ୍ୱର ହୋଇ ପିତୃଗୃହ ମୁଖେ ଗମନ କଲୁଁ । ପିତାଙ୍କ ଅନୁଗ୍ରହରୁ ଏତେ କାଳ ବଞ୍ଚିତ ହୋଇଥିଲୁଁ । ଏବେ ସେହି ଅନୁଗ୍ରହ ପ୍ରାପ୍ତ ହେବା ନିମନ୍ତେ ଅତୀବ ବ୍ୟଗ୍ର ହୋଇ ଗୃହର ନିକଟବର୍ତ୍ତୀ ହେଲୁଁ । ଆମ୍ଭକୁ କେହି ଚିହ୍ନିପାରିଲେ ନାହିଁ ଏବଂ ପିତାଙ୍କର ଭୃତ୍ୟମାନେ ବିସ୍ମୟପୂର୍ଣ୍ଣ ଲୋଚନରେ ଆମ୍ଭକୁ ଅନାଇ ରହିଲେ । ମଠରୁ ପ୍ରସ୍ଥାନ କରିବା ସମୟରେ ଆମ୍ଭେ ଅଳ୍ପବୟସ୍କ ଥିଲୁଁ, ଏବେ ଆମ୍ଭର ଆକାର ପୁଣି ଶିକ୍ଷାଦି ବିଷୟରେ ଅନେକ ପରିବର୍ତ୍ତନ ହୋଇଥିଲା । ଆମ୍ଭେ ଯେ ସେହି ଗୃହର ଭାବୀ ପ୍ରଭୁ ହେବୁଁ ଭୃତ୍ୟମାନେ ଏହା ଜାଣି ନ ଥିଲେ, ଆମ୍ଭକୁ ଜଣେ ବିଦେଶୀ ବୋଲି ଜାଣିଥିଲେ, ଆମ୍ଭେ ସେଠାରେ ଉପସ୍ଥିତ ହୋଇ ଅଶ୍ରୁବେଗ ସମ୍ଭାଳି ନ ପାରି ଉଚ୍ଚୈଃସ୍ୱରେ କାନ୍ଦିଲୁଁ । ସେମାନେ ଦେଖି ବିସ୍ମୟାପନ୍ନ ହେଲେ, ମାତ୍ର ଯେତେବେଳେ ଆମ୍ଭେ ପରିଚୟ ଦେଲୁଁ, ସେମାନେ ଆଦର ସହିତ ଆମ୍ଭକୁ ଘର ଭିତରକୁ ଘେନି ଗଲେ । ସେମାନଙ୍କ ମଧ୍ୟରୁ ଜଣେ ଆଗେ ଯାଇ ଆମ୍ଭର ଆଗମନବାର୍ତ୍ତା ବାପାଙ୍କଠାରେ ଜଣାଣ କଲା । ପିତା ଆମ୍ଭର ପ୍ରତ୍ୟୁଦଗମନ ନିମନ୍ତେ ସସଜ୍ଜ ହେଉଅଛନ୍ତି । ଏମନ୍ତ ସମୟରେ ଆମ୍ଭେ ତାହାଙ୍କ ନିକଟରେ ଉପସ୍ଥିତ ହେଲୁଁ । ଯାହାଙ୍କୁ ଆମ୍ଭେ ପୂର୍ବରେ ହୃଷ୍ଟପୁଷ୍ଟ ଦେଖିଥିଲୁଁ, ଯାହାଙ୍କ କୁପିତ ବଦନ ଦେଖି ଆମ୍ଭେ ଭୟରେ ମୃତ ପ୍ରାୟ ହେଉଥିଲୁଁ, ସେହି ପିତାଙ୍କୁ ଏତେବେଳେ ଜରାଯୁକ୍ତ, ଶୀର୍ଣ୍ଣଶରୀର ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲୁଁ । ଦୁରନ୍ତ ପକ୍ଷାଘାତ ରୋଗ ଅଙ୍ଗମାନଙ୍କୁ ଅବଶ କରିଥିଲା, ଶରୀର ବିବର୍ଣ୍ଣ ହୋଇଥିଲା । ଯେତେବେଳେ ଆମ୍ଭେ ତାହାଙ୍କର ନିକଟସ୍ଥ ହେଲୁଁ ସେ ଗୋଟାଏ କାଷ୍ଠାସନରେ ବସି ଥିଲେ । ଶାରୀରିକ ସୌନ୍ଦର୍ଯ୍ୟ ଲୋପର ସହିତ ତାହାଙ୍କର ମାନସିକ ବୃତ୍ତିମାନଙ୍କର ସୁଦ୍ଧା ବହୁ ପରିମାଣରେ ବୈଲକ୍ଷଣ୍ୟ ହୋଇଥିଲା । ସେହି ଆଗେ ଆସିଥିବା ଭୃତ୍ୟ ଆମ୍ଭ ବୃତ୍ତାନ୍ତ ତାହାଙ୍କୁ ଅବଗତ କରାଉଥିଲା, ଏମନ୍ତ ସମୟରେ ଆମ୍ଭେ ତାହାଙ୍କ ପାଦତଳେ ପଡ଼ିଲୁଁ । ତାହାଙ୍କର ପୂର୍ବ ନିଷ୍ଠୁର ଅପିତୃଚିତ ବ୍ୟବହାର ଆମ୍ଭ ହୃଦୟରୁ ଅନ୍ତର୍ହିତ ହେଲା । ସେ ଆମ୍ଭର ପୂଜନୀୟ ପିତା, ଆମ୍ଭେ ତାହାଙ୍କଠାରେ ଅପରାଧୀ ହୋଇଅଛୁଁ, ସେତେବେଳେ କେବଳ ଏହି ଭାବ ଆମ୍ଭମନରେ ଉଦିତ ହେଲା । ବ୍ୟଗ୍ରଭାବରେ ତାହାଙ୍କ ଗୋଡ଼ ଧରି କାନ୍ଦିଲୁ ‘‘ପିତଃ କ୍ଷମା କରନ୍ତୁ ଆମ୍ଭର ଦୋଷ ହୋଇଅଛି, ବାରମ୍ଭାର ଏହି କାତରୋକ୍ତି କଲୁଁ । ପିତା ଆମ୍ଭକୁ ସତୃଷ୍ଣ ନୟନରେ ଚାହିଁଲେ, କମ୍ପାନ୍ୱିତ ହସ୍ତଦ୍ୱୟ ବିସ୍ତାର କଲେ ଏବଂ ବାଳକ ପ୍ରାୟ କାନ୍ଦିବାକୁ ଲାଗିଲେ ।

ସେହି ସମୟାବଧି ସେ ଆମ୍ଭକୁ ମୁହୂର୍ତ୍ତକ ନିମନ୍ତେ ସୁଦ୍ଧା ଆଖିରୁ ଅନ୍ତର କରି ଦେଲେ ନାହିଁ । ତାହାଙ୍କ ଜାଣିବାରେ ମହୀରେ ଆମ୍ଭବ୍ୟତୀତ ଆଉ ତାଙ୍କର କିଛି ପ୍ରୀତିକର ନ ଥିଲା । ଆଉସବୁ ତାହାଙ୍କୁ ଶୂନ୍ୟବତ୍ ବୋଧ ହେଲା । ସେ ବାକ୍‌ଶକ୍ତିବର୍ଜିତ

ହୋଇଥିଲେ ପୁଣି ତାହାଙ୍କ ବୁଦ୍ଧି ଲୁପ୍ତ ପ୍ରାୟ ହୋଇଥିଲା । ସର୍ବଦା ମୌନୀ ହୋଇଥିଲେ ଏବଂ କେବେ କେବେ ବିନା କାରଣରେ ରୋଦନ କରୁଥିଲେ । ଆମ୍ଭେ ଯେବେ କୌଣସି ସମୟରେ ଗୃହରୁ ବହିର୍ଗତ ହେଉଥିଲୁଁ, ସେ ଦ୍ୱାର ଆଡ଼କୁ ସ୍ଥିର ଦୃଷ୍ଟିରେ ଚାହିଁ ଆମ୍ଭର ଫେରିଆସିବାର ପ୍ରତୀକ୍ଷା କରୁଥିଲେ । ଆମ୍ଭେ ତେତେବେଳେ ପୁନଃ ପ୍ରବିଷ୍ଟ ହେଉଥିଲୁଁ, ଆମ୍ଭକୁ ଦେଖି ନୟନ ଜଳରେ ନିଜ ମୁଖ ଅଭିଷିକ୍ତ କରୁଥିଲେ ।

ଏମନ୍ତ ଅବସ୍ଥାରେ ତାଙ୍କଠାରେ ଆମ୍ଭର ମନୋଗତ ପରିଣୟ ବୃତ୍ତାନ୍ତ କହିବା ଅତ୍ୟନ୍ତ ବୋଧ ହେଲା । ତାହାଙ୍କଠାରୁ ମୁହୂର୍ତ୍ତ ନିମନ୍ତେ ଅନ୍ତର୍ହିତ ହେବାର ଅତ୍ୟନ୍ତ ନିଷ୍ଠୁରର କାର୍ଯ୍ୟ ମଣିଲୁ, ସୁତରାଂ ଆମ୍ଭେ କଣ କରିବୁଁ କିଛିହିଁ ସ୍ଥିର କରିପାରିଲୁଁ ନାହିଁ । ଲରାର ଚିନ୍ତା ଆମ୍ଭକୁ ଅଧୀର କଲା । ଆମ୍ଭର ନେପ୍‌ଲସକୁ ପ୍ରତ୍ୟାଗମନ, ପିତାଙ୍କର ଶରୀରାବସ୍ଥା, ଲରାର ବିରହଜନିତ ବ୍ୟାକୁଳତା, ଏହି ସମସ୍ତ ବିଷୟରେ ଲରାକୁ ଖଣ୍ଡିଏ ସୁଦୀର୍ଘ ଲିପି ଲେଖିଲୁଁ । ସମସ୍ତେ ଏହା ମୁକ୍ତ କଣ୍ଠରେ ସ୍ୱୀକାର କରିବେ ଯେ ମୁହୂର୍ତ୍ତକାଳ ପ୍ରିୟତମା ବିଚ୍ଛେଦ ତରୁଣ ପ୍ରଣୟୀକୁ ଯୁଗ ସହସ୍ର ପ୍ରାୟ ବୋଧ ହୁଅଇ । ପିଲିପଙ୍କୁ ଅନ୍ୟ ଏକ ପତ୍ର ଲେଖି ଲରାର ପତ୍ରକୁ ସେଥିର ଗର୍ଭସ୍ଥ କରି ପଠାଇଲୁଁ । ଫିଲିପ ଆମ୍ଭର ଅତି ପ୍ରୀତିଭାଜନ ଥିଲେ । ସୁତରାଂ ତାହାଙ୍କୁ ଜଣାଇ ସମସ୍ତ କାର୍ଯ୍ୟ କରୁଥିଲୁଁ । ଫିଲିପ ଆମ୍ଭ ପତ୍ରର ପ୍ରତ୍ୟୁତ୍ତର ପଠାଇଲେ, ସେହି ପତ୍ରରେ ବନ୍ଧୁତା ପୁଣି ବିଶ୍ୱସ୍ତତାର ଅନେକ ପ୍ରମାଣ ପାଇଲୁଁ । ଲରାଠାରୁସୁଦ୍ଧା ଖଣ୍ଡେ ଅଟଳ ପ୍ରଣୟସୂଚକ ପ୍ରତ୍ୟୁତ୍ତର ପ୍ରାପ୍ତ ହେଲୁଁ ।

ଏହି ପ୍ରକାରରେ କେତେଦିନ, କେତେ ସପ୍ତାହ, କେତେ ମାସ ଗଲା । ଅନନ୍ତର ପିତାଙ୍କ ପୀଡ଼ା ଉତ୍ତରୋତ୍ତର ବଢ଼ିଲା । କ୍ରମଶଃ ଶରୀର କ୍ଷୀଣ ହେଲା, ଆମ୍ଭେ ଭକ୍ତି ଏବଂ ଯତ୍ନସହିତ ତାହାର ଶୁଶ୍ରୂଷା କରିବାକୁ ଲାଗିଲୁ । ପିତୃଭକ୍ତି ଆମ୍ଭର ଅନ୍ୟାନ୍ୟ ମାନସିକ ଭାବମାନଙ୍କୁ ବଶୀଭୂତ କଲା । କିରୂପେ ପିତା ସୁସ୍ଥ ହେବେ କିରୂପେ ରୋଗରୁ ମୁକ୍ତ ହେବେ, ଏହି ଚିନ୍ତାରେ ଆମ୍ଭେ ସର୍ବଦା ଚିନ୍ତାନ୍ୱିତ ଥିଲୁଁ । ପୂର୍ବରେ ଆମ୍ଭେ ଯେମନ୍ତ ଅବାଧ୍ୟ ଥିଲୁ ଏବେ ତେମନ୍ତ ଆଜ୍ଞାକାରୀ ହେଲୁଁ । ବୃଦ୍ଧାବସ୍ଥାରେ ଆମ୍ଭେ ତାହାଙ୍କ କାର୍ଯ୍ୟରେ ଆସିଲୁ ଏହି ବିବେଚନାରେ ଆମ୍ଭର ମନ ପୁଲକିତ ହେଉଥିଲା ।

ଏଣେ ଲରାର ବିରହାନଳରେ ଆମ୍ଭର ଅନ୍ତର୍ଦାହ ହେଲା । ପୁଣି ସର୍ବଦା ତଦ୍ଗତ ମନରେ ଲରାର ଚିନ୍ତାକରି ଆମ୍ଭେ ସେହି ବିରହାଗ୍ନିରେ ଇନ୍ଧନ ପ୍ରଦାନ କଲୁଁ । ଲେପ୍‌ଲସରେ କାହାରି ସହିତ ଆଳାପ ଅଥବା ପରିଚୟ କରିନଥିଲୁଁ । ଆମ୍ଭର ଧନର ଅଭାବ ନଥିଲା; କିନ୍ତୁ ଧନ ଥିଲେହେଁ ଆମୋଦ ପ୍ରମୋଦରେ ପ୍ରତୀକ୍ଷା ହେଲା । ଦୁଇ ବିଷୟରେ ଆମ୍ଭ ମନଃ ଦୃଢ଼ରୂପେ ଆବଦ୍ଧ ରହିଲା । ଜନତାଙ୍କର ସେବା, ଲରାର ଭାବନା । ଆମ୍ଭେ ପିତାଙ୍କ ନିକଟରେ ସତତ ଉପବିଷ୍ଟ ହୋଇ ତାହାଙ୍କୁ ଔଷଧାଦି

ଦେଉଥାଉଁ ଏବଂ ଲରାର ଚିନ୍ତା କରୁଥାଉଁ । କେବେ କେବେ ତୂଳିକା ଘେନି ସେହି ମନୋମୋହିନୀର ଚିତ୍ର ପ୍ରସ୍ତୁତ କରୁଥାଉଁ । ଆଦର୍ଶ ନିମନ୍ତେ ଆମ୍ଭଠାରେ ଆଦର୍ଶ ଚିତ୍ର ନ ଥିଲା; କିନ୍ତୁ ହୃଦୟପଟ୍ଟରେ ଲରା ଅଙ୍କିତ ହୋଇଥିଲେ; ସୁତରାଂ ଲରାର ଚିତ୍ରପଟ୍ଟ ଅନାୟାସରେ ପ୍ରସ୍ତୁତ କଲୁ । ଏହି ସମୟରେ ଆମ୍ଭେ ଲରାଠାରୁ ଦ୍ୱିତୀୟ ଲିପି ପ୍ରାପ୍ତ ହୋଇ ଅତିଶୟ ଆହ୍ଲାଦିତ ହେଲୁଁ । ସେହି ଅମୃତମୟ ପତ୍ରିକାକୁ ନିର୍ଜ୍ଜନରେ ଥରକୁଥର ପଢ଼ିଲୁଁ, ପ୍ରତ୍ୟେକ ଶବ୍ଦ, ପ୍ରତ୍ୟେକ ଅକ୍ଷର, ଅବିଚଳିତ ପ୍ରେମ, ଅସାଧାରଣ ସହୃଦୟତା, ଅକଳଙ୍କିତ ରମଣୀୟତାର ପରିଚୟ ଦେଲା । ଫିଲିପଙ୍କଠାରୁ ସୁଦ୍ଧା ଖଣ୍ଡିଏ ଅକୃତ୍ରିମ ପ୍ରଣୟଗର୍ଭ ପତ୍ର ପାଇଲୁଁ । ସେ ଉଭୟେ ଆମ୍ଭ ବିରହେ ଅତି ବ୍ୟାକୁଳ ହୋଇଥିବାର ଲେଖିଥିଲେ ।

ଏହିରୂପେ ବତ୍ସରଦ୍ୱୟ ଅତୀତ ହେଲା । ସେହି ଦୁଇବର୍ଷ କାଳ ଆମ୍ଭକୁ ଦୁଇ ମନ୍ୱନ୍ତର ପ୍ରାୟ ବୋଧ ହେଲା । ଆମ୍ଭେ ଯେପରି ଗାଢ଼ ଅନୁରାଗୀ ଏବଂ ବ୍ୟଗ୍ରସ୍ୱଭାବ ଥିଲୁଁ, ଯେବେ ଆମ୍ଭଠାକୁ ଲରା ଏହିରୂପେ ପତ୍ର ନ ଲେଖିଥାନ୍ତେ ତେବେ ଆମ୍ଭର ପ୍ରାଣଧାରଣ କରିବା ଦୁଃସାଧ୍ୟ ହୋଇଥାନ୍ତା । ସେହି ପତ୍ର ପୁନଃ ପୁନଃ ପଢ଼ି ହୃଦୟର ଉତ୍କଣ୍ଠା ବିନୋଦନ କରୁଥାଉଁ । ଅନନ୍ତର କାଳ-ପବନ, ପିତାଙ୍କର ପ୍ରାଣ ପ୍ରଦୀପକୁ ନିର୍ବାଣ କଲା । ଭବତ୍ରାତା ଜଗଦୀଶ୍ୱରଙ୍କ ପବିତ୍ର ନାମ ସ୍ମରଣ କରି ପିତା ଜୀବନ ପରିତ୍ୟାଗ କଲେ । ତାହାଙ୍କୁ ଅଧିକକାଳ ମୃତ୍ୟୁ ଯାତନା ଭୋଗ କରିବାକୁ ହେଲା ନାହିଁ । ସେ ମରିବା ସମୟରେ ଆମ୍ଭ ମସ୍ତକରେ ହସ୍ତ ବୁଲାଇ ଅସ୍ପଷ୍ଟ ସ୍ୱରରେ ଆମ୍ଭକୁ ଆଶୀର୍ବାଦ କଲେ ।

ଆମ୍ଭେ ଯଥାବିଧାନରେ ତାହାଙ୍କର ଅନ୍ତ୍ୟେଷ୍ଟିକ୍ରିୟା କଲୁଁ । ପିତୃଦତ୍ତ ସ୍ଥାବର ଅସ୍ଥାବର ସମ୍ପତ୍ତିକୁ ଏପରି ସୁଶୃଙ୍ଖଳାବଦ୍ଧ କଲୁଁ ଯେ, ଦୂର ଦେଶରେ ଥାଇ ସୁଦ୍ଧା ଅନାୟାସରେ ତତ୍ତ୍ୱାବଧାରଣ କରିବାକୁ ସମର୍ଥ ହେବୁଁ । ଅନନ୍ତର ହୃଷ୍ଟଚିତ୍ତ ହୋଇ ଅର୍ଣ୍ଣବ ପୋତାରୋହଣରେ ଜେନୋୟା ନଗରକୁ ଯାତ୍ରା କଲୁଁ ।

ଅନୁକୂଳ ବାୟୁ ହେବାରୁ ସୁଖରେ ଗମନ କଲୁଁ । ଦିନେ ପ୍ରଭାତ କାଳରେ ଆମ୍ଭେ ପୋତର କୌଣସି ଉଚ୍ଚ ସ୍ଥାନରେ ବସି ଶୀତଳ ସାଗର ସମୀରଣ ସେବନ କରୁଅଛୁଁ ଏମନ୍ତ ସମୟରେ ଅପିନାଇନ୍ ପର୍ବତରେ ସୁନୀଳ ଶିଖରାବଳୀ ଦିଗ୍‌ବଳୟ ଭେଦ କରି ଆମ୍ଭର ନୟନ ଗୋଚର ହେଲା । କ୍ରମେ କ୍ରମେ ଆମ୍ଭେ ଜେନୋୟାର ନିକଟବର୍ତ୍ତୀ ହେଲୁଁ । ସେ ସମୟରେ ଗ୍ରୀଷ୍ମଋତୁର ପ୍ରାଦୁର୍ଭାବ, ନଭୋମଣ୍ଡଳ ନିର୍ମଳ ହୋଇଥିଲା । ଯେତେବେଳେ ସେହି ସମୁଦ୍ରତୀରସ୍ଥ ପଲ୍ଲୀଗ୍ରାମମାନ ଦୃଷ୍ଟିଗୋଚର ହେଲା, ସେହି ଉପବନ ନୟନପଥବର୍ତ୍ତୀ ହେଲା, ସେତେବେଳେ ଲୌହ ଯେମନ୍ତ ଅୟସ୍କାନ୍ତ ଅଭିମୁଖେ ଧାବମାନ ହୁଏ, ଆମ୍ଭ ମନଃ ସେହିରୂପ ଲରାର ପଟ୍ଟଗୃହାଭିମୁଖେ ଧାବମାନ ହେଲା ।

ଅନ୍ତଃକରଣ ଯେ କିପରି ବ୍ୟଗ୍ର ହେଉଥିଲା ଯେବେ ପାଠକ ? କେବେ ବିରହ ବେଦନା ଅନୁଭବ କରିଥିବେ, ତେବେ ଅବଶ୍ୟ ବୁଝିପାରିବେ । ଦୂରବୀକ୍ଷଣ ଦ୍ଵାରା ଆମ୍ଭେ ସେହି ସ୍ଥାନର ପ୍ରତ୍ୟେକ ଅଂଶ ଦେଖିଲୁଁ । ସେହି ଉଦ୍ୟାନ, ସେହି ଗବାକ୍ଷମାଳା, ସେହି କୁସୁମତରୁ ଆମ୍ଭର ଦୃଷ୍ଟିଗୋଚର ହେଲା । ଯେତେ ନିକଟବର୍ତ୍ତୀ ହେଲୁଁ ଆମ୍ଭର ଉତ୍କଣ୍ଠା ସେହି ପରିମାଣରେ ବଢ଼ିବାକୁ ଲାଗିଲା । ଅର୍ଣ୍ଣବ ପୋତ ମୃଦୁଗତିରେ ଯାଉଥିବାର ବୋଧ ହେଲା । କେବେ କେବେ ଇଚ୍ଛା ହେଲା ପୋତ ଉପରୁ ଝାମ୍ପ ଦେଇ ସମୁଦ୍ର ଜଳରେ ପଡ଼ି ସନ୍ତରଣଦ୍ଵାରା ତୀର ଧରିବୁ ।

ସନ୍ଧ୍ୟାସମୟ ଉପସ୍ଥିତ ହେଲା । ନିଶାନାଥ ତାରାମାନଙ୍କରେ ପରିବୃତ୍ତ ହୋଇ ଗଗନରେ ଉଦିତ ହେଲେ । ଶ୍ଵେତ ସମୁଦ୍ର ତିମିର ବିହୀନା ରଜନୀ, ପ୍ରିୟତମାର ସମାଗମନର ଆଶା, ଅନୁଭବୀ ପାଠକ ! ଆମ୍ଭର ମାନସିକ ଭାବ ଯେ କିପରି ହୋଇଥିବ ଭାଳି ଦେଖ । ଆମ୍ଭ ମନ କିପରି ବ୍ୟଗ୍ର ଥିବ ଅନୁଭବ କର । ଆମ୍ଭେ ସେ ବିଷୟରେ ଅଧିକ କହିବୁ ନାହିଁ । ଅଧିକ କହିଲେ କାଳେ ବାତୁଳ ବୋଲି ଉପହାସ କରିବ ଏହି ଭୟ ହେତୁରୁ ନିବୃତ୍ତ ହେଲୁଁ ।

ଦୁଇପ୍ରହର ରାତ୍ରି ସମୟରେ ଆମ୍ଭେ ବନ୍ଦରରେ ପହଞ୍ଚିଲୁଁ । ପରଦିନ ପ୍ରାତଃକାଳରେ ପୋତରୁ ଓହ୍ଲାଇ ଅଶ୍ଵାରୋହଣରେ ସେହି ଗ୍ରାମ୍ୟ ଉପବନକୁ ଯାତ୍ରା କଲୁଁ । ଯେତେ ଅଗ୍ରସର ହେଲୁଁ, ଆମ୍ଭ ମନଃ ଚିନ୍ତା ଏବଂ ସନ୍ଦେହରେ ବ୍ୟାକୁଳ ହେବାକୁ ଲାଗିଲା । ହୃଦୟରେ ନାନା ପ୍ରକାର ଆଶଙ୍କା ଉପୁଜିଲା; ବସ୍ତୁତଃ ସ୍ନେହରୁ ଅନିଷ୍ଟ ଆଶଙ୍କା ହୁଏ । କେତେବେଳେ ମନରେ ହେଲା ଯେ ଲରା ଗତପ୍ରାଣା ହୋଇ ଅଛନ୍ତି, କେବେ ଭାବିଲୁଁ ଯେ କୌଣସି ପ୍ରବଳ ରୋଗରେ ଆକ୍ରାନ୍ତ ହୋଇଅଛନ୍ତି । ଆମ୍ଭ ଶରୀର ଭୟରେ କମ୍ପିତ ହେଲା ! ବ୍ୟଗ୍ରତା ସହସ୍ର ଗୁଣ ବଢ଼ିଲା । ବେଗେଁ ଚାଲିଲୁଁ । ବହୁ ଶ୍ରମବଶତଃ ଅଶ୍ଵ ମୁଖରୁ ଫେଣ ନିର୍ଗତ ହେଲା । ଯେତେବେଳେ ଉପବନର ସମୀପବର୍ତ୍ତୀ ହେଲୁଁ ଅଶ୍ଵକୁ ଏକ କୁଟୀରବାସୀଠାରେ ରଖି, ପଦବ୍ରଜରେ ଗମନ କଲୁଁ । ନାନା ପ୍ରକାର ସନ୍ଦେହକୁ ହୃଦୟରେ ସ୍ଥାନ ଦାନ କରି ଥିଲୁଁ ବୋଲି ଆପଣାକୁ ବହୁ ଧିକ୍କାର କଲୁଁ, କହିଲୁଁ ହୃଦୟ ! ସ୍ଥିର ହୁଅ, ମିଥ୍ୟା ଆଶଙ୍କାରେ କାହିଁକି ଭୀତ ହେଉ ଅଛ !!

ଉଦ୍ୟାନରେ ପ୍ରବେଶ କରି ଦେଖିଲୁଁ ଯେ ଆମ୍ଭ ଗମନ ସମୟରେ ଉପବନ ଯେପରି ଅବସ୍ଥା ଥିଲା ବର୍ତ୍ତମାନ ସୁଦ୍ଧା ସେହି ରୂପ ଅଛି । ଏହା ଦେଖି ଆମ୍ଭ ମନ କିୟତ୍ପରିମାଣରେ ଆଶ୍ଵସ୍ତ ହେଲା । ପୂର୍ବରେ ଯେଉଁଠାରେ ଆମ୍ଭେ ବସି ଲରା ସହିତ କଥୋପକଥନ କରୁଥିଲୁଁ ସେ ସ୍ଥାନ ସେହି ଭାବରେ ଅଛି । ଯେଉଁ ଫୁଲବୃକ୍ଷମାନଙ୍କରୁ ଫୁଲ ତୋଳି ଲରାକୁ ଦେଉଥିଲୁଁ ସେହି ତରୁମାନେ ସେହି ରୂପ ପୁଷ୍ପଭାରାବନତ

ଅଛନ୍ତି । ମଧୁରାଳାପୀ ବିହଙ୍ଗମାନେ ସେହିରୂପେ ଗାଉଅଛନ୍ତି । ଆଶା ଏବଂ ଆନନ୍ଦରେ ଆମ୍ଭ ମୁଖକାନ୍ତି ଉଜ୍ଜ୍ୱଳ ହେଲା । ଆମ୍ଭେ ପୂର୍ବରେ ଗୋଟିଏ ନିକୁଞ୍ଜ ମଧରେ ବସି ପୁସ୍ତକ ଅଧୟନ କରୁଥିଲୁଁ; ସେହି କୁଞ୍ଜ ଭିତରକୁ ଯାଇ ଦେଖିଲୁଁ ଯେ ଖଣ୍ଡେ ପୁସ୍ତକ ଏବଂ ତହିଁ ଉପରେ ଖଣ୍ଡିଏ ଦସ୍ତାନା ଅଛି । ସେ ବସ୍ତ୍ର ଆମ୍ଭେ ପୂର୍ବରେ ଲରାକୁ ଦେଇଥିଲୁଁ । ସେହି ଦସ୍ତାନା ଦେଖି ଆମ୍ଭ ଶରୀର ପୁଲକିତ ହେଲା । କହିଲୁଁ ''ନା ଏବେ ଆଉ କିଛି ଭୟ ନାହିଁ । କାହିଁକି ବୃଥାରେ ଶଙ୍କିତ ହୋଇଥିଲୁଁ'' ।

କ୍ରମଶଃ

# ଆମ୍ଭମାନଙ୍କ ଗୃହ

ସୁବିଜ୍ଞ ପାଠକମାନେ ! ଦର୍ପଣ ବିବେକୀ, ରୂପଛବି ଘେନି ଅନେକଥର ଆପଣମାନଙ୍କ ଛାମୁରେ ଉପସ୍ଥିତ ହୋଇଅଛୁଁ, ଆଜରେ ''ଗୃହ'' ଏହି ଛବିଖଣ୍ଡି ଦେଖାଇ ଆପଣମାନଙ୍କୁ ନମସ୍କାର କରିବୁଁ ।

ଗୃହ ବୋଲନ୍ତେ ନଗର ଶୋଭାସାଧକ, ପରିଷ୍କୃତ, ରଞ୍ଜିତ, ସଜ୍ଜିତ, ଦୀର୍ଘଗବାକ୍ଷ ଶୋଭିତ ଆସବାବ ପରିପୂରିତ ଅଟ୍ଟାଳିକାକୁ ବୁଝାଇବ ନାହିଁ, ବା ଅନ୍ୟଭଳି ଛପର ଖପର ଘରକୁ ବୁଝାଇବ ନାହିଁ, ଏ ତେମନ୍ତ ଗୃହ ନୋହେ, ଏଠାରେ ଗୃହ ବୋଲିବାରେ ବାହାରର ଗୃହ ନୋହେ, ଦାଣ୍ଡକୁ ଦିଶିଲା ଗୃହ ନୋହେ, ଅଭ୍ୟନ୍ତରର ଗୃହ ଅର୍ଥାତ୍ ପୁରବାସୀମାନଙ୍କର ମାନସିକ ଅବସ୍ଥା, ଚରିତ୍ର, ଶିକ୍ଷା, ବ୍ୟବହାର, ଆଚରଣ ଏମାନ ଘେନି ଯେ ଗୃହ ସେ ପ୍ରକୃତ ଗୃହ, ଦର୍ପଣ ଆଜି ଏମନ୍ତ ଉତ୍କଳ ଗୃହର ଗୋଟିଏ ସାନଛବି ଦେଖାଇବ ।

ମନୁଷ୍ୟ ଜୀବନର ଯୋଡ଼ିଏ ଅବସ୍ଥା, ଏକ ଧର୍ମଜୀବନ, ଦ୍ୱିତୀୟ ନୀତିଜୀବନ । ଧର୍ମଜୀବନ ହୃଦୟରେ, ନୀତିଜୀବନ ଗୃହରେ । ଧର୍ମଜୀବନ, ନିର୍ମଳ, ପବିତ୍ର, ଶାନ୍ତ ଓ ସୁନ୍ଦର, ନୀତିଜୀବନ, ପ୍ରଫୁଲ୍ଲ ପ୍ରୀତିକର ଓ ମନୋହର ।

ଧର୍ମ ଓ ନୀତିବିହୀନ ଜୀବନ ଜୀବନ ନୁହଇ, ପ୍ରକୃତ ମନୁଷ୍ୟ ଜୀବନ ନୁହଇ, ପଶୁଜୀବନ, ପୁଣି ଯେ ଗୃହରେ ଏମନ୍ତ ଜୀବନ ବିଶିଷ୍ଟ ମନୁଷ୍ୟ ନାହାନ୍ତି ସେ ଗୃହ ଗୃହ ନୁହଇ ପ୍ରକୃତ ମନୁଷ୍ୟର ଗୃହ ନୁହଇ ଅରଣ୍ୟ । ଆଗେ ନୀତି ପଛେ ଧର୍ମ । ନୀତିପତ୍ତନ ଉପରେ ଧର୍ମ ମନ୍ଦିର ନିର୍ମାଣ ହୁଅଇ ନୀତି ଆଦି, ନୀତି ମନୁଷ୍ୟର ସମ୍ପଦ । ନୀତିରେ ଯେ ମନ ସଂସ୍କୃତ, ସେ ମନ ସୁନ୍ଦର, ନୀତିରେ ଯେ ଗୃହ ରଚନା ହୁଅଇ ସେ ଗୃହ ସୁନ୍ଦର, ନୀତିରେ ଯେ ସମାଜ ରଚନା ହୁଅଇ ସେ ସମାଜ ସୁନ୍ଦର, ଏବେ ଆମ୍ଭମାନଙ୍କ ଉତ୍କଳ ଗୃହର ନୀତି କେମନ୍ତ, ତହିଁର ବିଚାର କରାଯାଉ ।

ଶିକ୍ଷା, ସଂସ୍କାର, ଆଚାର, ଚରିତ୍ର ଓ ଅଭ୍ୟାସ ଏ ପାଞ୍ଚଗୋଟି ଗୃହର ପ୍ରଧାନ ଅଙ୍ଗ, ନୀତି ଏମାନଙ୍କର କେନ୍ଦ୍ର ।

ଶିକ୍ଷା;– ଶିକ୍ଷା ଦୁଇପ୍ରକାର, ଏକ ଗୃହରେ-ପିତାମାତାଙ୍କ ଠାରେ, ଅନ୍ୟ ବିଦ୍ୟାଳୟରେ ଶିକ୍ଷକଠାରେ । ଗୃହରେ ଯେ ଶିକ୍ଷା, ସେ ଶିକ୍ଷା ଅତି ଚମତ୍କାର, ହୃଦୟଗ୍ରାହୀ, ଅପରିବର୍ତ୍ତନୀୟ । ଗୃହଶିକ୍ଷା ଭଲ ହେଉ ବା ମନ୍ଦ ହେଉ ଲୁଚି ରହିବାର ନୋହେ, ଦିନକୁ ଦିନ ଉଜ୍ଜ୍ୱଳ ଦିନକୁ ଦିନ ଫୁଟି ବାହାରୁଥାଏ । ଗୃହରେ ପାଞ୍ଚବର୍ଷର ଶିକ୍ଷା ବାହାରେ ପଞ୍ଚାଶ ବର୍ଷର ସଙ୍ଗେ ତୁଲ । ପିଲାମାନଙ୍କ ହୃଦୟ କୋମଳ, ସେ କୋମଳ ହୃଦୟରେ ଯାହା ବାଜଇ ତାହା ଅପନୀତ ହେବାର ନୋହେ, ପ୍ରସ୍ତରାଙ୍କିତବତ୍ ଉଜ୍ଜ୍ୱଳ ରୁହଇ ।

ଗୋଟିଏ କୋମଳ କଖାରୁରେ ଏକ ଦାଗ ଦିଅ, ସେ କଖାରୁ ବୃଦ୍ଧି ସଙ୍ଗେ ଦାଗ ବୃଦ୍ଧି ପାଉଥିବ । ସୁବିଖ୍ୟାତ ସାର୍ ଉଇଲିୟମ ଜୋନ୍ସ ଦିନେ ବାଲ୍ୟକାଳସୁଲଭ ଖେଳ ଖେଳୁଥିଲେ, ପଇସା ଗୋଟାଏ ଏଣୁ ତେଣିକି ତେଣୁ ଏଣିକି ଗଡ଼ାଉଥିଲେ, ତାହାଙ୍କ ମାତା ସେହି ପଥ ଦେଇ ଚାଲି ଯାଉ ଯାଉ ଜୋନ୍ସ ତାହାଙ୍କୁ ପଚାରିଲେ, "ମା, ମା, ପଇସା କିପାଇଁ ଗଡ଼ିଗଲା" ? ଏ ଅତିଶକ୍ତ କଥା, ଗଭୀର କଥା, ବିଜ୍ଞାନର କଥା, ପିଲାମନ ବଡ଼ ଅନୁସନ୍ଧାନୋତ୍ସୁକ, ସବୁ କଥା ଜାଣିବାକୁ ଇଚ୍ଛା ପ୍ରବଳ, ଶତ ଶତ ବିଜ୍ଞାନର କଥା ପିଲାଏ ପଚାରି ଦିଅନ୍ତି ।

ଜୋନ୍ସଙ୍କ ମାତା ଏହି ପ୍ରଶ୍ନର ଉତ୍ତର ଦେବାକୁ ବିପଦରେ ପଡ଼ିଲେ, କଣ କରନ୍ତି କଥାକେ ସରିବ ନାହିଁ, ଶତ କଥା ବୋଇଲେ ପୁଅ ମଧ ବୁଝିପାରିବ ନାହିଁ, ଏହି ଚିନ୍ତା କରି ସେ ବିଦ୍ୟାବତୀ ସରଳ କଥାଏ ମନରେ ତୋଳି, ସରଳଭାବରେ ସରଳ ଓ କୋମଳ ସ୍ୱଭାବ ଜୋନ୍ସକୁ "ବାପା ପଢ଼, ବୁଝି ପାରିବ" ଏହି କଥା ଗୋଟି ବୋଲି କାର୍ଯ୍ୟାନ୍ତରେ ଚଳିଗଲେ । ଜୋନ୍ସ ମାତାଙ୍କର ଭାବପୂର୍ଣ୍ଣ ଏହି ଉପଦେଶ ଗୋଟି ଭଜି ପୃଥିବୀରେ ବିଖ୍ୟାତ୍ ହେଲେ । ମାତା ପିତାଙ୍କଠାରୁ ବାଲ୍ୟକାଳରେ ଗୋଟିଏ ଉପଦେଶ ଶିଶୁ ମନକୁ ଗଢ଼ଇ । ଅଭିମନ୍ୟୁ ଗୃହରେ ମାତାପିତାଙ୍କ କଥୋପକଥନରୁ ବ୍ୟୂହ ଭେଦିବାର ବିବରଣ ଶୁଣିଥିଲେ, ତେଣୁ ମହାଭାରତ ଯୁଦ୍ଧରେ ମହାବୀର, ଏ ବୀର ବୀରଦର୍ପରେ ଅଠର ଅକ୍ଷୌହିଣୀ ସେନା କମ୍ପିତ ହୋଇଥିଲେ ।

ପୂର୍ବକାଳରେ ମୁନିପୁତ୍ରେ ଏଡ଼େ ସାଧୁ ହେଉଥିଲେ କିପାଇଁ ? ସେମାନେ ଗୃହରେ ପିତାମାତାଙ୍କଠାରୁ ଶାସ୍ତ୍ର ଶୁଣୁଥିଲେ, ସାଧୁ ଉପଦେଶମାନ ଶିଖୁଥିଲେ । ସ୍ପାର୍ଟା ନଗରୀ ବୀର ପ୍ରସବିଣୀ ବୋଲି ଜଗତରେ ବିଖ୍ୟାତ କିପାଇଁ ? ହେତୁକି ସେମାନେ ଯୁଦ୍ଧକୁ ଯିବାବେଳେ ମାତାଠାରୁ ଏହି ଉପଦେଶ ଶୁଣି ଯାଉଥିଲେ । "ପୁତ୍ରେ ! ଶତ୍ରୁକୁ ମାର ବା ଶତ୍ରୁ ହସ୍ତରେ ମର, ରଣେ ଭଙ୍ଗଦେଇ ଗୃହକୁ ଫେରି ଆସନା" । ଆଜି ପୃଥିବୀର ଯେ ଯେ ଅଂଶରେ ଯେ ଯେ ଜାତି ସଭ୍ୟ ହୋଇ ଅଛନ୍ତି, ଜ୍ଞାନୀ ହୋଇ ଅଛନ୍ତି, ବୁଦ୍ଧିମାନ୍

ହୋଇ ଅଛନ୍ତି, ବିଦ୍ୱାନ୍ ହୋଇ ଅଛନ୍ତି, ଅବଶ୍ୟ ସେମାନଙ୍କ ଗୃହରେ ସୁଶିକ୍ଷା ଅଛି, ନୀତିଶିକ୍ଷା ଅଛି ।

ଉତ୍କଳ ଗୃହଶିକ୍ଷା ଅତି ବିଚିତ୍ର, କି ଦୁଃଖୀ କି ଧନୀ ଉତ୍କଳ ଗୃହଯାକ ସକଳ ଗୃହରେ ବୁଲି ଦେଖ ଏମାନଙ୍କ ଗୃହଶିକ୍ଷା ଦେଖି ବିସ୍ମୟ ମଣିଷ, କେହି ଲୋକ କିଛି ମାଗିବା ଆଶାରେ ହେଉ ବା କିଛି ଦେନା ପାଉନା ଘେନି ହେଉ କୌଣସି ଗୃହସ୍ଥ ଘରଠାକୁ ଗଲେ, ଗୃହସ୍ୱାମୀ ଭିତରୁ ଥାଇ ଅମୁକେଇ ଲୋକ ଆସି ଅଛି ସମାଚାର ପାଇଲେ, ପୁଅକୁ ଡାକି ବୋଇଲେ, ''ମଦନ ଯା ସେ ଲୋକକୁ ବୋଲିବୁ ବାପା ଘରେ ନାହିଁ'' । ପୁତ୍ର ପିତା ଆଜ୍ଞା ପାଳନ କଲେ । ବାପ ପୁଅ ଦୁଇଜଣ ମିଳି ସହଜରେ ମିଥ୍ୟା କହିଲେ । ଆଗନ୍ତୁକ ପ୍ରତାରିତ ହୋଇ ଫେରିଗଲା । ପୁଅର ଦୋଷ କି ? ଲୋକେ ବୋଲନ୍ତି, ''ବାପ ଗୁଣେ ପୁତା ମାତା ଗୁଣେ ଦୁହିତା'' । ଯେବେ ବାପ ମିଥ୍ୟାରେ ପଣ୍ଡିତ, ତେବେ ପୁଅ ସେ ପୈତୃକ ଗୁଣରେ ଅନାଦର କରିବ କିପାଇଁ । ଏକ ପିତା ପୁତ୍ରକୁ ସମ୍ମୁଖରେ ଦେଖି ସୁଦ୍ଧା ଏମନ୍ତ ଅଶ୍ଳୀଳ ଭାଷାରେ କଥା କହୁଅଛନ୍ତି ଯେ ଶୁଣିଲେ ଲଜ୍ଜିତ ହେବାକୁ ହୁଏ । ଏକ ପିତା ପ୍ରତିବାସୀ ବା ପରିଜନ ସଙ୍ଗେ ଅତି କଦର୍ଯ୍ୟ ବାଣୀରେ କଳି ଆରମ୍ଭି ଅଛନ୍ତି, ପୁଅ ସେ ବାଣୀଗୁଡ଼ିକ ନୂଆ ସନ୍ଥ ଅଭ୍ୟାସ କଲା ପ୍ରାଏ ମନେ ମନେ ଘୋଷି ପକାଉ ଅଛନ୍ତି । ଏକ ବାପ ପିଣ୍ଡାରେ ବସି ପୁଅକୁ ପିକାଖିଆ ଶିଖାଉ ଅଛନ୍ତି । କେଉଁ ଧୂମପ୍ରିୟ ସହରିଆ ବା ସହରିଆବାପ ପୁଅକୁ ହୁକାଚୁମ୍ବନ କରାଇ ଦେଉଅଛନ୍ତି, ଧୂଆଁ ପିଲା ତାଲୁକୁ ଉଠିଯିବାର ଦେଖି ଅତି ପ୍ରେମରେ ହସୁ ଅଛନ୍ତି । ଏକ ଅଫିମୀ ପିତା ବସି ଅଫିମ ଖାଉ ଅଛନ୍ତି, ତାଙ୍କ ସ୍ନେହ ପିତୁଳିପୁଅ ପାଶରେ ବସି କ୍ରୀଡ଼ା କରୁଅଛି, ବାପ ସେ କ୍ରୀଡ଼ାରେ ମୁଗ୍ଧ ହୋଇ ଗୁଡ଼ ମିଶ୍ରିତ ଛେନାପାଏ ସେ ଅଫିମରୁ ଟିକିଏ ପୁଅକୁ ଖୁଆଇ ଦେଉଅଛନ୍ତି । ଆଉ ଏକ ପିତାଙ୍କର ପୁଅକୁ ଲେଖାପଢ଼ା ଶିଖାଇ ପଣ୍ଡିତ କରିବାର ବଡ଼ ଇଚ୍ଛା, ବେଳେ ବେଳେ ପୁଅକୁ ଚାଟଶାଳୀରେ କି ପଢୁ ଅଛି ଦେଖିଥାନ୍ତି, ଆଉ କେଉଁ କେଉଁ ଦିନ ସନ୍ଧ୍ୟାଉତ୍ତାରୁ ପୁଅକୁ ପାଖରେ ବସାଇ ପଢ଼ାଉଥାନ୍ତି ପଢ଼ା ''ଏତ ଯେତେକେ ନସନ୍ଥାନଂ ତିଷ୍ଟତେକେ ନବୁଦ୍ଧିମାନ୍'' ଏହି ପଦକୁ ଦୁଇ ଚାରିଥର ଘୋଷାନ୍ତି । ବାପଙ୍କ ସଂସ୍କୃତ ଶ୍ଳୋକରେ ପୁଅର ତୁଣ୍ଡ ଉଲଟେ ନାହିଁ । ବାପ ଏମନ୍ତ ସମୟରେ ଦୁଇ ଚାରି ଗଳାଧକ୍କା ଦେଇ ବୋଲନ୍ତି, ''ଏଟା କିଛି ହେବ ନାହିଁ'' ପଢ଼ା ସଇଲା, ପୁଅ ମଧ ଢୁଳାଇଗଲା, ଏହିଭଳି ଆମ୍ଭମାନଙ୍କ ପିତାଙ୍କଠାରୁ ଗୃହରେ ଶିକ୍ଷା । କେତେ ଦେଖିବ, ଏକ ଏକ ବୋଲିବାକୁ ଗଲେ ଅନେକ ହେବ, ଏବେ ମାତାଙ୍କଠାରୁ ଆମ୍ଭମାନଙ୍କ ଗୃହରେ ନୀତିଶିକ୍ଷା ଥୋକାଏ ଶୁଣ । ପୂର୍ବରେ ବୋଲା ହୋଇଅଛି ମାତାଠାରୁ ଶିକ୍ଷା ସହଜ ଓ ଅପରିମିତ । ଶିଶୁ, ମାତା ଯତ୍ନରେ ବଢ଼ଇ, ମା ସ୍ନେହରେ ପ୍ରଫୁଲ୍ଲ ହୁଅଇ, ମାତା ଆନନ୍ଦରେ ନାଚଇ, ମାତା କ୍ରୋଧରେ କ୍ରନ୍ଦନ କରଇ । ମାତା କ୍ରୋଡ଼ ଶିଶୁର ଆସନ । ମାତା ଆଦି ଗୁରୁ, ତେଣୁ ''ମା'' ଶବ୍ଦ ଏଡ଼େ ମଧୁର,

ଏଡ଼େ କୋମଳ, ପୃଥିବୀର ସକଳଜାତି ଶିଶୁ ସକଳଭାଷାରେ ଏ ଶବ୍ଦ ଗୋଟି ଆଗେ ଉଚ୍ଚାରଣ କରନ୍ତି । ଆଦିଶିକ୍ଷା ମାତାଠାରୁ, ଜୀବନର ସାର ଶିକ୍ଷା ମାତାଠାରୁ । ଆମ୍ଭମାନଙ୍କ ଗୃହରେ ମାତୃଶିକ୍ଷା କେମନ୍ତ ବେଳେ ଆଲୋଚନା କରି ଦେଖାଯାଉ । ସକଳ ଉଡ଼ିଶ୍ୟାଯାକେ ଚକ୍ଷୁ ଫେରାଇ ଦେଖ, ପ୍ରତି ଗୃହକୁ ଯାଇ ଦେଖ, ଦେଖିବ ଉତ୍କଳୀୟ ମାତାମାନେ ପୁତ୍ରକନ୍ୟାମାନଙ୍କୁ ପ୍ରତିଦିନହିଁ ନୀତିଶିକ୍ଷା ଦେଉ ଅଛନ୍ତି । କେଉଁ ମାତା ଗୃହର ଆରତି ବଡ଼ାଇ ପ୍ରତିବେଶିନୀଗଣେ ବେଷ୍ଟିତ ହୋଇ ପୁଅକୁ କୋଳେ ଘେନି ବସିଅଛନ୍ତି । ପୁଅ ଖେଳୁଅଛି, ଖେଳ ଦେଖି ମାତାଙ୍କ ମନ ଆନନ୍ଦରେ ନାଚୁ ଅଛି ହସୁଅଛନ୍ତି, ପୁଅର ଭାବୀ ଶୁଭାଶୁଭ ଛବି କଳ୍ପଣା କରୁଅଛନ୍ତି, ପୁଣି ବାତ୍ସଲ୍ୟ ପ୍ରେମରେ ଭାସି ପୁଅକୁ ପଚାରୁ ଅଛନ୍ତି "ରାମ, ବହୂ ଆଣିବୁ ନା ? କ ହଁ, ବହୂ କି କରିବ ? କି, ଭାତ ରାନ୍ଧିବ" । ପ୍ରତିବେଶିନୀ ଜଣକୁ ସମ୍ବୋଧି "ଅପା ମୋର ସବୁ ସୁଖ ସଇଲାଣି, ତିନି ବେଳା ଖାଇଲିଣି, ତିନିଖଣ୍ଡ ପିନ୍ଧିଲିଣି, ତିନିଚିଜ ନାଇଲିଣି, କେବଳ ରାମର ହାତଛନ୍ଦା ଦେଖି ମରେଁ । ଏତିକି ଆଖିସୁଲଭ କି ମୋ କପାଳରେ ଘଟିବ ? ପାଠକେ ! ଏ ମାତାଙ୍କ ମନ ଦେଖନ୍ତୁ, ଏମାତା କି ପୁଅକୁ ଯୋଗ୍ୟ କରାଇବାକୁ ଭାଳୁ ଅଛନ୍ତି ! ଏମାତା କି ପୁଅକୁ ମନୁଷ୍ୟ କରାଇବାକୁ ଭାଳୁଅଛନ୍ତି ? ନା, ବାଲ୍ୟ ବିବାହ ପୁତ୍ରର ବିନାଶ ଏହାଙ୍କର ଉଦ୍ଦେଶ୍ୟ । ଆଉ ଏକ ମାତା ନୂଆ ଘରଣୀ, ଛୁଆ ପାଳିବାରେ ବଡ଼ ଗର୍ବିଣୀ, କ୍ଷଣେ ଛୁଆକୁ ଛାଡ଼ନ୍ତି ନାହିଁ । ଛୁଆକୁ ନାଚିବାରେ ଡିଆରୁ ଅଛନ୍ତି, ଦୌଡ଼ିବାରେ ଡିଆରୁ ଅଛନ୍ତି, ଗଛ ଚଢ଼ି ଶିଖିବାବେଳେ ଡିଆରୁ ଅଛନ୍ତି । ପୁଷ୍କରିରେ ପହୁଁରିବା ବେଳେ ଡିଆରୁ ଅଛନ୍ତି; ସାଇପଡ଼ିସାଏ ଭାଳୁ ଅଛନ୍ତି ଏ ଆଚ୍ଛା ମା, ଆଚ୍ଛା ପୁଅକୁ ତିଆରି ହାତଗୋଡ଼ ଭାଙ୍ଗି ରଖିଅଛି । ପ୍ରକୃତ ଏମାତା ଚିରଦିନ ନିମନ୍ତେ ପୁଅର ହାତଗୋଡ଼ ଭାଙ୍ଗି ରଖିଲେ । ଯେ ପୁଅର ସ୍ୱଭାବ ଜାତ ହସ୍ତପଦ ଚାଳନାରେ ଗୃହରେ ଦଗା ପଡ଼ିଲା ସେ ପୁଅର କାର୍ଯ୍ୟ କ୍ଷେତ୍ରରେ ବାହାଦୁରି କାହୁଁ ଆସିବ ? ସେ ପୁଅ ଚିରକାଳ ନିମନ୍ତେ ଗୃହରୁ ଅକର୍ମଣ୍ୟ ଓ ଅପଦାର୍ଥ ହେଲା, କଷ୍ଟସାଧ କର୍ମକୁ ଆଉ ସେ କେଭେ ଯୋଗ୍ୟ ହେବ ନାହିଁ, ଚିରକାଳ ରୋଗ ରୋଗ କରି ମରିବ ।

ଆଉ ଏକ ମାତା ବଡ଼ ବେଶ ବିନ୍ୟାସ ପ୍ରିୟା, ଅଳଙ୍କାର ରଙ୍କୁଣୀ । ପିଲା ଛୁଆମାନଙ୍କୁ ଭଲ ଲୋଗା ପିନ୍ଧାଇବେ, ଭଲ ଭଲ ଅଳଙ୍କାରରେ ସଜାଇବେ, ଏହି ତାହାଙ୍କର ଅଭ୍ୟନ୍ତରର ବାସନା । ଏ ଉଦ୍ଦେଶ୍ୟ ସାଧିବା ପାଇଁ ପ୍ରଥମ ଦିନ ସ୍ୱାମୀକୁ ଅନୁରୋଧ କରନ୍ତି । ଦ୍ବିତୀୟ ଦିନ ବିରକ୍ତ, ତୃତୀୟ ଦିନ ଗାଳି, ଚତୁର୍ଥ ଦିନ ସ୍ୱାମୀ ସଙ୍ଗେ କଳି ଲଗାଇ ମାନିନୀ ହୋଇ ଉପାସେ ଶୋଇ ରହନ୍ତି । ପଡ଼ିଶାଏ ଆସି ପଚାରିଲେ ବୋଲନ୍ତି, "ହଁ, ଗୋ ମୋର ଘରକରଣାରେ କି ସୁଖ, ଛୁଆପିଲାଙ୍କରତ ଦ୍ୱିଚିଜ ଗହଣାଗାଣ୍ଠି ନାହିଁ, ଛାର ସେ ଘରକରଣା, ବାହାରେ ଅଳଙ୍କାର ଓନ୍ଦର୍ ବସନମାନ ଦେଇ ପିଲାଙ୍କୁ ଭୂଷଣ କରିବା ବୃଥା । ଭୂଷଣ ଭିତରେ ହେବା ପ୍ରୟୋଜନ,

ନୀତି ଓ ଜ୍ଞାନରତ୍ନରେ ଯେ ମନ ଭୂଷିତ ସେ ମନ ପ୍ରକୃତ ଭୂଷଣ ପାଏ, ସେ ପୁଅର ଶୋଭା ମଣିକାଞ୍ଚନ ପ୍ରାୟ ନଛି ହୁଏ । ଏହି ଜ୍ଞାନଗୋଟି ଯେବେ ଅଭୂଷଣାନୁରାଗିଣୀ ମାତାଙ୍କର ଥାଆନ୍ତା ତେବେ କି ନ ହୁଅନ୍ତା କି ? ଏମନ୍ତ ଚିନ୍ତା ବୃଥା ଆମ୍ଭମାନଙ୍କ ଗୃହଶିକ୍ଷା ତେମନ୍ତ ନୁହଇ । ଆଉ ଏକମାତା ପୁଅକୁ କୋଳେ ବସାଇ ଅନ୍ନବ୍ୟଞ୍ଜନ ଭୁଞ୍ଜାଉ ଅଛନ୍ତି । ବଳାଇ କରି ଗିଳାଉ ଅଛନ୍ତି, ପିଲା କାନ୍ଦୁଅଛି, ସେ ପିଲାକୁ କାନ୍ଦଣାରୁ ବିରତ କରିବା ପାଇଁ "ବାଘ ଅଇଲା, ଭାଲୁ ଅଇଲା, କୁକୁର ଅଇଲା, ମାକଡ଼ ଅଇଲା" ଏମନ୍ତ ଭିତିଜନକ ନାନାଭଳି ଅଲିକ କଥା ବୋଲୁଅଛନ୍ତି ।

ଆଉ କେଉଁ ସମରେ ପିଲା କିଛି ନେବାନିମନ୍ତେ ଗୋଳକଲେ ମାତା "ଛୁଆଧରା ଆସୁ ଅଛି ଭୂତ ଆସୁଅଛି" ଏହି କଥାମାନ ବୋଲି ସାନ୍ତ୍ୱନା ଦିଅନ୍ତି । ଆମ୍ଭମାନଙ୍କ ଗୃହରେ ଏଥିରେ ଯୋଡ଼ିଏ ମହତ୍ ଦୁର୍ଗୁଣ ଶିକ୍ଷା ହେଉଅଛି । ଏକ ପ୍ରତାରଣା, ଦ୍ୱିତୀୟ ଭୟ; ମିଥ୍ୟା ଓ ପ୍ରତାରଣାରେ ପିଲାର କୋମଳ ମନ ଦିନକୁଦିନ କଳଙ୍କିତ ଓ ଭୟରେ ସଙ୍କୁଚିତ ହେଉଅଛି । ଲେଖକର ଜଣେ ବନ୍ଧୁ ଇଂରାଜୀ ଓ ବଙ୍ଗଳାର ଜ୍ଞାନଗର୍ଭ ପୁସ୍ତକମାନ ପଢ଼ି ଜ୍ଞାନ ଲଭିଥିଲେ, ଏହାଙ୍କ ମନୁ କୁସଂସ୍କାର ଦୂର ହୋଇଥିଲା, ବୁଦ୍ଧି ମାର୍ଜିତ ହୋଇଥିଲା, ଯୌବନକାଳ ଆସିଥିଲା, ଏସକଳ ଉପକରଣ ଥାଉଁ ଥାଉଁ ସନ୍ଧ୍ୟାହେଲା ଉତ୍ତାରୁ ଏହାଙ୍କୁ ଘୋର ବିପଦ ପଡୁଥିଲା । ଗୃହପ୍ରାଙ୍ଗଣକୁ ବାହାରି ପାରୁ ନ ଥିଲେ, ଯେଆଡ଼କୁ ଅନାଉଥିଲେ ତେଣେ ଭୂତ, ତେଣେ ବାଘ ଭାଲୁ ରାତିଯାକ ଏହାଙ୍କ ଚକ୍ଷୁରେ ନୃତ୍ୟ କରୁଥିଲେ । ଏପରି ହେବାର ହେତୁ କ'ଣ ? ଏ ପିଲାକାଳରେ ମାତାଠାରୁ ଅବା ଅନ୍ୟାନ୍ୟ ଗୁରୁ ବାସିନୀମାନଙ୍କଠାରୁ ଅନେକ ଭୂତର କାହାଣୀ ଶୁଣିଥିଲେ । ସେ ଥିଲେ ଏହାଙ୍କ ମନ ସଙ୍କୁଚିତ ହୋଇଥିଲା; ତେଣୁ ଏ ଦୁର୍ଗତି । ଅଶିକ୍ଷିତ ବାଳକଙ୍କ କଥା ଛାଡ଼, ଶିକ୍ଷିତ ହୋଇ ଗୃହଶିକ୍ଷା ଦୋଷରୁ ଏହାଙ୍କର ଏ ଦୁର୍ଗତି ।

ଉତ୍କଳୀୟ ମାତାମାନେ କନ୍ୟାମାନଙ୍କୁ ଶିକ୍ଷା ଦେଉଅଛନ୍ତି ? ଚିତ୍ରବିଦ୍ୟାଶିକ୍ଷା ଦେଉ ଅଛନ୍ତି "ଛୁଞ୍ଚି", "ଝୁଣ୍ଟି" ପକାଘରେ ଗେରୁ ଲେପ, ଶିଳ୍ପବିଦ୍ୟା "ପାନ ଭାଙ୍ଗିବା" ଗୃହବିଦ୍ୟା "ଭାତ ରାନ୍ଧିବା" । ଆଉସବୁ ହେଉ ନ ହେଉ ଭାତ ରାନ୍ଧିବା ମୂଳ । ଭାତ ରାନ୍ଧିବା ନିମନ୍ତେ ବ୍ରହ୍ମା ସୃଷ୍ଟିରେ ଝିଅର ସୃଷ୍ଟି, ପିତାଗୃହରୁ ସ୍ୱାମୀଗୃହକୁ ଯିବାର ଝିଅର ପ୍ରଧାନ ଉଦ୍ଦେଶ୍ୟ ଭାତ ରାନ୍ଧିବା । ସଂସାରର ସାର କର୍ମ ଭାତରନ୍ଧା ଝିଅକୁ ଶିଖାଇବା ନିମନ୍ତେ ମାତା ଦିବାନିଶି ଚିନ୍ତିତା । ତେଣେ ଏଝିଅର ଭାବୀଶାଶୂ ଆପଣା ପୁଅକୁ ବିଭା କରାଉଅଛି କିପାଇଁ ? ବଧୂପୁର ପ୍ରବେଶି, ଗୃହର ସାରକର୍ମ ଯେ ଭାତରାନ୍ଧିବା ତାହା ସାଧନ କରିବ, ଆଉ ଚିନ୍ତା କଅଣ ? ଝିଅକୁ ବୁଦ୍ଧିମତୀ କରାଇବାର ଆଉ ଗୋଟିଏ ସୁଶିକ୍ଷା ଅଛି "କାନ୍ଦଣା, ଯେ ଯେତେ ବାହୁନି କାନ୍ଦିବ ସେ ତେତେ ବୁଦ୍ଧିମତୀ ।"

ଏହି କାନ୍ଦଣା ଗୃହରେ ଶିକ୍ଷା, ପିତ୍ରାଳୟରୁ ଶ୍ୱଶୁରାଳୟକୁ ଯିବାବେଳେ ଏହାର ପରୀକ୍ଷା । ଏଥିରେ କେବଳ ଝିଅର ପରୀକ୍ଷା ନୁହଇ ମାତା ବୁଦ୍ଧିମତୀ କି ନା ଏହି ପରୀକ୍ଷାରେ ତାହା ମଧ୍ୟ ଧରାପଡ଼େ । ଏଣୁ ଯେ ମାତା କାନ୍ଦଣା ଭଲ ନ ଜାଣନ୍ତି, ଗ୍ରାମବାସିନୀ ଜଣେ ଚତୁରାକୁ ଡକାଇ ଝିଅର କାନ୍ଦଣାଶିକ୍ଷାର ଶିକ୍ଷୟିତ୍ରୀ ପଦରେ ନିଯୁକ୍ତ କରିଦିଅନ୍ତି । ଏ ପରୀକ୍ଷାର ପରୀକ୍ଷକ ଶତ ଶତ ସ୍ତ୍ରୀ, ବିବାହ ଦଶଦିନ ପୂର୍ବରୁ ପରୀକ୍ଷା ଆରମ୍ଭ ହୁଏ । ଛାତ୍ରୀ ପ୍ରତି ଗୃହକୁ ଯାଇ ପ୍ରତି ପୁରନ୍ଧ୍ରୀଙ୍କଠାରେ ପରୀକ୍ଷା ଦେଇ ଆସଇ । ଯେମନ୍ତ ବିଦ୍ୟାଳୟର ପରୀକ୍ଷକ ପିଲାମାନଙ୍କ ମଥାରୁ ପରୀକ୍ଷାବେଳେ ଝାଳ ବାହାର କରାଇ ଛାଡ଼ନ୍ତି, ତେମନ୍ତ ଏ ପରୀକ୍ଷୟିତ୍ରୀମାନେ ଝିଅ ଚକ୍ଷୁ ଲୋତକରେ ନ ଭସାଇ ଛାଡ଼ନ୍ତି ନାହିଁ । ଏମନ୍ତେ ବିବାହଦିନକୁ ମଙ୍ଗଳ କାର୍ଯ୍ୟ ଦିନକୁ ସେ ଝିଅର ପ୍ରାଣ କଣ୍ଠାଗ୍ରତ । କି ମୂର୍ଖତା ! କି ଅସାରତା ! ଗୃହରେ ଆମ୍ଭମାନଙ୍କ ପୁତ୍ରକନ୍ୟାମାନଙ୍କର କି ଅସାର ଶିକ୍ଷା ।

ଉତ୍କଳ ପୁରବାସିନୀମାନେ ! ଏହି ଆମ୍ଭମାନଙ୍କର ପିତାମାତାଙ୍କଠାରୁ ଗୃହରେ ସୁଶିକ୍ଷା ନୀତିଶିକ୍ଷା । ଗୃହରୁ ଏହିଭଳି ନୀତିଶିକ୍ଷା ପାଇ କି ଉନ୍ନତି ହେବାକୁ ଆଶା କର ? "ଆଗେ ଘରେ ପଛେ ବାହାରେ" ତୁମ୍ଭମାନଙ୍କର ଘର କାହିଁ ଯେ ବାହାରକୁ ଶୋଭା ଦିଶିବ ? ତୁମ୍ଭମାନଙ୍କ ଗୃହରେ ଶିକ୍ଷା କାହିଁ ଯେ ବାହାରେ ପଣ୍ଡିତ ନାମ ବିକାଶିବ ।

ତୁମ୍ଭମାନଙ୍କ ଗୃହରେ ସଭ୍ୟତା କାହିଁ ଯେ, ଦାଣ୍ଡରେ ସଭ୍ୟ ଦେଖାଇବ ? ତୁମ୍ଭମାନଙ୍କ ଗୃହରେ ସତ୍ୟ କାହିଁ ଯେ ଦାଣ୍ଡରେ ସାଧୁ ବୋଲାଇବ ? ତୁମ୍ଭମାନଙ୍କ ଗୃହରେ ଉନ୍ନତ ଭାବ କାହିଁ ଯେ ଉତ୍କଳର ଉନ୍ନତି ସାଧିବ ? ଆଜି ଊନବିଂଶ ଶତାବ୍ଦୀ ଚାଲୁଅଛି, ପୃଥିବୀର ଉନ୍ନତ, ପ୍ରତି ସଭ୍ୟଜାତିର ଉଜ୍ଜ୍ୱଳ ପ୍ରଭା, ହିନ୍ଦୁସ୍ଥାନ ଅନ୍ୟାନ୍ୟ ଦେଶର ଆର୍ଯ୍ୟପୁତ୍ରମାନେ-ବୀରପୁତ୍ରମାନେ କରଭ ତୁଲ୍ୟ ଦେହ ଝାଡ଼ି ନିଦ୍ରାରୁ ଉଠୁ ଅଛନ୍ତି, ଏମାନଙ୍କର ସଜ ହେବା ନିମନ୍ତେ ତୂରୀ ହିନ୍ଦୁସ୍ଥାନରେ ବାଜୁଅଛି, ତୂରୀ ବିଲାତରେ ବାଜୁଅଛି । ତୁମ୍ଭେମାନେ ଶୋଇ ରୁହ, କାଳ ତୁମ୍ଭମାନଙ୍କୁ ଗ୍ରାସୁ, ତୁମ୍ଭେମାନେ ଆର୍ଯ୍ୟବଂଶସମ୍ଭୂତ ନୋହ । ତୂରୀ ତୁମ୍ଭମାନଙ୍କ କର୍ଣ୍ଣକୁ ଶୁଭିବ ନାହିଁ । ଏ କଟୂକଥା ଦୁଃଖିତ ହୁଅନା, ଦୁଃଖିତ ହେବାର ଅନ୍ତଃକରଣ ତୁମ୍ଭମାନଙ୍କର ଅଛି କି ନା ସନ୍ଦେହ । ବୋଲ ତ୍ରିଂଶଲକ୍ଷ ଲୋକମଧରେ କେଉଁ ପୁତ୍ର ଆଜି ତୁମ୍ଭର ସତ୍ୟ ବୋଲିବାକୁ ଶିଖି ଅଛି ? କେଉଁ ପୁତ୍ର ଆଜି ତୁମ୍ଭର ଖ୍ୟାତି ଭେରୀ ବଜାଇ ବିଦେଶୀୟ ଲୋକମାନଙ୍କ ମନୋରଞ୍ଜନ କରିବାକୁ ଶିଖିଅଛି ? କେଉଁ ପୁତ୍ର ଆଜି ତୁମ୍ଭର ତିରିଶ ଲକ୍ଷ ଲୋକର ଦରିଦ୍ରତା, ଦୁରବସ୍ଥା, ମୂର୍ଖତା ଓ ଶାସନର କଠୋରତା ପାଇଁ ପାରଲିୟାମେଣ୍ଟରେ ସାକ୍ଷ୍ୟ ଦେବାକୁ ଚଳିଲା ? କେଉଁ ପୁଅ ଆଜି ତିରିଶ ଲକ୍ଷ ଲୋକର ଧନ, ମାନ,

ଜୀବନ, ଗୌରବ ଓ ଭାବୀସୁଖ ରାଜଦ୍ୱାରେ ଭିକ୍ଷା କରିବାକୁ ଚଳିଲା ? ଆଜି ତୁମ୍ଭମାନଙ୍କ କେଉଁ ପୁଅ ଶତ ଶତ ସୁବକ୍ତାରେ ଶୋଭିତ ପାରଲିୟାମେଣ୍ଟ ସଭାରେ ଛିଡ଼ା ହୋଇ ତୁମ୍ଭମାନଙ୍କ ଅଭାବ ବ୍ୟକ୍ତ କରିବାକୁ ସାହସ କରୁଅଛି ? କି ବୋଲ ? ବୋଲ ''କାଳୀପଦ'' ଆଜି ଏହି ନିମନ୍ତେ ଏ ପ୍ରସ୍ତାବର ଅବତାରଣା, ଲଜ୍ଜିତ ହୁଅ– ମୁଖ ତଳକୁ ପୋତ, ଆଉ ଏକଥା ଦିନେ ବୋଲିବ ନାହିଁ । ଖବରକାଗଜରେ ଦେଖୁ ଅଛ, ଚୋରମା'ର କାନ୍ଦଣା କାନ୍ଦୁଅଛ, ଦୁର୍ବଳ ସମ୍ବାଦପତ୍ରମାନ ପ୍ରେସ୍‌ରୁ ତୋଳି ନିଅ । ଘର ''ଦର୍ପଣରେ'' ମୁଖ ଦେଖ, ଏ ଦର୍ପଣ ବିଦେଶୀକୁ ଦେଖାଅ, ନା, ତୁମ୍ଭ ମୁଖଛବି ଖାଲି ଦେଖି ବିଦେଶୀ ହସୁଥିବେ, ଦର୍ପଣରେ ତୁମ୍ଭ ଛବି ଦେଖିଲେ ତ ଆହୁରି ହସିବେ ପାଖରେ, ତୁଚ୍ଛାକୁ ବସିବାକୁ ଦେବେ ନାହିଁ, ଆଜି ଏହିଠାରୁ ତୁନି ହେଲି, ଦେଶୀୟ ଦର୍ପଣ ପାଠକେ ! କ୍ଷମା କରିବ, ସତ୍ୟ ଅନୁରୋଧରେ ଶକ୍ତକଥା ବୋଲୁଅଛି । ଦେହକୁ ଲାଗିଲାରୁ ଶକ୍ତକଥା ବୋଲୁଅଛି । ଦର୍ପଣ ଉପରେ କ୍ରୋଧ ନ କରିବ । ଦର୍ପଣର କାର୍ଯ୍ୟ ଛବି ଦେଖାଇବ ।

## ମେଘଦୂତ ।

### ପୂର୍ବ ପ୍ରକାଶିତ ଉତ୍ତାରୁ ।

ଯେହୁ ଲଭିଛି ଘନ ! ସେରସ ସ୍ୱାଦ,
ପ୍ରସ୍ତୁତ ରସେ ବିଘ୍ନ ଗଣେ ପ୍ରମାଦ ।
ସମ୍ପ୍ରତି ଦେବଗିରି ଦିଶେ ଅଗ୍ରତେ,
ବେଗେ ଯାଅ ନୀରଦ ! ସେ ପରବତେ,
ନବ ସଲିଳ ସିକ୍ତ ମୃତ୍ତିକାବାସେ –
ସୁରଭି଼ ଶୀତ ବାୟୁ ସଂତାପ ନାଶେ;
ଶୁଣ୍ଡେ ପିଅନ୍ତି ଦନ୍ତୀ ସେ ସମୀରଣ,
ତହୁଁ ଉପୁଜି ସ୍ୱନ ତୋଷେ ଶ୍ରବଣ,
ଉମ୍ବଡ଼ୁର ଫଳ ଏ ବାୟୁ ପରଶେ
ପରିପୂର୍ଣ୍ଣ ହୁଅଇ ମଧୁର ରସେ ।
ସେ ନଗେ ନିବସନ୍ତି କାନ୍ତ କୁମାର
ବ୍ୟୋମ ଗଙ୍ଗା ଜଳାର୍ଦ୍ର ପୁଷ୍ପ ଅସାର
ବରଷି, ଧୋଇବୁ ତୁ ସେ କଳେବର,
ସୁଲଳିତ ଚମ୍ପକ ପ୍ରାୟେ ସୁନ୍ଦର;

ବାସବୀ ସୈନ୍ୟ ଦଳ ରକ୍ଷା କାରଣେ
ଶଙ୍କର ବିସର୍ଜିଲେ ତେଜ ଦହନେ,
ତହୁଁ ସମ୍ଭବି ଶୂର ଶିଖିବାହନ,
କୋଦଣ୍ଡ ଧରି କଲେ ଦୈତ୍ୟ ନିଧନ ।
ବାହନ ଶିଖି ବସିଥିବ ଶିଖରେ,
ଧଳା ଅପାଙ୍ଗ ହର ଚନ୍ଦ୍ରମା କରେ,
ପୁତ୍ର ବତ୍ସଳା ଯାର ଚନ୍ଦ୍ରକ ଘେନି,
ଭୂଷନ୍ତି ହୈମବତୀ ଶ୍ରବଣ ବେନି,
କାନ୍ତି-ବଳୟି ଚାରୁ ଚନ୍ଦ୍ରକ ଧରି,
ଦିଶନ୍ତି ରମ୍ୟତର ହର ସୁନ୍ଦରୀ,
ନୀଳ କୁମୁଦ ପ୍ରାୟେ ବର୍ହି ଲମ୍ବଇ,
ନୀଳକାନ୍ତ ଭୂଷଣ ଶୋଭା କରଇ,
ନୀରଦ ! ମନ୍ଦ-ନାଦ ଶୁଣି ତୋହର,
ନାଚିବ ପୁଚ୍ଛ ଟେକି ସେ ଶିଖିବର,
ମୁଖରିତ ହୋଇଣ ଗିରି କନ୍ଦର,
ଶୁଭିବ ତୋ ଶବଦ ଗଭୀରତର,
କୁମାର-ପୂଜା-ଅନ୍ତେ ନବପ୍ରାଙ୍ଗଣେ,
ପୁଣି ଉଠି ଜଳଦ ଭୈରବସ୍ୱନେ,
ସ୍ୱର୍ଣ୍ଣବିମାନ ଚାରି ସିଦ୍ଧ ଯୁଗଳ
ମାର୍ଗ ଛାଡ଼ିବେ ଜଳ ଭୟେ ବିହ୍ୱଳ,
ସିଦ୍ଧ ରଙ୍ଗିଣୀ ବୀଣା ତନ୍ତ୍ରୀ ଝଂକାର
ଶୁଣି ଲଭିବ, ଘନ ! ମୃଦୁ ଅପାର ।
ରଚି ଭୂପତି କୀର୍ତ୍ତି ଗୋମତୀ ନଈ
ସଲିଳ ରେଖା ଏବେ ନେତ୍ର ହରଇ,
ଅଳୀନୀଳାଭ ଅଟେ ତୋର ଶରୀର,
ବିମଳ ଶୁଭ୍ରକାନ୍ତି ଗୋମତୀ ନୀର,
ଅବତରିବୁ ଯେବେ ସେ ନଦୀ ଜଳେ,
ସୁରେ ଦେଖିବେ ଥାଇ ଗଗନ ତଳେ,
ବିଦ୍ୟାଧରୀ ନିକର ଦୂରୁ ଉହିଁବେ,
ବାମନୟନା ନିଶ୍ଚେ ଏହା ମଣିବେ,

ଧରା ଉପରେ ମୋତିହାର ରାଜିତ,
ସେ ହାର ମଧ୍ୟେ ଇନ୍ଦ୍ରନୀଳ ଗୁମ୍ଫିତ,
ଯାଅ ଉତ୍ତରେ ଖରେ ଗୋମତୀ ତରି
ବରବର୍ଣ୍ଣିନୀ ଦଶପୁର ନାଗରୀ (କ୍ରମଶଃ)

# ପ୍ରେରିତ ।

ପ୍ରିୟମିତ୍ର !

ତୁମ୍ଭର ପତ୍ର ପଢ଼ି ଅତ୍ୟନ୍ତ ଆହ୍ଲାଦିତ ହେଲି । ତୁମ୍ଭର ଉନ୍ନତିରେ ମୋଠାରୁ ଅଧିକ ପ୍ରୀତ ହେବାକୁ ମହୀରେ କେହି ନାହିଁ । ମୁଁ ଅହର୍ନିଶ ତୁମ୍ଭର ମଙ୍ଗଳ ପାଞ୍ଚୁଅଛି । ତୁମ୍ଭେ ବୁଦ୍ଧିମାନ୍ ହେଲେହେଁ ଅଳ୍ପବୟସ୍କ ଅଟ । ଅଳ୍ପବୟସ୍କ ଲୋକେ ଆପଣାକୁ ଯେଡ଼େ ବିଜ୍ଞ, ବହୁଦର୍ଶୀ ପାଞ୍ଚୁନ୍ତୁ ପଛକେ ବାସ୍ତବରେ ସେମାନେ ଅଳ୍ପଦର୍ଶୀ ଅଟନ୍ତି । ବୁଦ୍ଧି ସହସ୍ର ତୀକ୍ଷ୍ଣ ହେଲେହେଁ, ବହୁଦର୍ଶିତାର ପ୍ରତିଭୂ ହୋଇ ନ ପାରେ । ''ତୁମ୍ଭେ ପିଲା କଣ ଜାଣ'' ବୃଦ୍ଧଲୋକେ ତରୁଣ ପୁରୁଷମାନଙ୍କୁ ଏହିପରି କହନ୍ତି । ତରୁଣ ପୁରୁଷମାନେ ଏହି ଉକ୍ତିର ପ୍ରକୃତ ହେତୁ ବୁଝି ନ ପାରି ଅସତ୍ ହେତୁ ଲୋଡ଼ନ୍ତି ଏବଂ ବକ୍ତାକୁ ଈର୍ଷା ମଣନ୍ତି । ମାତ୍ର ଏପରି ଉକ୍ତି ସବୁବେଳେ ଈର୍ଷାମୂଳକ ନୁହଇ ଏହା କହିବା ବାହୁଲ୍ୟ । ମୁଁ ଏହା କହୁ ନାହିଁ ଯେ, ବୁଦ୍ଧି କୌଣସି କାର୍ଯ୍ୟରେ ଲଗାଇ ନାହିଁ । ତରୁଣ ବୟସ୍କେ ଲୋକେ ବୁଦ୍ଧିବଳରେ ଅନେକ ଭାବୀ ପ୍ରତିବନ୍ଧକ ତର୍କଣା କରିପାରନ୍ତି । ମାତ୍ର ଯୌବନସୁଲଭ ଦମ୍ଭ ସେହି ପ୍ରତିବନ୍ଧକମାନଙ୍କୁ ତୁଚ୍ଛ ମଣି ପଛକୁ ପ୍ରତାରିତ ହୁଅଇ । ଦୂରରୁ ବଡ଼ ପଦାର୍ଥ ସାନ ଦିଶେ । ତୁମର ଦର୍ଶନଶକ୍ତି ବଳବତୀ, ଦୂରରୁ ତୁମ୍ଭେ ପର୍ବତ ଦେଖୁଅଛ, ବୁଦ୍ଧି ବଳରୁ ତୁମେ ଜାଣିଅଛ ଯେ, ପର୍ବତ ଯେମନ୍ତ ଚିକ୍କଣ ଦିଶୁଅଛି ବାସ୍ତବ ତାହା ନୋହେ । ପର୍ବତ ବନ୍ଧୁର ଅଟେ । ମାତ୍ର ନିଷ୍ଠା ଜାଣିଥିବ ତୁମ୍ଭେ ତାହାକୁ ଯେମନ୍ତ ବନ୍ଧୁର ଭାଳୁଅଛ ପର୍ବତ ତାହାଠାରୁ ଆହୁରି ଦଶଗୁଣ ବନ୍ଧୁର ।

ଅନେକ ଦିନର ଖଣ୍ଡିଏ ଚାକିରି ଲୋଡ଼ୁଥିଲ । ଅନେକ ଥର ନିରାଶ ହୋଇ ଥିଲ । ଏବେ ସେହି କଷ୍ଟ ସହିତ ନୈରାଶ୍ୟ ସ୍ମୃତିପଥାରୂଢ଼ ହୋଇ ଶିଷ୍ଟ ଲାଗୁଅଛି । ମାତ୍ର ଅତ୍ୟନ୍ତ ଉନ୍ମତ୍ତ ହେବାର ଭଲ ନୁହଇ । ଚାକିରିକୁ ସ୍ତ୍ରୀ ପ୍ରାୟ ଜାଣିଥିବ । ବିବାହ ପୂର୍ବରେ ସ୍ତ୍ରୀ ଅତି ମନୋହାରିଣୀ ଦିଶଇ । ଅତ୍ୟନ୍ତ ସୁଶୀଳା, ସରଳା ବୋଧହୁଅଇ, ମାତ୍ର ବିବାହ ହେଲା ଉତ୍ତାରୁ ସେ ଭ୍ରମ ଘୁଞ୍ଚିଯାଏ । ଯାହାକୁ ରତ୍ନ ମଣିଥିଲ ବର୍ତ୍ତମାନ ସେ ଅଗ୍ନିପ୍ରାୟ ବୋଧ ହେଲା । ଅଗ୍ନିଦ୍ୱାରା ଅନେକ ଉପକାର ହୁଅଇ । ଅଗ୍ନି ଅଭାବରୁ ଚଳି ହେବ ନାହିଁ । ମାତ୍ର ଅଗ୍ନିକୁ ସମ୍ଭାଳି ରଖିବାର ସହଜ

ନୁହଁଇ । ଚାକିରି ଲଭିବା ପୂର୍ବରେ ଚାକିରି ପରି ସୁଖ ପଦାର୍ଥ ମହୀରେ ନାହିଁ । ଏହା ତୁମ୍ଭର ଦୃଢ଼ ବିଶ୍ୱାସ ଥିଲା । ଏବେ ଲଭିଲା ଉତ୍ତାରୁ ଚାକରି ସୁଲଭ ସୁଖ ସଙ୍ଗେ ସେଥିର ଦୁଃଖମାନ ମଧ୍ୟ ଅନୁଭବ କରୁଥିବ । ପ୍ରଭୁ ସଙ୍ଗେ କିପରି ବ୍ୟବହାର କଲେ ତୁମ୍ଭର ଭାବୀ ମଙ୍ଗଳ ଏବଂ ଉନ୍ନତି ହେବାର ସମ୍ଭାବନା ସେହି ବିଷୟ ଘେନି ପଦେ କହିବି । ମୁଁ ଚାକିରିରେ ଜନ୍ମ ଗମିଲି । ମୋ କଥାଗୋଡ଼ି ମନରେ ରଖି ଚଳିଲେ କଦାଚ ତୁମ୍ଭର ଅନିଷ୍ଟ ଘଟିବ ନାହିଁ ।

ଏହା ନିଷ୍ଟା ଜାଣିଥିବ ଯେ ପ୍ରଭୁମାନେ ଭୃତ୍ୟମାନଙ୍କଠାରୁ ସ୍ନେହ ପ୍ରତ୍ୟାଶା କରନ୍ତି । ସ୍ନେହର ଅଯୋଗ୍ୟ ହେଲେହେଁ ସ୍ନେହ ପ୍ରତ୍ୟାଶା କରନ୍ତି । ଭୃତ୍ୟମାନେ କର୍ତ୍ତବ୍ୟଜ୍ଞାନରୁ ସେବା ନ କରି ବରଂ ସ୍ନେହରୁ ମୋର ସେବା କରୁନ୍ତୁ । ପ୍ରତ୍ୟେକ ପ୍ରଭୁ ମନରେ ଏହି ବାଞ୍ଛା ଜାଗରୂକ ଥାଏ । ମୋ ପ୍ରତି ସ୍ନେହ ଥିବାରୁ ମୋର ଏତେ ସେବା କରୁଅଛି ପ୍ରଭୁଙ୍କ ମନରେ ଏହି ବିଶ୍ୱାସ ଜନ୍ମିଲା କ୍ଷଣି ତାହାଙ୍କର ସୁଭଗମ୍ମନ୍ୟତା ଏବଂ ସ୍ୱାର୍ଥପରତା ଚରିତାର୍ଥ ହୁଏ । ତୁମ ହୃଦୟରେ ସ୍ନେହ ଥିବାର ଜାଣିଲେ, ତୁମ୍ଭେ ଅକୁଣ୍ଠିତ ଭାବରେ ତାହାଙ୍କର ଆଜ୍ଞା ପାଳିବ ଏବଂ ଅନନ୍ୟମନା ହୋଇ ତାହାଙ୍କର ସ୍ୱାର୍ଥାନ୍ୱେଷଣରେ ତତ୍ପର ହେବ । ପ୍ରଭୁ ଏହି ପ୍ରତ୍ୟାଶା କରିବେ । ସେବକ ଯେତେ ସତ୍‌ମାର୍ଗ ଅନୁସରି ଚଳୁ ପଛକେ, ସେଥିରୁ ପ୍ରଭୁଠାରୁ ବିଶେଷ ଅନୁଗ୍ରହ ଲଭିବାର ସମ୍ଭାବନା ନାହିଁ । ହେତୁକି ସତ୍‌ମାର୍ଗ ଅନୁସରି ଚଳିବାର ଯେ ସେ ପ୍ରଭୁମାନଙ୍କର ପ୍ରାପ୍ୟ ଅଟେ, ସେଥିପାଇଁ ତୁମ୍ଭକୁ ଧନ୍ୟବାଦ କରିବା ନିମନ୍ତେ ପ୍ରଭୁଙ୍କ ମନ ବଳିବ ନାହିଁ । ମାତ୍ର ତୁମ୍ଭେ ପ୍ରଭୁଙ୍କୁ ସ୍ନେହ କର (ବାସ୍ତବ ସ୍ନେହ ମନରେ ଥାଉ ଅବା ନ ଥାଉ) କୌଶଳପୂର୍ବକ ପ୍ରଭୁଙ୍କ ମନରେ ଯେବେ ଏହି ବିଶ୍ୱାସ ଉପୁଜାଇ ପାରିବ ତାହା ହେଲେ ଶୀଘ୍ର ପୁରସ୍କାର ଲଭିବ । ସଦ୍‌ଗୁଣ ନ ଦେଖିଲେ କେହି କାହାକୁ ସ୍ନେହ କରଇ ନାହିଁ, ତୁମ୍ଭର ସ୍ନେହ ଦେଖି ପ୍ରଭୁ ଆପଣାକୁ ସଦ୍‌ଗୁଣ ବିଶିଷ୍ଟ ମଣିବେ । ତେଣୁ ତାଙ୍କ ମନରେ ମହାଆନନ୍ଦ ଜାତ ହେବ । ସମ୍ପ୍ରତି ତୁମେ ଯାହାଙ୍କ ସେବାରେ ନିଯୁକ୍ତ ଅଛ ସେ ନିତାନ୍ତ ସ୍ତବପ୍ରିୟ । ଅତଏବ ସ୍ତବର ତ୍ରୁଟି କରିବ ନାହିଁ । ସେ ଯେବେ ସଦୟ ହୋଇ ହସି ତୁମ୍ଭ ସଙ୍ଗେ କଥା କହିବେ ସତେ ଯେମନ୍ତ ତୁମ୍ଭେ କୃତାର୍ଥ ହୋଇଗଲ ଏହିପରି ଛଳ କରିବ । ସେ ଯେବେ ଆପଣାର କୌଣସି କଥା କହିବେ ଅବିଚଳିତ ମନୋଯୋଗ ସହିତ ଶୁଣିବ ଅଥବା ଶୁଣିଲାପରି ଛଳ କରିବ । ସାବଧାନ, ଥରେ ହାଇ ମାରିଲେ ବାରବରଷ ତପ ଉଡ଼ିଯିବ । ଏହା ମଧ୍ୟ ତୁମ୍ଭର ମନରେ ରଖିବାର ଉଚିତ ଯେ କେବଳ କୌତୂହଳ ପରିତୃପ୍ତ କରିବା ନିମନ୍ତେ ତୁମ୍ଭେ ଏଡ଼େ ମନୋଯୋଗୀ ହୋଇ ଶୁଣୁଅଛ ପ୍ରଭୁଙ୍କ ମନରେ ଏମନ୍ତ ବିଶ୍ୱାସ ଜନ୍ମାଇବ ନାହିଁ, ପ୍ରଭୁ ତୁମ୍ଭଙ୍କୁ ବିଶ୍ୱାସ କରି ଆପଣା ନିଗୂଢ଼ କଥାମାନ ତୁମ୍ଭଠାରେ ବ୍ୟକ୍ତ କରନ୍ତି

ବୋଲି ତୁମ୍ଭେ ଅତ୍ୟନ୍ତ ଆପ୍ୟାୟିତ ହୋଇଅଛ । ବାହାରେ ଏହିପରି ବ୍ୟାଜ କଲେ ପ୍ରଭୁ ତୁମ୍ଭପ୍ରତି ସନ୍ତୁଷ୍ଟ ହେବେ । ଅଳ୍ପ ଅନୁଗ୍ରହ ଲଭି ସୁଦ୍ଧା ଅତ୍ୟନ୍ତ କୃତଜ୍ଞତା ପ୍ରଦର୍ଶନ କରିବ । ଯେଡ଼େ କୃତଜ୍ଞ ହେବ ସେହି ପରିମାଣରେ ଅତ୍ୟନ୍ତ ଅନୁଗ୍ରହ ଲଭିବ । ପ୍ରଭୁଙ୍କର ଦୟା ଦେଖି ସତେଯେମନ୍ତ ଆଶ୍ଚର୍ଯ୍ୟାନ୍ୱିତ ହେଲ । ଏହିପରି ଛଳ କଲେ ପ୍ରଭୁଙ୍କ ମନ ଫୁଲିଯିବ । ପ୍ରଭୁ ସେହି ଆଶ୍ଚର୍ଯ୍ୟକୁ ବଢ଼ାଇବା ନିମନ୍ତେ ସଯତ୍ନ ହେବେ । ଯେ ଯେ ବିଷୟ ଜାଣେ ସେ ସେହି ବିଷୟ ଘେନି ସର୍ବଦା କଥା କହେ । ପ୍ରଭୁ ଯାହା ଜାଣନ୍ତି ସେ ବିଷୟ ଘେନି ତୁମ୍ଭସଙ୍ଗେ ଅନେକ କଥା କହିବେ । ତୁମ୍ଭେ ବୁଝ ଅବା ନ ବୁଝ ପ୍ରଭୁଙ୍କ ମତରୁ ଅନ୍ୟ ମତ କରିବ ନାହିଁ । ତୁମ୍ଭର ପ୍ରଭୁ ଘୋଡ଼ା ଚଢ଼ିବାରେ ପଟୁ । ଆପଣା ଘୋଡ଼ାର କଥା ଘୋଡ଼ା ଚଢ଼ିବାର କଥା ତୁମ୍ଭକୁ ଅନେକଥର କହିବେ । ତୁମ୍ଭେ ସ୍ପଷ୍ଟ ତାହାଙ୍କର ପ୍ରଶଂସା ନ କରି ବକ୍ରଭାବରେ ପ୍ରଶଂସା କଲେ ତାହାଙ୍କ ମନ ଆହୁରି ଫୁଲିଯିବ "ହଁ ମଣିମା ବଜାରରେ କହୁଥିଲେ ମୁଁ ଯେ ସେଠି ବସିଥିଲି କେହି ଜାଣନ୍ତି ନାହିଁ । ସତେ ଯେମନ୍ତ ତୀର ଚାଲିଗଲା" । ଅତ୍ୟନ୍ତ ସ୍ପଷ୍ଟ ବକ୍ତା ହେବାର ଭଲ ନୋହେ ଅତିଶୟ ସ୍ତବ କରିବାର ମଧ ଭଲ ନୁହେଁ, ଅତ୍ୟନ୍ତ ସ୍ତବ କଲେ ପ୍ରଭୁ ତୁମ୍ଭକୁ ସ୍ୱାର୍ଥାନ୍ୱେଷୀ, ଶଠ ମଣିବେ । ଯେବେ ସ୍ତବ କରିବ ସତେ ଯେମନ୍ତ ପ୍ରକୃତ କଥା କହୁଅଛ ଏହିପରି ଛଳ କରିବ । ତୁମ୍ଭର ପ୍ରଭୁର କୌଣସି ଉଦ୍ୟମ ଯେବେ ବିଫଳ ହେବ, ସେଥି ନିମନ୍ତେ ସେ ଯେବେ ଦୁଃଖିତ ଥିବେ, ତୁମ୍ଭ ଜାଣିବାରେ ଯେମନ୍ତ ସେ ଦୁଃଖିତ ହୋଇ ନାହାନ୍ତି ଏହିପରି ଭଙ୍ଗୀ କରିବ । "ଏପରି ଇତର କଥା କେତେ ହେଉଚି କେତେ ଯାଉଚି ହେଲେ କେତେ ନ ହେଲେ କେତେ" । ଟକ ଅଙ୍ଗୁରକୁ ଆହୁରି ଟକ ବୋଲିବ । ଅତି ନମ୍ର ହେବ ନାହିଁ, ଅତି ନମ୍ର ହେଲେ ତୁମ୍ଭକୁ ଗଧ ମଣିବେ । ଅତି ପ୍ରଗଲ୍ଭ ହେବ ନାହିଁ, ପ୍ରଗଲ୍ଭ ହେଲେ ଫାଜିଲ ଲୋକ ବୋଲିବେ । ପ୍ରଭୁ ତୁମ୍ଭକୁ ସହସ୍ର ସ୍ନେହ କଲେହେଁ ପ୍ରକାଶ୍ୟରେ ଅନ୍ୟ ଲୋକ ସମକ୍ଷେ ତାହାଙ୍କ ସଙ୍ଗେ ଘନିଷ୍ଠ ବ୍ୟବହାର କରିବ ନାହିଁ । ପ୍ରଭୁ ସର୍ବତ୍ର ପ୍ରଭୁ ହେବାକୁ ସୁଖ ପାନ୍ତି ଅନ୍ତତଃ ଅନ୍ୟ ଲୋକ ସମକ୍ଷରେ । କୌଣସି ଦୋଷ କରି ଦୋଷ ସ୍ୱତଃ ପ୍ରକାଶ ହେବା ପୂର୍ବରୁ ସ୍ୱୟଂ ପ୍ରକାଶ କରିବ । ପଛକୁ ଗୋପନ କରିବାର ଅସାଧ ଜାଣି ଅଗତ୍ୟା ସ୍ୱୀକାର କରିବାଠାରୁ ଆଗରୁ ପ୍ରକାଶ କରିବା ବିହିତ ଅଟେ । ଦୋଷ ସ୍ୱୀକାର କରି ଆତ୍ମସମର୍ଥନ ନିମନ୍ତେ ଯୁକ୍ତି କରିବ ନାହିଁ । ତୁମ୍ଭେ ସହସ୍ର ଅପରାଧୀ ହେଲେହେଁ ତୁମ୍ଭର ପ୍ରଭୁ ଯେମନ୍ତ ଦୟାଳୁ ସବୁ ଅପରାଧ କ୍ଷମା କରିବେ ଏହିପରି ନମ୍ରୋକ୍ତି କରିବ । ଦୋଷ କଲାଉତ୍ତାରୁ ଅନ୍ତରରେ ଦୁଃଖ ନ ଜନ୍ମିଲେ ସୁଦ୍ଧା ବାହାରେ ଆତ୍ମଗ୍ଲାନିର ଆଡ଼ମ୍ବର କରିବ । ଯେଡ଼େ ଇତର ବିଷୟ ହେଉ ପଛକେ ସେ ବିଷୟରେ ପ୍ରଭୁଠାରୁ ତୁମ୍ଭର ଅଧିକ ପଟୁତା ଅବା ଅଧିକ ବ୍ୟୁତ୍ପତ୍ତି ଅଛି ବୋଲି କଦାଚ

ଆତ୍ମଗୌରବ କରିବ ନାହିଁ । ଯେବେ କୌଣସି ବିଷୟରେ ପ୍ରଭୁଙ୍କଠାରୁ ତୁମ୍ଭର ଅଧିକ ପଟୁତା ପ୍ରକାଶ ହେଲା ପ୍ରଭୁଙ୍କ ଈର୍ଷା ଶୀତଳିବା ନିମନ୍ତେ କହିବ "ମୁ ଆଉ କାହୁଁ ଶିଖିଲିକି ? ଆପଣତ କହିଦେଇଥିଲେ, ଆପଣଙ୍କ ଶିକ୍ଷାରତ ସବୁ" । ପ୍ରଭୁ ଅନେକ ବିଷୟକୁ ତୁଚ୍ଛ ଜ୍ଞାନ କରିବେ । ଜଣେ ଖଣ୍ଡିଏ ଭଲ ଗ୍ରନ୍ଥ ଲେଖିଲା, ସେହି ଗ୍ରନ୍ଥର ଅନେକ ପ୍ରଶଂସା ହେଲା, ତୁମ୍ଭେ ସେହି ଗ୍ରନ୍ଥ ପଢ଼ି ପ୍ରୀତ ହେଲ । ମାତ୍ର ପ୍ରଭୁ ସେହି ଗ୍ରନ୍ଥ ପଢ଼ି ଗ୍ରନ୍ଥକାରକୁ ଗାଳିଦେଲେ । ସେଥିରେ ବିରକ୍ତ ନ ହୋଇ ତୁନି ହୋଇ ରହିବ । ନା ନା କେବଳ ତୁନି ହୋଇ ରହିବ ନାହିଁ ପ୍ରଭୁ ଯେତେ ନିନ୍ଦା କରିବେ ସେଥିର ଦଶଗୁଣ ନିନ୍ଦା କରିବ । ପ୍ରଭୁଙ୍କର ନିନ୍ଦା କରିବାର ହେତୁ ଏହି ଯେ ସେ ଗ୍ରନ୍ଥ ସେ ନିଜେ ଲେଖି ନାହାନ୍ତି, ଆଉଜଣେ ଲେଖିଅଛି । ତୁମ୍ଭର ନିନ୍ଦା କରିବାର ହେତୁ ଏହି ଯେ ପ୍ରଭୁ ତୁମ୍ଭପ୍ରତି ସନ୍ତୁଷ୍ଟ ହେବେ । ପ୍ରଭୁ ତୁମ୍ଭକୁ ବିନା ଦୋଷରେ ଗାଳି ଦେଲେ ଆପଣା ନିର୍ଦ୍ଦୋଷିତା ସପ୍ରମାଣ କରିବା ନିମନ୍ତେ ବ୍ୟଗ୍ର ହେବ ନାହିଁ, ସବୁ ସହିବ । ତୁମ୍ଭେ ନିର୍ଦ୍ଦୋଷୀ ପ୍ରଭୁ ଏହା ପଛକୁ ଅବଶ୍ୟ ଜାଣିପାରିବେ । ଜାଣିଲେ ଆପଣା ଭ୍ରମ ସ୍ୱୀକାର କରିବେ ନାହିଁ ସତ୍ୟ, ମାତ୍ର ତୁମ୍ଭର ସହିଷ୍ଣୁତାର ଅବଶ୍ୟ କୌଣସି ସତ୍କାର କରିବେ ।

ପ୍ରଭୁଙ୍କର କୌଣସି ଦୋଷ ଦେଖିଲେ ସେ ଦୋଷ ସଂଶୋଧନ ନିମନ୍ତେ ବକ୍ର ଉପାୟ ଅବଲମ୍ବନ କରିବ । ଜଣେ ତାହାଙ୍କ ଭୃତ୍ୟକୁ ତାହାଙ୍କୁ ସକାଳୁ ଉଠାଇ ଦେବା ନିମନ୍ତେ ଆଦେଶ ଦେଇଥିଲେ । ଯଥାସମୟରେ ଭୃତ୍ୟ ଡାକିଲାରୁ ତାହାକୁ ଗାଳି ଦେଲେ । ଭୃତ୍ୟ ମୋହଠାରୁ ବେସି ଚଲାକ, ଏହି ଜ୍ଞାନ ତାହାଙ୍କୁ କଷ୍ଟକର ବୋଧହେଲା । ଏଥି ନିମନ୍ତେ ଭୃତ୍ୟକୁ ଗାଳି ଦେଲେ । ଭୃତ୍ୟ ମହା ସିଆଣିଆ, ତହିଁ ଆରଦିନ ବାବୁଙ୍କ ଶୟନ ଘରକୁ ଯାଇ ଦେଖିଲା ବାବୁ ନିଦରେ ଅଚେତନ, ଘଣ୍ଟରା ମାରୁଅଛନ୍ତି । ଭୃତ୍ୟ ବାବୁଙ୍କ ଖଟପାଖରେ ଶୋଇଲା, ବାବୁଙ୍କର ନାକ ଯେଉଁ ପରିମାଣରେ ଗରଜୁ ଥିଲା ଭୃତ୍ୟ କୃତ୍ରିମ ନିଦ୍ରାଭିଭୂତ ହୋଇ ସେଥିରୁ ଦଶଗୁଣ ଗରଜିଲା, ଭୃତ୍ୟର ନାକ ଘଡ଼ଘଡ଼ି ବାବୁଙ୍କର ନିଦ୍ରା ତଡ଼ିଦେଲା । ବାବୁ ଉଠି "ଏଉଟା ଏଡ଼େ ଅଳସୁଆ" ବୋଲି ଭୃତ୍ୟକୁ ଗାଳି ଦେଲେ ମାତ୍ର ଏଗାଳି ପୂର୍ବ ଗାଳିପରି କଟୁ ନୁହଇ । ହେତୁକି ଏ ଗାଳି ଦେବାବେଳେ ଆପଣା ଉତ୍କର୍ଷ ଅନୁଭବ କରିବାବୁ ପ୍ରଫୁଲ୍ଲ ଥିଲେ ।

ବର୍ତ୍ତମାନ ଆଉ ଲେଖିପାରିବି ନାହିଁ, ଅନେକ କାର୍ଯ୍ୟ ଥିବାରୁ ଏହିଠାରେ ବିଶ୍ରାମ ନେଲି । ଆଉ ଯାହା ବକ୍ତବ୍ୟ ଅଛି ବାରାନ୍ତରରେ ଜଣାଇବି ।

୧୩ । ୮ । ୭୩ — ତୁମ୍ଭର ଚିର ହିତାକାଂକ୍ଷୀ

ଭଦ୍ରଖ । — ଶ୍ରୀ———

**ପ୍ରଥମ ବର୍ଷ ଏକାଦଶ ସଂଖ୍ୟା**
**ନଭେମ୍ବର, ୧୮୭୩**

# ଇଟାଲୀୟ ଯୁବା

## ପୂର୍ବ ପ୍ରକାଶିତ ଉତ୍ତାରୁ

ସେହି ନିକୁଞ୍ଜରୁ ବାହାରି ପଟଗୃହାଭିମୁଖେ ଗମନ କଲୁ। ପଟଗୃହକୁ ସୁଦ୍ଧା ସେହି ପରି ଦେଖିଲୁଁ। ନେପ୍‌ଲସ ଗମନ ସମୟରେ ଆମ୍ଭେ ଏହିଠାରେ ଲରାଠାରୁ ମେଲାଣି ନେଇଥିଲୁଁ। ଏହିଠାରେ ବିଷଣ୍ଣବଦନା ଲରା ଆମ୍ଭକୁ ଗମନାନୁମତି ଦେଇଥିଲେ। ଏହିଠାରେ ଶୋକାଶ୍ରୁ ବିସର୍ଜନ କରିଥିଲେ। ଆମ୍ଭକୁ ଦେଖିବାମାତ୍ରେ ଆନନ୍ଦାଶ୍ରୁରେ ଅଭିଷିକ୍ତ ହେବେ ଏହି ବିବେଚନାରେ ଆମ୍ଭେ ହର୍ଷୋନ୍ମତ୍ତ ହେଲୁଁ। ଯେତେବେଳେ ପୂର୍ବୋକ୍ତ ପଟଗୃହର ନିକଟବର୍ତ୍ତୀ ହେଲୁଁ, ଏକ ମଧୁର ସ୍ତ୍ରୀକଣ୍ଠସମ୍ଭବ ସ୍ୱର ଆମ୍ଭ କର୍ଣ୍ଣରେ ପ୍ରବିଷ୍ଟ ହେଲା। ଏ କାହା ସ୍ୱର ? ଏପରି ମଧୁର ସ୍ୱର କାହାର ହେବ ? ଶବ୍ଦ ଶୁଣିବା ମାତ୍ରକେ ବୁଝିଲୁଁ ଯେ ଆମ୍ଭର ପ୍ରାଣସମା ପ୍ରିୟତମା ଲରା ଗୃହ ମଧ୍ୟରେ ଅଛନ୍ତି। ମନରେ କୌଣସି ଅନିର୍ବଚନୀୟ ଭାବର ଆବିର୍ଭାବ ହେବାରୁ କିଛିକ୍ଷଣ ସ୍ତମ୍ଭୀଭୂତ ହୋଇ ରହିଲୁଁ। ହଠାତ୍ ତାଙ୍କ ଅଗ୍ରତେ ଉପସ୍ଥିତ ହେବା ଉଚିତ ମଣିଲୁଁ ନାହିଁ। ମନ୍ଦ ମନ୍ଦ ପଦ ବିକ୍ଷେପରେ ଗୃହର ଦ୍ୱାରାଭିମୁଖରେ ଗମନ କଲୁଁ। କପାଟ ମୁକ୍ତ ଥିଲା, ଲରା ଆମ୍ଭ ଆଡ଼କୁ ପଛ କରି ବସି ମୃଦୁ ମନୋହର ସ୍ୱରରେ ଗୀତ ଗାଉଥିଲେ ଏବଂ ହସ୍ତରେ ତୂଳିକା ଘେନି ଖଣ୍ଡିଏ ଆଲେଖ୍ୟ ଲେଖୁଥିଲେ। ଦୃଷ୍ଟିମାତ୍ର ଜାଣିଲୁ ଯେ ଆମ୍ଭ ଲିଖିତ ଖଣ୍ଡିଏ ଚିତ୍ରକୁ ଆଦର୍ଶରୂପେ ଥୋଇ ନିଜେ ଆଲେଖ୍ୟ ଲେଖୁଅଛନ୍ତି। ଆମ୍ଭେ କିଛିକାଳ ଏକ ଦୃଷ୍ଟିରେ ତାହାଙ୍କୁ ନିରୀକ୍ଷଣ କଲୁ। ଇତିମଧ୍ୟରେ ସେ ଏକ ଦୀର୍ଘ ନିଶ୍ୱାସ ପରିତ୍ୟାଗ କରି ଗାୟନରୁ ନିବୃତ୍ତ ହେଲେ। ଆମ୍ଭେ ଆଉ ଧୈର୍ଯ୍ୟ ଧରି ନ ପାରିଲୁଁ। ଅର୍ଦ୍ଧସ୍ଫୁଟ ସ୍ୱରରେ କହିଲୁଁ "ଲରା"। ଆମ୍ଭ ଶବ୍ଦ ଶୁଣିବା ମାତ୍ରକେ ସେ ଚମକି ଉଠିଲେ, ଶ୍ରବଣାଲମ୍ବୀ ସୁବର୍ଣ୍ଣାଭରଣ କମ୍ପିତ ହେଲା। ଆମ୍ଭପ୍ରତି ଈଷଦ୍ଦୃଷ୍ଟି କରି ହୃଦୟଭେଦକ ଚିତ୍କାର କଲେ। ଆମ୍ଭେ ଯେବେ ଧରି ନ ଥାନ୍ତୁ ତେବେ ସେ ନିଶ୍ଚୟ ଧରାତଳରେ ପଡ଼ି ଯାଇଥାଆନ୍ତେ।

ଆମ୍ଭେ ତାହାଙ୍କୁ ହୃଦୟରେ ଭିଡ଼ିଧରି କହିଲୁଁ "ଭଗ୍ନପ୍ରିୟତମା ଲରା" ଏହି ଅର୍ଦ୍ଧୋକ୍ତି କରି ନିଃଶବ୍ଦ ହେଲୁଁ। ହର୍ଷାତ୍ମକ୍ୟ ହେତୁରୁ ଆମ୍ଭ କଣ୍ଠରୋଧ ହେଲା। ଲରା ଅଚେତନ ଏବଂ ନିଷ୍ପନ୍ଦ ହୋଇ ରହିଲେ। ଅକସ୍ମାତ୍ ତାହାଙ୍କ ନିକଟରେ ଆତ୍ମପ୍ରଦର୍ଶନ କରିବାରୁ ତାହାଙ୍କର ଏହି ଅବସ୍ଥା ହୋଇଅଛି ଏହା ଭାଳି ଆମ୍ଭେ ନିରତିଶୟ

କାତରହେଲୁଁ । ତାହାଙ୍କ ପ୍ରବୋଧ ନିମନ୍ତେ କେତେ ସାନ୍ତ୍ୱନା ବାକ୍ୟ କହିଲୁଁ । କିଛି କାଳପରେ ତାହାଙ୍କର ଚେତନା ହେଲା । ନେତ୍ରଦ୍ୱୟ ଉନ୍ମୀଳନ କଲେ । ମୃଦୁ ସ୍ୱରରେ କହିଲେ "ଏ କଣ ? ଆମ୍ଭେ କେଉଁ ଠାରେ ଅଛୁଁ" । ଆମ୍ଭେ କହିଲୁଁ "ଆମ୍ଭ ହୃଦୟରେ ? ଯେ ହୃଦୟର ତୁମ୍ଭେ ଏକମାତ୍ର ଈଶ୍ୱରୀ ସେହି ହୃଦୟରେ, ତୁମ୍ଭର ପ୍ରିୟତମ ହୃଦୟରେ" ଲରା ଭୟରେ ଥରିଲେ କହିଲେ, "ନା ନା, ଛାଡ଼ିଦିଅ ଆମ୍ଭକୁ ଛାଡ଼ିଦିଅ" ।

ଏହା କହି ଆମ୍ଭ ବାହୁବନ୍ଧନରୁ ଆପଣାକୁ ମୁକୁଳାଇଲେ । ଗୃହର ଏକ କୋଣକୁ ଯାଇ ହସ୍ତଦ୍ୱାରା ମୁଖାବୃତ କଲେ । ଆମ୍ଭେ ବଜ୍ରାହତ ପ୍ରାୟ ହେଲୁ । ଏସବୁ ଯଥାର୍ଥ ଘଟୁଅଛି, କି ଆମ୍ଭର ମାନସିକ ଭ୍ରାନ୍ତି କିଛି ସ୍ଥିର କରି ନ ପାରିଲୁ । ତ୍ରସ୍ତ ହୋଇ ଲରାଙ୍କର ଅନୁଗମନ କଲୁ, ତାହାଙ୍କର କର ଧାରଣ କରିବା ନିମନ୍ତେ କର ପ୍ରସାରଣ କଲୁ, ମାତ୍ର ସେ ଆମ୍ଭକୁ ସ୍ପର୍ଶ କରିବାକୁ ସୁଦ୍ଧା କୁଣ୍ଠିତ ହେଲେ ।

ଆମ୍ଭେ କହିଲୁ, "ଲରା ! ଏ କଣ ? କାହିଁକି ଏମନ୍ତ କରୁଅଛ । ଏତେଦିନ ଆମ୍ଭେ ଅଇଲୁଁ, ଏ କଣ ତୁମ୍ଭର ଅକପଟ ସ୍ନେହ, ଏ କି ତୁମ୍ଭର ଅଟଳ ପ୍ରଣୟ" । "ପ୍ରଣୟ" ଏହି ଶବ୍ଦ ଉଚ୍ଚାରଣ କରିବାମାତ୍ରକେ ସେ ଥରଥର ହୋଇ କମ୍ପିବାକୁ ଲାଗିଲେ । ବ୍ୟାକୁଳ ବଦନରେ ଆମ୍ଭପ୍ରତି ଚାହିଁ କହିଲେ "ଆଉ ସେଥିର ପ୍ରସଙ୍ଗ ନ କର, ଏବେ ଆଉ ତାହା କହିଲେ କଣ ହେବ ଆଉ ଆମ୍ଭେ ବିବାହିତ ହୋଇଅଛୁଁ" ।

ଆମ୍ଭ ହୃଦୟରେ ଦୁଃଖ ଶେଳ ଫୁଟିଲା ଜିହ୍ୱା ବନ୍ଦ ହେବା ପ୍ରାୟ ହେଲା । ଚିତ୍ରାର୍ପିତ ପ୍ରାୟ ନିସ୍ତବ୍ଧ ହୋଇ ରହିଲୁଁ; ଚାରିଦିଗ ଅନ୍ଧାର ଦିଶିଲା । ସଞ୍ଜ୍ଞାରହିତ ହେଲୁଁ । କିଛିକାଳପରେ ପୁନର୍ବାର ଚେତନା ଲଭି ଦେଖିଲୁଁ ଲରା ସନ୍ନିହିତ ଶଯ୍ୟାରେ ଅଧୋବଦନରେ ଶୟାନ ହୋଇ ଅଛନ୍ତି । ତାଙ୍କ ବକ୍ଷସ୍ଥଳ କମ୍ପିତ ହେଉଅଛି । କ୍ରୋଧରେ ଆମ୍ଭ ମନ ଅସ୍ଥିର ହେଲା । କହିଲୁଁ "ରେ ଦୁଷ୍ଟା । ରେ ପାପୀୟସି !" ପୁଣି ଥରେ ସେହି ସୁନ୍ଦର ବଦନ ଦେଖିବା ମାତ୍ରକେ କ୍ରୋଧ ଆମ୍ଭ ଅନ୍ତଃକରଣରୁ ଛାଡ଼ି ପଳାଇଲା । ସେହି ମୋହିନୀମୂର୍ତ୍ତି ଏବଂ କ୍ରୋଧ ଏ ଉଭୟ ଏକାବେଳକେ ଆମ୍ଭ ମନୋରାଜ୍ୟରେ ଆଧିପତ୍ୟ କରିବାକୁ ସକ୍ଷମ ନ ହେଲେ । କାତର ବଚନରେ କହିଲୁଁ "ଲରା, ଆମ୍ଭେ ସ୍ୱପ୍ନରେ ସୁଦ୍ଧା ଏମନ୍ତ ଭାବି ନ ଥିଲୁଁ ଯେ ତୁମ୍ଭେ ଆମ୍ଭଠାରେ ବିଶ୍ୱାସଘାତକତା କରିବ, ଆମ୍ଭେ ଏମନ୍ତ ଚିନ୍ତାକୁ କ୍ଷଣକାଳ ନିମନ୍ତେ ଆମ୍ଭ ହୃଦୟ ମଧ୍ୟରେ ସ୍ଥାନ ଦେଇନଥିଲୁ । ହା" ।

ଏହି କାତରୋକ୍ତି ଶ୍ରବଣ କରି ଲରା ଲୋତକପୂର୍ଣ୍ଣ ନୟନରେ ଆମ୍ଭପ୍ରତି ଦୃଷ୍ଟିପାତ କରି କହିଲେ "ତୁମ୍ଭଠାରେ ବିଶ୍ୱାସଘାତକତା କଲୁଁ ! ସମସ୍ତେ ମୋତେ କହିଲେ ଯେ ତୁମ୍ଭର ପରଲୋକ ହୋଇଅଛି । "ତୁମ୍ଭେ କଣ ଥରକୁଥର ଆମ୍ଭଠାରୁ ପତ୍ର ପାଇ

ନାହଁ''। ଲରା ଖେଦ ଓ ବିସ୍ମୟପୂର୍ଣ୍ଣ ଲୋଚନରେ ଅନାଇ ରହିଲେ ''ପତ୍ର କି ପତ୍ର ? କାହାକୁ ଲେଖିଥିଲ'' ? ''କି ? ତୁମ୍ଭେ ପତ୍ର ପାଇ ନାହଁ ? ତୁମ୍ଭଠାରୁ ଆମ୍ଭେ ସେଥିର ଉତ୍ତର ସୁଦ୍ଧା ପାଇଅଛୁ''। ଲରା ନିସ୍ପନ୍ଦ ଭାବରେ ଛିଡ଼ା ହୋଇ ରହିଲେ। କହିଲେ, ପ୍ରଭୁ ସାକ୍ଷୀ ଆମ୍ଭେ ଏହାର ଲବମାତ୍ର ଅବଗତ ନୋହୁଁ। ତୁମ୍ଭକୁ ପ୍ରତ୍ୟୁତ୍ତର କେବେ ଲେଖିଥିଲୁଁ ? ଆମ୍ଭ ହୃଦୟରେ ଘୋର ସଂଶୟ ଜାତ ହେଲା।

''ଆମ୍ଭେ ମରିଅଛୁଁ ବୋଲି ତୁମ୍ଭକୁ କିଏ କହିଲା'' ?

ଆମ୍ଭେ ଶୁଣିଲୁ ଯେଉଁ ଜାହାଜରେ ତୁମ୍ଭେ ନେପ୍‌ଲସକୁ ଯାଇଥିଲ ସେହି ଜାହାଜ ବୁଡ଼ିଗଲାରୁ ତୁମ୍ଭର ପ୍ରାଣନାଶ ହୋଇଅଛି।''

''ଏକଥା ତୁମ୍ଭକୁ କିଏ କହିଲା''।

''ଲରା ମୁହୂର୍ତ୍ତକାଳ ନୀରବ ହୋଇ ରହିଲେ,, ଥରିବାକୁ ଲାଗିଲେ''।

''ଫିଲିପ''।

ଆମ୍ଭ ନେତ୍ରଦ୍ୱୟ ରକ୍ତବର୍ଣ୍ଣ ହେଲା, କହିଲୁଁ।

''ତାହା ମୁଣ୍ଡରେ ବଜ୍ର ପଡୁ''

ଲରା ମୃଦୁ ସ୍ୱରରେ କହିଲେ।

''ଗାଳି ଦିଅ ନାହିଁ ସେ ଆମ୍ଭର ସ୍ୱାମୀ ଅଟନ୍ତି ତାଙ୍କୁ ଗାଳିଦିଅ ନାହିଁ''।

ଏବେ ଆମ୍ଭେ ସବୁ ବୁଝିପାରିଲୁ। ଜାଣିଲୁ ଯେ ଦୁରାତ୍ମା ଆମ୍ଭଠାରେ ପ୍ରବଞ୍ଚନା କରିଅଛି। ଆମ୍ଭ ଶରୀରସ୍ଥ ଶିରାମାନଙ୍କରେ ଶୋଣିତ ଉଷ୍ଣ ହୋଇ ତରଳ ଅଗ୍ନି ପ୍ରାୟ ପ୍ରବାହିତ ହେଲା। କୋପରେ ଅଧର ପ୍ରସ୍ଫୁଟିତ ହେଲା। କିୟତ୍ ସମୟ ସ୍ତମ୍ଭୀଭୂତ ହୋଇ ରହିଲୁଁ। କିଂକର୍ତ୍ତବ୍ୟବିମୂଢ଼ ହୋଇ ଚାରିଆଡ଼କୁ ଅନାଇଲୁ। ବ୍ୟାକୁଳଚିତ୍ତ ଲରା ଭାବିଲେ ଯେ ଆମ୍ଭେ ତାହାଙ୍କ ଉପରେ କୁପିତ ହୋଇଅଛୁଁ। ଅସ୍ଫୁଟସ୍ୱରରେ ଆତ୍ମନିରପରାଧିତ ବ୍ୟକ୍ତ କଲେ। ଏପରି କରିବାର ତାହାଙ୍କ ପକ୍ଷରେ ଆବଶ୍ୟକ ନ ଥିଲା। ତାହାଙ୍କ ନୟନଭଙ୍ଗୀ ଆମ୍ଭକୁ ସବୁ କହିଦେଲା କୋପରୁଦ୍ଧସ୍ୱରରେ କହିଲୁଁ ''ଆଚ୍ଛା ! ଦୁରାତ୍ମା ତୁମ୍ଭଠାରୁ ଏହାର ପ୍ରତିଫଳ ଅବଶ୍ୟ ପାଇବ; ଲରା ସେ ଅର୍ଦ୍ଧୋଚ୍ଚାରିତ ବାକ୍ୟ ଶୁଣିଲେ। ଭୟରେ ତାଙ୍କ ମୁଖ ମ୍ଳାନ ହୋଇଗଲା। ''ଆମ୍ଭ କଥା ଘେନ, ଫିଲିପଙ୍କ ସଙ୍ଗେ ସାକ୍ଷାତ୍ ନ କରି ଆମ୍ଭର ଏହି କଥୋପକଥନ ବୃତ୍ତାନ୍ତ ଶୁଣିଲେ ଫିଲିପ ଆମ୍ଭର ଦୁରବସ୍ଥାର ଏକ ଶେଷ କରିବେ, ତୁମ୍ଭର କିଛି ହେବ ନାହିଁ କେବଳ ଆମ୍ଭେ ମରିବୁଁ''।

ପୁଣି ଆମ୍ଭ ହୃଦୟରେ ଏକ ନୂତନ ସନ୍ଦେହ ଉପସ୍ଥିତ ହେଲା। କହିଲୁଁ ତେବେ କଣ ତୁମ୍ଭେ ଫିଲପକୁ ଡର। ଫିଲିପ କି ତୁମ୍ଭ ପ୍ରତି ନିଷ୍ଠୁର ବ୍ୟବହାର କରେ ? ତାହାର କଣ ଏଡ଼େ ସାହସ ? ଦୁରାତ୍ମା ତୁମ୍ଭର ଅବମାନନା କରେ ?

ଲରା ଅସ୍ପଷ୍ଟ ସ୍ୱରରେ କହିଲେ "ନା ନା ତାହା ନୁହେ ଆମ୍ଭେ ତାହା କହୁ ନାହୁଁ" ମାତ୍ର ଲରାର ମୁଖଭଙ୍ଗୀ ଆନପ୍ରକାର କହିଲା । ତାହାଙ୍କ ବିବର୍ଣ୍ଣବଦନରୁ ଆମ୍ଭେ ସବୁ ବୁଝିପାରିଲୁ । ବାସ୍ତବ ଫିଲିପ ଲରାଠାରେ ଅତ୍ୟନ୍ତ ନୃଶଂସ ଆଚରଣ କରିଥିଲା । ହା ଈଶ୍ୱର ! ଆମ୍ଭ ଚରିବାଞ୍ଛିତ ପୁଷ୍ପ କି ଏହି ରୂପେ ପାଦଦଳିତ ହେଲା । ଆମ୍ଭେ କ୍ଷିପ୍ତ ପ୍ରାୟ ହେଲୁ । ଚକ୍ଷୁ ଲୋହିତ ହେଲା । ଗଣ୍ଡଦ୍ୱୟ ସ୍ଫୀତ ହେଲା । କୋପାନଳ ଜ୍ୱଳି ଉଠିଲା । ଆମ୍ଭ ମୁଖାକୃତି ଅବଲୋକନ କରି ଲରା ଚକିତ ହେଲେ । ନୀରବ ହୋଇ ରହିଲେ । ଆମ୍ଭେ ଗବାକ୍ଷ ଆଡ଼କୁ ନୟନ ଫେରାଇ ଦେଖିଲୁ ଫିଲିପ କିଞ୍ଚତ୍ ଦୂରରେ ଦଣ୍ଡାୟମାନ ହୋଇଅଛି । କ୍ରୋଧୋନ୍ମତ୍ତ ହୋଇ ପଟଗୃହରୁ ବିଜୁଳିପ୍ରାୟ ଦୌଡ଼ିଗଲୁଁ । ଫିଲିପ ଆମ୍ଭଙ୍କୁ ଦେଖିଲା । ତାହାର ମୁଖ ବିବର୍ଣ୍ଣ ହୋଇଗଲା । ଇତସ୍ତତଃ ଦୃଷ୍ଟି ନିକ୍ଷେପ କଲା ପଳାଇ ପ୍ରାଣରକ୍ଷା କରିପାରିବ ନାହିଁ ଏହା ଭାବି କମ୍ପିତ କଳେବରରେ କୋଷରୁ ଅସି ନିଷ୍କାସିତ କଲା । ଆମ୍ଭେ ସକୋପରେ କହିଲୁ "ନରାଧମ ! ରହ ଆମ୍ଭେ ତୋହୋର ଉପଯୁକ୍ତ ଦଣ୍ଡବିଧାନ କରୁଅଛୁ ।

କ୍ରମଶଃ

# ମେଘଦୂତ

## ପୂର୍ବ ପ୍ରକାଶିତ ଉତ୍ତାରୁ

କୁତୂହଳେ ଚାହିଁବେ ତୋତେ ଆକରେ
ମୋହିବେ ଚିତ୍ତ ତୋର ମଧୁର ହାରେ
ପକ୍ଷ୍ମବିକ୍ଷେପ-ଜାତ ସ୍ନିଗ୍ଧ ନୀଳିମା,
କଳିବ କୃଷ୍ଣସାର ପ୍ରଭା ଗରିମା
କଳା ଡୋଳା ଲଳିତ-ବାଳା-ଲୋଚନେ
ଦିଶିବ କୁନ୍ଦଦଳେ ଭୃଙ୍ଗ ଯେସନେ
ବ୍ରହ୍ମାବର୍ତ୍ତରେ ନଭେ ହୋଇ ଉଡ୍ଡାଣ
କୃଷିବଳଙ୍କୁ ଛାୟାଦାନେ ତୋଷିଣ,
ତହୁଁ କୌରବ କ୍ଷେତ୍ରେ ଯିବୁ ତ୍ୱରି
ଧରା ଲୋହିତ ଯହିଁ କ୍ଷେତ୍ର ଶୋଣିରି
ଗର୍ଜି ପ୍ରଚଣ୍ଡେ ସିଞ୍ଚୁ ଘନ ଅସାର,
ଯେହ୍ନେ କମଳବଂଶ କରୁ ସଂହାର

ଗାଣ୍ଡୀବୀ ସେହି ରୂପେ କୁରୁ ସମରେ
ସିଞ୍ଚିଲେ ନୃପକୂଳ ଆନନ ଶରେ
ସରସ୍ୱତୀ ସରିତ ସୁସ୍ୱାଦୁ ଜଳ
ସେବି ହୋଇବ ତୋର ହୃଦ ନିର୍ମଳ
ସରସ୍ୱତୀ ମହିମା ଲୋକେ ବିଦିତ
ସରସ୍ୱତୀ ମୋହିଲା ମୂଷଳି-ଚିତ
ରେବତୀ ସଙ୍ଗେ ଯେହୁ ମଦିରା ରସ
ପାନେ ପୂର୍ବରେ ହେଉଥିଲେ ହରଷ
ବିମୁଖ ହୋଇଣ ସେ ଭାରତ ରଣେ
ବାସିଲେ ଏ ତଟିନୀ ତୀର କାନନେ
ନଖଲ ପ୍ରଦେଶ ଛାଡ଼ି ଉତ୍ତରେ
ନୀର ନୀରଦ ! ଗତି ଖରେ ଆମ୍ବରେ
ପର୍ବତରାଜ ହିମ ପର୍ବତୁ ଯହିଁ
ଧବଳଗଙ୍ଗା ସ୍ରୋତ ଅବତରଇ,
ସଗରବଂଶ ସର୍ଗ-ସୋପାନ-ରାଜି
ପ୍ରାୟେ ଦିଶଇ ଗଙ୍ଗା ନଗେ ବିରାଜି,
ଧୂର୍ଜଟୀ ଜଟା ଜୁଟେ ବହି ଝର୍ଝରେ,
ଧରଇ ବାଳଚନ୍ଦ୍ର ତରଙ୍ଗ କରେ,
ତହୁଁ ଭ୍ରୁକୁଟୀ ବହେ ଉମା ଆନନ,
ରୁଷ୍ଟ ସପତ୍ନୀ ସୁଖେ ସପତ୍ନୀ ମନ;
ଧବଳ ଫେଣ ଛଳେ ଜାହ୍ନବୀ ହସେ,
ଈର୍ଷା ଅନଳ ଜଳେ ଉମା ମାନସେ
ଅଚ୍ଛ ସ୍ଫଟିକ ପ୍ରାୟେ ଜାହ୍ନବୀ ବାରି
ଆକାଶୁଁ ପିଇବୁ ତୁ କାୟାପ୍ରସାରି,
ପିଅଇ ନୀର ସୁରକରୀ ଯେସନେ
ବକ୍ରଭାବରେ ଝୁଲୁଥିବୁ ଗଗନେ
ଲହରୀ ଖେଳୁଥିବ ମନ୍ଦ ଅନିଳେ
ପଡ଼ିବ ତୋର ଶ୍ୟାମଛବି ସଲିଳେ,
ଆସ୍ଥାନେ ରବିସୁତା ଲହରୀ ହାର
ମିଶିଲା ପ୍ରାୟେ ଶୋଭା ହେବ ଉଦାର

ତୃଷାର ଗୌର ହିମଗିରି ମସ୍ତକେ
ବସି ଶମିବୁ ମାର୍ଗ-ଶମ ପୁଲକେ
କସ୍ତୁରିକା-କୁରଙ୍ଗ ଅଙ୍ଗ ପରଶେ
ସୁରଭିତ ଶିଳା ସେ ଶୈଳ ଉରସେ,
ଶଶିଶେଖର ଶ୍ୱେତ ବୃଷ ବିଷାଣ
ଦେହେ ଯେହ୍ନେ ଉତ୍‌ଖାତ ପଙ୍କପିଧାନ,
ମୂରତି ତୋର ନୀଳ କଜ୍ଜ୍ୱଳ ନିଭ,
ଶିଖରେ ବିରାଜି, ସେ ଶୋଭା ବଳିବ
ସରଳ ଦ୍ରୁମେ ଯେବେ ଶାଖା ଘର୍ଷଣେ
ଜ୍ୱଳିବ ବହ୍ନି, ବାୟୁ ବହି ଭୀଷଣେ
କନକକାନ୍ତି ଅଗ୍ନି ଶିଖା ଦୀପିବେ,
ଗହ୍ୱରୁଁ ଚମରୀଙ୍କୁ ବେଗେ ତଡ଼ିବେ
ଅନଳ ଯୋଗେ ଚାରୁ-ପୁଚ୍ଛ ଚାମର,
ଜ୍ୱଳି କରିବ ତାଙ୍କୁ ତ୍ରାସେ କାତର,
ତେଇଁ ପଡ଼ିଲା ପ୍ରାୟେ ଦାବ ଦହନ
ଦ୍ରୁମୁଁଦ୍ରୁମେ ଲଗନ ହେବେ ବହନ,
ବହ୍ନି ଉପରେ ସିଞ୍ଚି ନବ-ଆସାର
ଗିରି ପ୍ରାଣୀ-ଜୀବନ କର ଉଦ୍ଧାର;
ଦୋଷହୀନ ଜନର ହେଲେ ବିପଦ,
ବିପଦୁଁ ନିସ୍ତାରଇ ସାଧୁ ସମ୍ପଦ
ଗାତ୍ରଭଙ୍ଗ ସକାଶେ ତହିଁ ଶରଭେ,
ଶିଖରି ଶୃଙ୍ଗେ ଡେଉଁଥିବେ ଗରବେ,
ଧରିବା ପାଇଁ ତୋତେ ହେବେ ଉତ୍ସୁକ,
ତ୍ୱରିତେ କରିବୁ ତୁ ତାଙ୍କୁ ବିମୁଖ
ଅବହେଳେ ଧବଳ କରକା ହାସେ,
ପଳାଇବେ ସରଭେ ଦୂରୁଁ ତରାସେ;
ନିଷ୍ଫଳ କର୍ମେ ଯାର ମନ ଦୀକ୍ଷିତ,
ପରଠାରେ ନିଶ୍ଚେ ସେ ହୋଏ ଲଞ୍ଜିତ
ତ୍ରିଶୂଳି-ପଦ-ଚିହ୍ନ ତହିଁ ପ୍ରସ୍ତରେ,
ବିମଣ୍ଡିତ କାନନ ଜାତ ପୁଷ୍ପରେ,

ଦେଖି ବାରିଦପତି ! କରିବୁ ନତି,
ବିଫଳା ନୋହେ ଶିବ ପାଦେ ଭକତି;
ଗିରି-ନିବାସି-ମୁନି ହର ଚରଣ
ପୂଜନ୍ତି ନିତ୍ୟ ଶାନ୍ତି ରସେ ମଗନ;
ଏପାଦେ ଭକ୍ତି ଥିଲେ କଲୁଷ ନାଶ
ହୋଇ, ସୁଖରେ ଅନ୍ତେ ସ୍ୱରଗେ ବାସ ।
ଘନକୀଚକରାଜି, ବାୟୁ-ପୂରିତ,
ବଂଶୀ ବାଜିଲା ପ୍ରାୟେ ହୋଏ ନାଦିତ,
ତ୍ରିପୁର-ଜୟ-ଗୀତ ମଧୁର ସ୍ୱରେ,
କିନ୍ନରୀ-କୁଳ-କଳ-କଣ୍ଠୁଁ ନିଃସରେ,
ତୋ ନିନାଦେ ମୁଖର କନ୍ଦର ବ୍ରଜ
ମୁଞ୍ଚିବ ମନ୍ଦ୍ର ନାଦ ଯେହ୍ନେ ମୁରଜ;
ସଂଗୀତ ଅଭିଳାଷ ବାମ ଦେବର
ଚରିତାର୍ଥ କରିଣ ଲଭିବୁ ବର
ହିମାଦ୍ରିତଟେ ସବୁ କରି ଦର୍ଶନ,
ଶୀଘ୍ର କର ଉଦୀଚୀ ଅନୁସରଣ,
କ୍ରୌଞ୍ଚ ରନ୍ଧ୍ର ଭେଦିଣ ଶୈଳଶରୀରେ
ଲଭିଲେ ରାମ ନିତ୍ୟ ଯଶଃ ମହୀରେ;
ମାନସରକୁ ବେଗେ ବରଷାଗମେ,
ଏମାର୍ଗେ ହଂସେ ଯାନ୍ତି ଉଡ଼ି ସଂଭ୍ରମେ,
ତୀର୍ଯ୍ୟକେ ରନ୍ଧ୍ରଦେଇ ଉତ୍ତରେ ଯିବ,
ହଂସ ଅଗ୍ରତେ ଦେଖି ମାର୍ଗ କଳିବ,
ବଳିଛଳନ ବେଳେ ପ୍ରଭୁ ବାମନ
ଯେ ପାଦ ବିସ୍ତାରିଲେ ଘୋଟି ଗଗନ,
ସେ ପଦ ବରଶୋଭା ଲଭିବୁ ଭଲେ,
ରନ୍ଧ୍ରମାର୍ଗରେ ଯେବେ ଯିବୁ ଚଞ୍ଚଳେ
ତହୁଁ ଉର୍ଦ୍ଧ୍ୱେ ରାଜଇ କୈଳାସ ଗିରି,
ନବପ୍ରଫୁଲ୍ଲ-ଶ୍ୱେତ-କୁମୁଦ-ଶିରୀ,
କିଅବା ରାଶୀଭୂତ ତ୍ର୍ୟମ୍ବକହାସ,
ତାରାମାଳ ଚୁମ୍ବଇ ବ୍ୟାପି ଆକାଶ,

ଦୁର୍ଦ୍ଦଣ୍ଡ ଦଶବାହୁ ରୋଷେ ହୁଂକାରି
ଝିଙ୍କିଲା ଶୈଳ ଯେବେ ଭୁଜପ୍ରସାରି,
ନାଗେ, ନରେ, ଅମରେ କମ୍ପିଲେ ତ୍ରାସେ,
ମିଳିଲା ଅମ୍ବୁରାଶି ଊର୍ମି ଆକାଶେ,
ଗମ୍ଭୀର ବଜ୍ରଘୋଷେ ଘୋଷି କନ୍ଦର
ପଳାଇଲେ ଜିମୂତେ ଛାଡ଼ି ଭୂଧର,
ଗର୍ଜ୍ଜିଲେ ପ୍ରଭଞ୍ଜନ ହେଲା ଅନ୍ଧାର,
ଉଡ଼ିଲା ସ୍ତୂପାକାର ଘନ ତୁଷାର
ଆତଙ୍କେ ଗିରିବାସୀ ଗର୍ଉରୀସାଇଁ-
ପାଦେ ଶରଣ ବେଗେ ପଶିଲେ ଯାଇ,
ହସିଲେ ତହୁଁ ପ୍ରଭୁ ଭକ୍ତବତ୍ସଳ,
ଅଚଳ ପୂର୍ବ ପରି ହେଲା ଅଚଳ
ସୁର-ବନିତା-ବ୍ରଜ ନଭୋମଣ୍ଡଳେ,
ଭ୍ରମନ୍ତି ଯେବେ, ଗିରି-ମୁକୁର-ତଳେ
ପଡ଼ଇ ପ୍ରତିବିମ୍ବ ନେତ୍ରରଞ୍ଜନ;
ସେ ଦର୍ପଣେ ସ୍ୱମୁଖ ଦେଖିବୁ ଘନ !
ଦଳିତାଞ୍ଜନପ୍ରଭା ବୋଲା ପରାୟେ
ତୋ ଦେହ ନୀଳ-କାନ୍ତି ପ୍ରକାଶୁଥାଏ
ଧଳା କୈଳାସ ଦେହେ ହେଲେ ଲଗନ
ଦିଶିବ ଧରାଧର ଶୋଭା ଯତନ;
ଅମରେ ସ୍ଥିରନେତ୍ରେ ଥିବେ ଅନାଇ,
ଏଡ଼େ ବିଚିତ୍ର ଦୃଶ୍ୟ ଭୂତଳେ କାହିଁ ?
ନୀଳବସନେ ହଳିସ୍କନ୍ଧ ଯେସନ,
ଦିଶିବ ହରଶୈଳ ରମ୍ୟ ତେସନ
ପାର୍ବତୀ କାନ୍ତକର ଧରି ସ୍ୱକରେ,
ପଦବ୍ରଜରେ ଚଢୁଥିବେ ଭୂଧରେ
ପୁଷ୍ପିତ କରି ନୀଳ ସ୍ଖଳିତ ରାଶି
ବିସ୍ତାରି ଭୟରେ ହସ୍ତ ପ୍ରକାଶି
ଅଙ୍ଗତେ ଗାତ୍ରଭଙ୍ଗେ ହୋଇ ଶୟାନ,
ସେବିବୁ ଯେହ୍ନେ ଇନ୍ଦ୍ରନୀଳସୋପାନ;

ନଗେନ୍ଦ୍ରବାଳା ପଦ୍ମପାଦଯୁଗଳ
ଛୁଇଁ ଦେହ ଧାରଣ ହେବ ସୁଫଳ;
ତହିଁ ସୁରଯୁବତୀ ନିତ୍ୟ ଚପଳା,
ଘଷି ତୋ ଦେହେ ଚାରୁହୀରକବଳା,
ତୋ ଶରୀରୁଁ ନିଃସୃତ ନୀର ଲଭିବେ,
ଜଳଯନ୍ତ୍ର ପରାୟେ ତୋତେ ମଣିବେ,
ଛାଡ଼ି ନ ଦେବେ ଯେତେ ବାଳାନିକର,
ସଲିଳଦାନେ ଯେବେ ହେବ କାତର,
ମୁଞ୍ଚିବ ହେ ନୀରଦ ଗମ୍ଭୀରନାଦ,
ଅବଳା ପଳାଇବେ ଗଣି ପ୍ରମାଦ
ହେମକମଳ ଛନ୍ନ ମାନସନୀର
ଘେନି ହୋଇବ ତୋର ଗୁରୁଶରୀର,
ସୁରେନ୍ଦ୍ର କରି-କର ରଙ୍ଗେ ଘୋଡ଼ାଇ,
ନବସଲିଳେ ତାର ପ୍ରୀତି ବଢ଼ାଇ
ଶୀକର ସୁଶୀତଳ ମନ୍ଦ ପବନେ
କମ୍ପାଇ କଳ୍ପ-ତରୁ-ପଲ୍ଲବ ବନେ,
ସ୍ଫଟିକ-ଗୌର ତନୁ ସେ ମହୀଧରେ
ପ୍ରବେଶିବୁ ନୀରବ ପରମାଦରେ
ନାଗର ଉତ୍ସଙ୍ଗେ ଯେହ୍ନେ ନାଗରୀ,*
ସେଗିରି ଉରସେ ରମ୍ୟ ନଗରୀ,
ଜାହ୍ନବୀ ଦୁକୂଳ ସ୍ରସ୍ତଜଘନେ,
ଅଳକା ଅଗ୍ରତେ ଦିଶେ ନୟନେ,
ଭବେ ଅତୁଳ ସେ ପୁରୀ ତୁହେ ।
ନିଶ୍ଚେ ବିମୋହିତ, ହୋଇବ ତୋଚିତ, ଦେଖି ତା ରୂପମାଧୁରୀ । ହେ
ଜଳଧରକାଳେ ଘନ ନିକର
ଆବରି ଅଳକା ସୌଧଶିଖର,
କାମିନୀ-ଚିକୁର-ଶ୍ୟାମ ମୂରତି,
ମୁଞ୍ଚି ନବନୀରବିନ୍ଦୁ ପଙ୍କତି,
ଅଳକା ଶିର ଭୂଷଇ; ହେ ।
ମୁକୁତା ଖଚିତ, ରୁଚିର ରଚିତ, ବାମା ଅଳକ କଳଇ । ହେ

* ରାଗ – ରସକୋଇଲା

# ବନ୍ଧୁଠାରୁ ପ୍ରାପ୍ତ ।

## ଶାସ୍ତ୍ରାନୁଶୀଳନ ।

### ବେକନରୁ ଅନୁବାଦିତ ।

ଶାସ୍ତ୍ରାନୁଶୀଳନ ଆମୋଦଜନକ, କ୍ଷମତା ପ୍ରଦାୟକ ଏବଂ ଭୂଷଣ ସ୍ୱରୂପ ଅଟେ । ବିଷୟ କର୍ମରୁ ଅପସୃତ ହେଲେ ଏବଂ ନିର୍ଜନ ଥିବାବେଳେ ମନ ବିଷଣ୍ଣ ହୁଅଇ । ଏପରି ଅବସ୍ଥାରେ ଶାସ୍ତ୍ରାନୁଶୀଳନଦ୍ୱାରା ସମୟ ସୁଖରେ ଅତିବାହିତ ହୋଇପାରେ । ଶାସ୍ତ୍ରାନୁଶୀଳନଦ୍ୱାରା ବାକ୍‌ପଟୁତା ଲାଭ ହେଲାରୁ ତାହା ଭୂଷଣ ସ୍ୱରୂପ ହୁଏ ଏବଂ ତଦ୍ୱାରା ବିଚାରପୂର୍ବକ କର୍ମନିର୍ବାହ କରିବାର କ୍ଷମତା ଜନ୍ମେ ।

କେହି କେହି କାର୍ଯ୍ୟ ନିର୍ବାହ ଆଉ ଏକ ଏକ ବିଷୟ ବିଶେଷରୂପେ ବିଚାର କରିପାରନ୍ତି ସତ୍ୟ; ମାତ୍ର ସୁଶିକ୍ଷିତ ବ୍ୟକ୍ତିମାନେ ଅତିଶୟ ଜଟିଳ କାର୍ଯ୍ୟ ସୁଦ୍ଧା ସାଧୁପରାମର୍ଶ, ସୁକୌଶଳ ଅବଲମ୍ବନ କରି ସୁପରିପାଟୀ ଭାବରେ କର୍ମ ନିର୍ବାହ କରିବାକୁ ସମର୍ଥ ହୁଅନ୍ତି ।

ଶାସ୍ତ୍ରାନୁଶୀଳନରେ ସମଧିକ ସମୟ କ୍ଷୟ କରିବା ଏକରୂପ ଆଳସ୍ୟ ଅଟେ, କଥୋପକଥନ ବେଳେ ନାନା ଅଳଙ୍କାର ବ୍ୟବହାର କରିବା ବୃଥା ବିଦ୍ୟାବତ୍ତା ପ୍ରକାଶ ମାତ୍ର, ଆଉ ବିଚାର କରିବା ବେଳେ ସମସ୍ତ ବିଷୟରେ ଶାସ୍ତ୍ର ନିୟମାବଲମ୍ବନ କରିବା ତୁଚ୍ଛା ପଣ୍ଡିତ୍ୟାଭିମାନିତ୍ୱ ଅଟେ । ଶାସ୍ତ୍ରାନୁଶୀଳନଦ୍ୱାରା ସ୍ୱାଭାବିକ ବୁଦ୍ଧିର ଉନ୍ନତି ହୁଏ, ଏବଂ ନାନାବିଷୟିଣୀ ପରିଣାମଦର୍ଶିତା ଆଉ ଲୋକାଭିଜ୍ଞତା ଦ୍ୱାରା ଶାସ୍ତ୍ରଲବ୍ଧଜ୍ଞାନର ପରିପକ୍ୱତା ହୁଏ । ଧୂର୍ତ୍ତ ଲୋକମାନେ ଶାସ୍ତ୍ର ଜ୍ଞାନକୁ ତୁଚ୍ଛ ମଣନ୍ତି, ସରଳ ଲୋକମାନେ ତାହାକୁ ପ୍ରଶଂସା କରନ୍ତି, ଆଉ ବିଜ୍ଞଲୋକମାନେ ତାହାର ପ୍ରକୃତ ବ୍ୟବହାର କରନ୍ତି, କେବଳ ପୁସ୍ତକ ପାଠଦ୍ୱାରା ଜ୍ଞାନର ପରିପକ୍ୱତା ଜନ୍ମେ ନାହିଁ; ସେହି ଜ୍ଞାନ ତଦନ୍ତର୍ଗତ ନୁହେଁ ଏବଂ ତାହାଠାରୁ ବହୁତ ଉତ୍କୃଷ୍ଟ । କେବଳ ଲୌକିକ ବ୍ୟବହାର ଦର୍ଶନ କରି ସେହି ଜ୍ଞାନ ଲବ୍ଧ ହୁଏ ।

ବାଗ୍‌ବିତଣ୍ଡାରେ ପରିପକ୍ୱତା ଲାଭ କରିବା ସକଳ ବିଷୟକୁ ସତ୍ୟ ମଣିବା; ଅବା କଥାବାର୍ତ୍ତା ବେଳେ ବିଦ୍ୟା ପ୍ରକାଶ କରିବା ଶାସ୍ତ୍ରାନୁଶୀଳନର ଉଦ୍ଦେଶ୍ୟ ନୁହେଁ । ସମସ୍ତ ବିଷୟକୁ ଉତ୍ତମରୂପେ ଆଲୋଚନା କରିବା, ଉପଯୁକ୍ତ ଜ୍ଞାନ ଆଉ କ୍ଷମତା ଲଭିବା, ବିଦ୍ୟାନୁଶୀଳନର ମୁଖ୍ୟ ଉଦ୍ଦେଶ୍ୟ ଅଟେ ।

କେତେଗୁଡ଼ିଏ ପୁସ୍ତକ ଅଛି ସେମାନଙ୍କ ସ୍ୱାଦମାତ୍ର ଗ୍ରହଣ କରିବ; ଆଉ କେତେଗୁଡ଼ିକୁ ଗିଳି ପକାଇବ, ଆଉ ଅତି ଅଳ୍ପ ପୁସ୍ତକକୁ ଚର୍ବଣ ଅବା ଜୀର୍ଣ୍ଣ କରିବ ।

ଅର୍ଥାତ୍ କେତେଗୁଡ଼ିଏ ପୁସ୍ତକକୁ ସ୍ଥାନେ ସ୍ଥାନେ ପଢ଼ିବ, କେତେଗୁଡ଼ି ପଢ଼ିବ ମାତ୍ର ବିଶେଷ ମନୋଯୋଗ ଦେବ ନାହିଁ, ଏବଂ କେତେକ ଆଦ୍ୟୋପାନ୍ତ ଦୃଢ଼ ଅଧ୍ୟବସାୟ ଓ ଗାଢ଼ ଅଭିନିବେଶ ସହକାରେ ଅଭ୍ୟାସ କରିବ । ଆଉ କେତେଗୁଡ଼ିଏ ପୁସ୍ତକ ଅଛି ସେମାନଙ୍କୁ ପ୍ରତିନିଧିଦ୍ୱାରା ପାଠ କରିବାକୁ ହୁଏ, ଅର୍ଥାତ୍ ଅପର କୃତ ସେମାନଙ୍କ ସଂକ୍ଷିପ୍ତ ବିବରଣ ପାଠ କଲେ ଉଦ୍ଦେଶ୍ୟ ସିଦ୍ଧ ହେବ । ଅତି ସାମାନ୍ୟ ପୁସ୍ତକ ସମ୍ବନ୍ଧରେ ଏହା କଲେ ଦୋଷ ନାହିଁ; କିନ୍ତୁ ବିଶେଷ ଉପକାରୀ ପୁସ୍ତକମାନଙ୍କ ସମ୍ବନ୍ଧରେ ଏହା କର୍ତ୍ତବ୍ୟ ନୁହେ; ହେତୁକି ସଂକ୍ଷିପ୍ତ ପୁସ୍ତକମାନେ ପରିସ୍ରୁତ ଜଳ ପରି ବିସ୍ୱାଦ ଓ ନୀରସ ଅଟନ୍ତି ।

ଶାସ୍ତ୍ରାଧ୍ୟୟନଦ୍ୱାରା ବହୁଦର୍ଶିତା ହୁଏ; କଥୋପକଥନ ଦ୍ୱାରା ବାକ୍‌ପଟୁତା ଜନ୍ମେ; ଏବଂ ରଚନା ଆଉ ଲିଖନଦ୍ୱାରା ପକ୍ୱତାଲାଭ ହୁଏ । ଅତଏବ ଯଦି କୌଣସି ଲୋକର ଲେଖିବାର ଅଭ୍ୟାସ ନ ଥାଏ ତେବେ ତାହାର ଅସୀମ ସ୍ମୃତି ଶକ୍ତିର ପ୍ରୟୋଜନ, ଯଦି ଆଲୋଚନାର ଅନଭ୍ୟାସ ଥାଏ ତେବେ ତୀକ୍ଷ୍ଣ ବୁଦ୍ଧି ଆବଶ୍ୟକ; ଆଉ ଯଦି ପଢ଼ାଶୁଣା ଅଧିକ ନ ଥାଏ ତେବେ ଅଧିକ ପରିମାଣରେ ଚତୁରତା ନ ଥିଲେ ହେବ ନାହିଁ; ହେତୁକି ଯେଉଁ ବିଷୟ ଭଲ ଜଣା ନାହିଁ ତାହା ଗୋପନ କରିବାକୁ ନ ପାରିଲେ ଲୋକସମାଜରେ ପରିହାସ ଲଭିବାକୁ ହେବ ।

ଇତିହାସ ପାଠଦ୍ୱାରା ଲୋକ ବିଜ୍ଞ ହୁଏ; କାବ୍ୟ ପାଠଦ୍ୱାରା ରସଜ୍ଞ ହୁଏ; ଗଣିତ ଶାସ୍ତ୍ରରେ ବୁଦ୍ଧି ପ୍ରାଖର୍ଯ୍ୟ ହୁଏ; ପଦାର୍ଥ ବିଦ୍ୟାର ଅଧ୍ୟୟନ ଦ୍ୱାରା ଧୀର; ନୀତି ଶାସ୍ତ୍ରରେ ଗମ୍ଭୀର; ଏବଂ ନ୍ୟାୟ ଆଉ ଅଳଙ୍କାର ଶାସ୍ତ୍ରରେ ତର୍କ ନିପୁଣ ହୁଏ । ଯେମନ୍ତ ବିଶେଷ ବ୍ୟାୟାମଦ୍ୱାରା ଏକ ଏକ ଅଙ୍ଗର ଦୁର୍ବଳତା ବିନଷ୍ଟ ହୁଏ ତେମନ୍ତ ଏପରି କୌଣସି ବୁଦ୍ଧିର ନ୍ୟୂନତା ନାହିଁ ଯାହା କୌଣସି ବିଶେଷ ଶାସ୍ତ୍ରାନୁଶୀଳନଦ୍ୱାରା ଦୂରୀଭୂତ ହୋଇ ନ ପାରେ । ଯେମନ୍ତ ଶରକ୍ଷେପ ଅଭ୍ୟାସରେ ଫୁସ୍ ଫୁସ୍ ଓ କଲିଜାର ପୀଡ଼ା ଉପଶାନ୍ତ ହୁଏ, ପାକସ୍ଥଳୀ ଦୂଷିତ ହେଲେ ମନ୍ଦ ମନ୍ଦ ଭ୍ରମଣ, ଶିରଦେଶରେ ପୀଡ଼ା ହେଲେ ଅଶ୍ୱାରୋହଣ ଉପକାରୀ ହୁଏ; ତଦ୍ରୂପ କୌଣସି ଲୋକର ମନ ଯଦି ଏପରି ଅସ୍ଥିର ହୁଏ, ଯେ ସେ କୌଣସି ବିଷୟରେ ଗାଢ଼ ଅଭିନିବେଶ କରି ନ ପାରିବ, ତାହାର ଗଣିତ ଶାସ୍ତ୍ର ଶିକ୍ଷା କରିବା ଉଚିତ, ହେତୁକି ଏହି ଶାସ୍ତ୍ରର କୌଣସି ପ୍ରତିଜ୍ଞା ସପ୍ରମାଣ କରିବାବେଳେ ଯଦି ତାହାର ଚିତ୍ତ ଅବ୍ୟବହିତ ହୁଏ ତେବେ ପୁନର୍ବାର ଆରମ୍ଭ କରିବାକୁ ହେବ । ଏହି ପ୍ରକାରେ ଯଦି କୌଣସି ଲୋକର ବୁଦ୍ଧି ସୂକ୍ଷ୍ମାସୂକ୍ଷ୍ମ ପ୍ରଭେଦ କରିବାକୁ ସମର୍ଥ ନ ହୁଏ, ତାହାର ଦର୍ଶନଶାସ୍ତ୍ର ଅଭ୍ୟାସ କରିବାର ଉଚିତ, ହେତୁକି ଦାର୍ଶନିକମାନେ ଅତ୍ୟନ୍ତ ସୂକ୍ଷ୍ମଦର୍ଶୀ ଅଟନ୍ତି ଏବଂ ଯଦି କୌଣସି ଲୋକର କାରଣ ଓ ପ୍ରମାଣାଦିଦ୍ୱାରା କାର୍ଯ୍ୟାଦି ପରୀକ୍ଷା କରିବା ଏବଂ ଦୃଷ୍ଟାନ୍ତ ଦେଇ ଏକ ବିଷୟଦ୍ୱାରା

ଅନ୍ୟ ବିଷୟ ଉପପନ୍ନ କରିବାର କ୍ଷମତା ନ ଥାଏ ତେବେ ତାହାର ଉକିଲମାନଙ୍କ ବାଦାନୁବାଦ ଓ ବିଚାର ନିଷ୍ପତ୍ତିସମୂହ ପାଠ କରିବା ଉଚିତ । ଏହି ପ୍ରକାରେ ପ୍ରତ୍ୟେକ ମାନସିକ ଦୌର୍ବଲ୍ୟ ବିଶେଷ ବିଶେଷ ଶାସ୍ତ୍ର ଚର୍ଚ୍ଚାଦ୍ୱାରା ଦୂରୀକୃତ ହୋଇପାରେ ।

## ରଘୁବଂଶ

### ତ୍ରୟୋଦଶ ସର୍ଗ

### ପୂର୍ବ ପ୍ରକାଶିତ ଉତ୍ତାରେ

ସ୍ୟନ୍ଦନର ଗବାକ୍ଷରେ ଲମ୍ବାଇଣ କର
କୁତୂହଳେ ପରଶୁଛ ତୁମ୍ଭେ ଜଳଧର ।
ତୁମ୍ଭ କରକମଳରେ ଅର୍ପୁଅଛି ଘନ
ବିଜୁଳିବଳୟରୂପ ନବ ଆଚରଣ । ୨୧ ।
ଦୂରେ ଦେଖ ବିରାଜଇ ଦଣ୍ଡକ କାନନ
ନୂତନ ନିର୍ମିତ ଯହିଁ ପର୍ଣ୍ଣ ନିକେତନ ।
ନାହିଁ ଆଉ ରକ୍ଷୋଭୟ, ଏଣୁ ଆନନ୍ଦରେ
ତପସ୍ୱିଏ ନିବସନ୍ତି ଆଶ୍ରମ ନିକରେ । ୨୨ ।
ତୁମ୍ଭ ପୟର ନେପୁର ପୟରରୁ ଖସି
ମଉନରେ ପଡ଼ିଥିଲା ଏଠାରେ ପ୍ରେୟସି ।
ପୂରୁବେ ସେ ବାଜୁଥିଲା ପୟରେ ଗରବେ
ଭ୍ରଷ୍ଟ ହୋଇ ଦୁଃଖେ ଏଥି ଥିଲା ସେ ନୀରବେ । ୨୩ ।
ଯେ ପଥେ ତୁମ୍ଭଙ୍କୁ ରକ୍ଷଃ ନେଇଥିଲା ହରି
ଦେଖାଇଲେ ସେହି ପଥ ମୋତେ ଦୟାକରି ।
ବଚନବିହୀନ ଏହି ବଲ୍ଲରୀ ନିକର
ସଞ୍ଚାଳ ପଲ୍ଲବ ଯୁକ୍ତ ଶାଖାରୂପ କର । ୨୪ ।
ତେଜି ତୃଣାଙ୍କୁର ସ୍ପୃହା ମୃଗାଙ୍ଗନାଗଣ
ନିବେଶି ଦକ୍ଷିଣ ଆଡ଼େ ଉପକ୍ଷ୍ମନୟନ ।
ଜଣାଇଲେ ମୋତେ କେଉଁ ଦିଗେ ତୁମ୍ଭ ଗତି
ତାହା ଦେଖି ମୋ ହୃଦୟେ ଶୋକ ହେଲା ଅତି । ୨୫ ।

ଦିଶଇ ଆଗରେ ମାଲ୍ୟବାନ ମହୀଧର
ଗଗନପରଶୀ ଅଟେ ଯାହାର ଶିଖର ।
ଘନଜଳସଙ୍ଗେ ତହିଁ ମୋ ନୟନ ଜଳ
ଝରିଲା ତୁମ୍ଭ ବିରହ ଯୋଗୁଁ ଅବିରଳ । ୨୬ ।
ନବମେଘ ଜଳସିକ୍ତ ମୃତ୍ତିକା ସୁବାସ
କଦମ୍ବ-କେଶର ଯାର ଅର୍ଦ୍ଧପରକାଶ ।
ନୀଳକଣ୍ଠ ମୟୂରର ମଧୁର ନିଃସ୍ୱନ
ତୁମ୍ଭ ବିନା ଏ ସକଳ ଦହିଲେ ମୋ ମନ । ୨୭ ।
ବିରହେ ଦରୀ-ନାଦିତ ଘନ ଗରଜନ
ଶୁଣି ବିକଳିତ ହେଲା ମୋର ପ୍ରାଣମନ ।
ସୁମରନ୍ତେ ପୂର୍ବକଥା ଯେବେ ଥରି ଥରି
ଘଡ଼ଘଡ଼ି ଭୟେ ମୋତେ ପକାଇଲ ଧରି । ୨୮ ।
ଏଥି ବିକଶିତ ନବକନ୍ଦଳୀ କୁସୁମ
ଯୁକ୍ତ ତହିଁ ଜଳସିକ୍ତ ମୃତ୍ତିକାର ଧୂମ ।
ଦେଖନ୍ତେ ପଡ଼ିଲା ମନେ ବିବାହ ସମୟ
ଦାବାଗ୍ନିପରାୟେ ଶୋକ ଦହିଲା ହୃଦୟ ।
ସେ ମଧୁରକାଳେ ତୁମ୍ଭ ନୟନ ଯୁଗଳ
ପୁଣ୍ୟଧୂମ ଯୋଗୁଁ ଆହା, କେମନ୍ତ ପାଟଳ । ୨୯ ।
ଅଗ୍ରତେ ବିରାଜେ ରମ୍ୟ ପମ୍ପାସରୋବର
ଯାହାର ଦର୍ଶନେ ଖିନ୍ନ ହୁଅଇ ଅନ୍ତର
ଚଉଦିଗ ସମାଚ୍ଛନ୍ନ ନିବିଡ଼ ବେତସେ
ଜଳେ ବିହରନ୍ତି ଦେଖ, ଆନନ୍ଦେ ସାରସେ । ୩୦ ।
ଉତ୍ପଳ କେଶର ଦେଇ ପରସ୍ପର ମୁଖେ
ରଥାଙ୍ଗ ମିଥୁନ ଏଥି ବସିଥିଲେ ସୁଖେ ।
ତୁମ୍ଭ ବିରହରେ କରି ଏ ଛବି ଦର୍ଶନ
ପୂର୍ବ ସୁଖମାନ, ଆହା କରିଲି ସ୍ମରଣ । ୩୧ ।
ସ୍ତବକସ୍ତନରେ ନମ୍ର ଅଶୋକ ବଲ୍ଲରୀ
ଦେଖି, ''ପାଇଲି ତୁମ୍ଭଙ୍କୁ'' ଏହା ମନେକରି ।
ଅଧୀରେ ହରଷେ ଶୋକେ, ଆଲିଙ୍ଗନ ଆଶେ
ଅଶ୍ରୁପୂର୍ଣ୍ଣ ନୟନରେ ଧାଆନ୍ତେ ତାଂ ପାଶେ ।

"ନୁହନ୍ତି ଏ ସୀତାଦେବୀ" ସୁମିତ୍ରାନନ୍ଦନ
ଏମନ୍ତ ବୋଲିଣ ମୋତେ କଲେ ନିବାରଣ । ୩୨ ।
ବିମାନ ଲମ୍ବିତ ହେମ କିଙ୍କିଣୀର ସ୍ୱନ
ଗୋଦାବରୀ ସାରସାଳି କରିଣ ଶ୍ରବଣ ।
ଉଡ଼ି ନୀଳମଣିମୟ ଅମ୍ବର ମାର୍ଗରେ
ତୁମ୍ଭଙ୍କୁ ପାଛୋଟି ଆସୁଛନ୍ତି କି ଆଦରେ । ୩୩ ।
ବହୁଦିନ ପରେ ଦେଖ ପଞ୍ଚବଟୀ ବନ
ଯାର ଦରଶନେ ହର୍ଷେ ନିମଗ୍ନ ମୋ ମନ ।
ସୁମଧ୍ୟମା ତୁମ୍ଭେ ସିଞ୍ଚି ଘଟର ସଲିଳ
ଏହି ବାଳଚୂତଗଣ ବଢ଼ାଇଣ ଥିଲ ।
ତୁମ୍ଭର ପାଳିତ ଏହି କୃଷ୍ଣସାର ପନ୍ତି
ନୟନ ବୁଲାଇ ରଥ ଆଡ଼କୁ ଚାହାନ୍ତି । ୩୪ ।
ମୃଗୟାରୁ ବାହୁଡ଼ିଣ ଏଥି ଗୋ ସୁନ୍ଦରୀ
ତରଙ୍ଗ-ଅନୀଳେ ଦେହ କ୍ଳାନ୍ତି ପରିହରି ।
ନିହି ମୋର ଶିର ତୁମ୍ଭ କୋଳେ ପ୍ରେମଭରେ
ଶୋଇଥିଲି ପ୍ରିୟେ ! ମଞ୍ଜୁ ବଞ୍ଜୁଳ କୁଞ୍ଜରେ । ୩୫ ।

## ଚନ୍ଦ୍ରଗ୍ରହଣ

ଏହି ନୈସର୍ଗିକ ଘଟନା ଅନନ୍ତ ଗଗନମଣ୍ଡଳରେ କି ପ୍ରକାର ସଂଘଟିତ ହୁଏ, ଏବଂ ଏହାର ମୁଖ୍ୟ କାରଣ କଣ, ଏ ବିଷୟ ଅନେକ ଲୋକେ ଜାଣନ୍ତି ନାହିଁ । ଆମ୍ଭମାନଙ୍କ ପୌରାଙ୍ଗନା; ପୁରାଣବେତ୍ତା ଏବଂ ପ୍ରାଚୀନମଣ୍ଡଳୀଙ୍କୁ ଏହାର ହେତୁ ପଚାରିଲେ, ସେମାନେ କହନ୍ତି ଯେ ରାହୁରୁଷ୍ଟ ହୋଇ ବଦନବ୍ୟାଦାନ ପୂର୍ବକ ଚନ୍ଦ୍ରମାକୁ ଗ୍ରାସ କରେ । ଇତର ଲୋକମାନେ ସର୍ବାନ୍ତଃକରଣରେ ଏହି କଥାରେ ସମ୍ମତ ହୁଅନ୍ତି । କିନ୍ତୁ ବିଶେଷରୂପେ ଅନୁସନ୍ଧାନ କଲେ ଏହି ପ୍ରବାଦ ଅଳୀକ ବୋଲି ପ୍ରତୀୟମାନ ହେବ । ପୂର୍ବତନ କବିମାନେ ସେମାନଙ୍କ ଅଲୌକିକ କଳ୍ପନାଦ୍ୱାରା ସେହି ଘଟନାକୁ ସମ୍ପୂର୍ଣ୍ଣରୂପେ କବିତାର ଉପଯୋଗୀ କରିଅଛନ୍ତି । କିନ୍ତୁ ଜ୍ୟୋତିଷଶାସ୍ତ୍ରର ମତ ତାହା ନୁହେ । ବିଖ୍ୟାତ ଜ୍ୟୋତିର୍ବେତ୍ତାମାନେ ବହୁ ଅନୁସନ୍ଧାନ କରି ଯାହା ସ୍ଥିର କରିଅଛନ୍ତି, ତାହା ଆମ୍ଭେମାନେ ନିମ୍ନେ ପ୍ରଦର୍ଶିତ କରୁଅଛୁଁ ।

ସ୍ଥୂଳଦୃଷ୍ଟିରେ ପ୍ରଥମେ ବୋଧହୁଏ ଯେ ପୃଥିବୀ ଏକ ସ୍ଥାନରେ ସ୍ଥିର ହୋଇଅଛି ଆଉ ସୂର୍ଯ୍ୟ ତାହାର ଚାରିଆଡ଼େ ପରିଭ୍ରମଣ କରୁଅଛି କିନ୍ତୁ ବାସ୍ତବିକ ତାହା ନୁହେଁ । ସୂର୍ଯ୍ୟମଣ୍ଡଳର ଚାରିଆଡ଼େ ବୁଧ, ଶୁକ୍ର, ପୃଥିବୀ, ମଙ୍ଗଳ, ବୃହସ୍ପତି, ଶନି ପ୍ରଭୃତି ଗ୍ରହମାନେ ଯଥାକ୍ରମେ ପରିଭ୍ରମଣ କରୁଅଛନ୍ତି । ଏହି ପରିଭ୍ରମଣର କେତେବେଳେ ବ୍ୟତିକ୍ରମ ହୁଏ ନାହିଁ । ସମସ୍ତେ ନିଜ ନିଜ କକ୍ଷରେ ଅବିଶ୍ରାନ୍ତ ଭାବେ ଭ୍ରମଣ କରୁଅଛନ୍ତି । ଯେଉଁମାନେ ସୂର୍ଯ୍ୟ ଚାରିଆଡ଼େ ଭ୍ରମଣ କରନ୍ତି ସେମାନଙ୍କୁ ଗ୍ରହ ବୋଲାଯାଏ; ପୁଣି ଯେଉଁମାନେ ଗ୍ରହମାନଙ୍କୁ ପ୍ରଦକ୍ଷିଣ କରନ୍ତି ସେମାନଙ୍କୁ ଉପଗ୍ରହ ବୋଲାଯାଏ । ଆମ୍ଭେମାନେ ରଜନୀରେ ଯେଉଁ ଲାବଣ୍ୟମୟ ଚନ୍ଦ୍ରମଣ୍ଡଳ ନିରୀକ୍ଷଣ କରୁଁ, ସେ ଗୋଟିଏ ଉପଗ୍ରହ । ଚନ୍ଦ୍ର ନିଜେ ତେଜୋମୟ ନୁହେ । ସୂର୍ଯ୍ୟାଲୋକରେ ସଂଦୀପିତ ହୁଏ । ଆମ୍ଭମାନଙ୍କ ଅଧିଷ୍ଠାନଭୂତା ପୃଥିବୀର ଅବସ୍ଥା ମଧ ସେହି ପ୍ରକାର ।

ଏହି ପ୍ରକାଣ୍ଡ ଜଡ଼ପିଣ୍ଡମାନେ ପରସ୍ପର ଆକୃଷ୍ଟ ହୋଇ ଅନନ୍ତ ଆକାଶମଣ୍ଡଳରେ ବିଚରଣ କରୁଅଛନ୍ତି । ଏହି ପରିଭ୍ରମଣ ଉପଲକ୍ଷ୍ୟରେ କି କି ନୈସର୍ଗିକ ପରିବର୍ତ୍ତନ ହେଉଅଛି, ତାହା ବାରାନ୍ତରେ ସମାଲୋଚିତ ହେବ । ବର୍ତ୍ତମାନ ପ୍ରସ୍ତାବିତ ବିଷୟର ବିବରଣ କରିବା କର୍ତ୍ତବ୍ୟ ଅଟେ ।

ଏହିପ୍ରକାରେ ପୃଥିବୀ ସୂର୍ଯ୍ୟର ଚାରିଆଡ଼େ ଏବଂ ଚନ୍ଦ୍ର ପୃଥିବୀର ଚାରିଆଡ଼େ ପରିଭ୍ରମଣ କରୁ କରୁ ପୃଥିବୀ ଯେତେବେଳେ ସୂର୍ଯ୍ୟ ଓ ଚନ୍ଦ୍ରର ମଧ୍ୟବର୍ତ୍ତୀ ହୁଏ, ଯେତେବେଳେ ସୂର୍ଯ୍ୟ, ପୃଥିବୀ ଓ ଚନ୍ଦ୍ର ଏକ ସରଳରେଖାର ଅନ୍ତର୍ବର୍ତ୍ତୀ ହୁଏ, ତେତେବେଳେ ପୃଥିବୀର ଛାୟା ଚନ୍ଦ୍ର ଉପରେ ପଡ଼ଇ । ଏଥିପାଇଁ ଚନ୍ଦ୍ର ତିମିରାଚ୍ଛନ୍ନ ଦେଖାଯାଏ । ଏହାକୁ ଚନ୍ଦ୍ରଗ୍ରହଣ ବୋଲାଯାଏ । ଯେତେବେଳେ ଚନ୍ଦ୍ର ଏହି ଛାୟାମଧରେ ସମ୍ପୂର୍ଣ୍ଣରୂପେ ପ୍ରବେଶ କରି ଗମନ କରେ, ତେତେବେଳେ ତାହାର ସମୁଦାୟ ଅଂଶ ଛାୟାରେ ଆବୃତ ହୁଏ । ଏହାକୁ ପୂର୍ଣ୍ଣଗ୍ରାସ କହନ୍ତି । ଏହିପ୍ରକାର ଘଟନା ଗତ ପୌର୍ଣ୍ଣମାସୀ ରଜନୀରେ ଘଟିଥିଲା । ପ୍ରାୟ ତିନିଘଡ଼ିକାଳ ଚନ୍ଦ୍ର ସେହି ବ୍ୟୋମ ବ୍ୟାପୀ ଛାୟା ମଧରେ ପ୍ରବିଷ୍ଟ ହୋଇ ଗମନ କରିବାରୁ ଚତୁର୍ଦ୍ଦିକ୍ ଗାଢ଼ ତମସାଚ୍ଛନ୍ନ ହୋଇଥିଲା । ଯେତେବେଳେ ଚନ୍ଦ୍ର ଛାୟାର ଏକପାର୍ଶ୍ୱ ଦେଇ ଗମନ କରେ, ତେତେବେଳେ ଅଳ୍ପାଂଶ ମାତ୍ର ଛାୟାରେ ଆଚ୍ଛନ୍ନ ହୁଏ । ଏହାକୁ ଆଂଶିକ ଗ୍ରାସ କହନ୍ତି । ଏହି ପ୍ରକାରେ କେତେବେଳେ ଦ୍ୱିପାଦ, ତ୍ରିପାଦ କେତେବେଳେ ଅବା ପାଦମାତ୍ର ଗ୍ରାସ ହୁଏ । ସକଳ ପୂର୍ଣ୍ଣିମାରେ ସୂର୍ଯ୍ୟ ପୃଥିବୀ ଏବଂ ଚନ୍ଦ୍ରର ଏକପ୍ରକାର ସମସୂତ୍ରପାତ ହୁଏ ନାହିଁ, ଏଣୁ ଏହି ଅଦ୍ଭୁତ ବ୍ୟାପାର ସମସ୍ତ ପୂର୍ଣ୍ଣିମାରେ ସଂଘଟିତ ହୁଏ ନାହିଁ ।

ସୂର୍ଯ୍ୟଗ୍ରହଣର ବିଷୟ ବାରାନ୍ତରେ ପ୍ରକାଶିତ ହେବ ।

## ଇଚ୍ଛାର ସ୍ୱାଧୀନତା

ଏହି ସମୁଦାୟ ବିଶ୍ୱ ଜଗଦୀଶ୍ୱରଙ୍କ ଅଲଙ୍ଘ୍ୟ ଶାସନରେ ଅନୁଶାସିତ ହେଉଅଛି । ଧାତୁ, ଉଦ୍ଭିଦ, ଜୀବ ସମସ୍ତେ ଈଶ୍ୱରଙ୍କ ନିୟମର ଅଧୀନ । ଗ୍ରହମାନେ ନିଜ ନିଜ ନିର୍ଦ୍ଦିଷ୍ଟ ପଥରେ ନିରନ୍ତର ଅନ୍ଧଭାବରେ ପରିଭ୍ରମଣ କରୁଅଛନ୍ତି । ତାଙ୍କ ନିୟମରେ ଋତୁମାନେ ପର୍ଯ୍ୟାୟକ୍ରମେ ଧରାବତରଣ ପରିବର୍ତ୍ତନ ସାଧନ କରୁଅଛନ୍ତି, ଏବଂ ଦିବସ ଓ ରଜନୀ କ୍ରମାନ୍ୱୟେ ପୃଥିବୀକୁ ଆଲୋକିତ ଆଉ ତିମିରାଚ୍ଛନ୍ନ କରୁଅଛନ୍ତି । ତାଙ୍କ ନିୟମରେ ବର୍ଷାଧାରା ପୃଥିବୀକୁ ଶସ୍ୟଶାଳିନୀ କରୁଅଛି । ଭୂମିକମ୍ପ ଆଉ ଅଗ୍ନି-ଉତ୍ପାତ ତାଙ୍କ ନିୟମର ଅଧୀନ । ପଶୁପକ୍ଷୀମାନେ ସ୍ୱାଭାବିକ ସଂସ୍କାରର ବଶବର୍ତ୍ତୀ ହୋଇ ଇନ୍ଦ୍ରିୟ ଚରିତାର୍ଥ କରୁଅଛନ୍ତି । ଏମନ୍ତ କୌଣସି ପଦାର୍ଥ ନାହିଁ ଯାହା ତାଙ୍କ ନିୟମକୁ କ୍ଷଣମାତ୍ର ଲଙ୍ଘନ କରି ବର୍ତ୍ତିପାରେ ।

ମନୁଷ୍ୟ କି ମଧ ଏହିପ୍ରକାରେ ଈଶ୍ୱରଙ୍କ ନିୟମଦ୍ୱାରା ଅନ୍ଧଭାବରେ ପରିଚାଳିତ ହୁଏ, ନା ସେ ସର୍ବତୋଭାବେ ସ୍ୱାଧୀନ ! ଆମ୍ଭେମାନେ ଅଦ୍ୟ ଏହି ବିଷୟରେ ଆଲୋଚନା କରିବା । ଏହି ବିଷୟରେ ଦୁଇ ବିଭିନ୍ନ ମତ ଦେଖାଯାଏ । ଅଧିକାଂଶ ଲୋକେ ମନୁଷ୍ୟକୁ ସ୍ୱାଧୀନ ଜୀବ ବୋଲି କହନ୍ତି, କିନ୍ତୁ କେହି କେହି ଲୋକେ ମନୁଷ୍ୟକୁ ପରାଧୀନ ଜୀବ ମଧ୍ୟରେ ଗଣନା କରନ୍ତି ।

ଯେଉଁମାନେ ମନୁଷ୍ୟର ସ୍ୱାଧୀନତା ସ୍ୱୀକାର କରନ୍ତି, ସେମାନେ କହନ୍ତି ଯେ ଈଶ୍ୱର ସମୁଦାୟ ବିଶ୍ୱର ନିୟନ୍ତା, ଅତଏବ ମନୁଷ୍ୟ ମଧ ଈଶ୍ୱରଙ୍କ ନିୟମର ଅଧୀନ ଅଟେ । ମାତ୍ର ମନୁଷ୍ୟର ଇଚ୍ଛା ସମ୍ପୂର୍ଣ୍ଣରୂପେ ସ୍ୱତନ୍ତ୍ର । ସେ ବିଚାରିଲେ ଈଶ୍ୱରଙ୍କ ନିୟମ ବିରୋଧରେ ଆଚରଣ କରିପାରନ୍ତି । ସେ ଲୋକ ଅବା ଅବସ୍ଥାର ଦାସ ନୁହନ୍ତି, ସେ ପୁଣ୍ୟ କିମ୍ବା ପାପର ଅଧୀନ ନୁହନ୍ତି । ସେ ଯଥେଚ୍ଛା କାର୍ଯ୍ୟ କରିପାରନ୍ତି ।

ଅନ୍ୟପକ୍ଷୀୟ ଲୋକମାନେ କହନ୍ତି ଯେ ଈଶ୍ୱର ସର୍ବଜ୍ଞ ଏବଂ ତାଙ୍କ ଜ୍ଞାନ ଭ୍ରମାତ୍ମକ ନୁହେଁ । ଏଣୁ ଆମ୍ଭେମାନେ ଯେଉଁସବୁ କାର୍ଯ୍ୟ କରୁଅଛୁଁ ଅଥବା କରିବୁ ତାହା ସେ ପୂର୍ବରୁ ଜାଣନ୍ତି । ଅତଏବ ଆମ୍ଭ କାର୍ଯ୍ୟ ଉପରେ ଆମ୍ଭର କୌଣସି କର୍ତ୍ତୃତ୍ୱ ନାହିଁ । ଯେମନ୍ତ ରଥ ସାରଥିର ଚାଳନାଧୀନ, ତେମନ୍ତ ମନୁଷ୍ୟ ଅନ୍ଧଭାବରେ ଐଶ୍ୱରିକ ନିୟମଦ୍ୱାରା ଶାସିତ ହୁଏ ପୁଣି କେହି କେହି ଅଦୃଷ୍ଟରୂପ ଅନ୍ଧଶକ୍ତିକୁ କଳ୍ପନା କରି କହନ୍ତି ଯେ ମନୁଷ୍ୟ ଭାଗ୍ୟର ଅଧୀନ । ଯାହା ଅଦୃଷ୍ଟରେ ଅଛି ତାହା କେହି ଖଣ୍ଡାଇ ପାରିବେ ନାହିଁ । ମନୁଷ୍ୟର ସର୍ବପ୍ରକାର ଯତ୍ନ ଅଦୃଷ୍ଟ ଦ୍ୱାରା ନିୟମିତ ହୁଏ ।

ବର୍ତ୍ତମାନ ଆମ୍ଭେମାନେ ଏହି ଦୁଇ ମତର ସତ୍ୟାସତ୍ୟ ଅବଧାରଣ କରିବା । ଆମ୍ଭମାନଙ୍କ ମତରେ ମନୁଷ୍ୟ ସ୍ୱାଧୀନ ଜୀବ ଅଟେ । ଆମ୍ଭେମାନେ ଏହା କହୁ ନାହୁଁ ଯେ ମନୁଷ୍ୟ ସର୍ବପ୍ରକାର ଅଧୀନତାରୁ ମୁକ୍ତ ଅଟେ । ସତ, ମନୁଷ୍ୟ କେତେକ ବିଷୟରେ ଈଶ୍ୱରଙ୍କ ନିୟମର ବଶବର୍ତ୍ତୀ, ମାତ୍ର ତାହାର ଇଚ୍ଛା ସମ୍ପୂର୍ଣ୍ଣରୂପେ ସ୍ୱାଧୀନ, କୌଣସି ଅନ୍ଧ ନିୟମଦ୍ୱାରା ପରିଚାଳିତ ହୁଏ ନାହିଁ ।

ଯେଉଁ ବ୍ୟକ୍ତି ସରଳରୂପେ ଅବହିତ ହୋଇ ନିଜ ନିଜ ଆତ୍ମାବିଷୟ ସମାଲୋଚନା କରନ୍ତି, ସେମାନେ ଅବଶ୍ୟ ସ୍ୱୀକାର କରିବେ ଯେ ମନୁଷ୍ୟ ସ୍ୱାଧୀନ ଇଚ୍ଛାର ପ୍ରବର୍ତ୍ତନାରେ ସମସ୍ତ କାର୍ଯ୍ୟ ସମ୍ପାଦନ କରେ । ଇଚ୍ଛାକଲେ ମନୁଷ୍ୟ ଆପଣାକୁ ପାପପଙ୍କରେ କଳଙ୍କିତ କରିପାରେ, ପୁଣି ଇଚ୍ଛା କଲେ ଇନ୍ଦ୍ରିୟ ଓ ରିପୁମାନଙ୍କୁ ଦମନକରି ସ୍ୱର୍ଗୀୟ ଧର୍ମ ପ୍ରଭାରେ ଆପଣାର ହୃଦୟକୁ ବିଭୂଷିତ କରିପାରେ । ଇଚ୍ଛାକଲେ ମନୁଷ୍ୟ କାମ, କ୍ରୋଧ, ହିଂସା, ଦ୍ୱେଷ, ଅହଙ୍କାର ପ୍ରଭୃତି ଜଘନ୍ୟଭାବ ହୃଦୟରୁ ଦୂରକରି କ୍ଷମା, ଦୟା, ବିନୟ ପ୍ରଭୃତି ସଦ୍‌ଗୁଣ ଦ୍ୱାରା ଆପଣାକୁ ଦେବତୁଲ୍ୟ କରିପାରେ । ହୃଦୟବୃତ୍ତମାନଙ୍କ ଉପରେ ମନୁଷ୍ୟର ଯେପ୍ରକାର କର୍ତ୍ତୃତ୍ୱ ମାନସିକ ବୃତ୍ତମାନଙ୍କ ଉପରେ ମଧ୍ୟ ସେହିପ୍ରକାର କର୍ତ୍ତୃତ୍ୱ ଲକ୍ଷିତ ହୁଏ । ଶାସ୍ତ୍ରାଲୋଚନା କରିବାବେଳେ ଆମ୍ଭେମାନେ ସ୍ୱକୀୟ ଇଚ୍ଛା ଅନୁସାରେ ନାନା ଚିନ୍ତା ଉତ୍ପାଦନ କରିପାରୁଁ । ସ୍ମୃତି, ମନୋଯୋଗ, କଳ୍ପନା ପ୍ରଭୃତି ମନୋବୃତ୍ତମାନଙ୍କୁ ନିଜର ଆୟତ୍ତ କରିପାରୁଁ । ଦେଖ, ଯେତେବେଳେ ଆମ୍ଭେମାନେ ଗଣିତଶାସ୍ତ୍ର ଘଟିତ ପ୍ରତିଜ୍ଞା, ଅଥବା କୌଣସି ବିଜ୍ଞାନତତ୍ତ୍ୱ ସପ୍ରମାଣ କରିବାକୁ ପ୍ରବୃତ୍ତ ହେଉଁ; ସେତେବେଳେ କୌଣସି କଠିନ ବିଷୟରେ ଗାଢ଼ ଚିନ୍ତା କରୁଥାଉଁ ତେତେବେଳେ ଯେ ମନୋବୃତ୍ତିମାନେ ଆମ୍ଭର ଇଚ୍ଛା ଅନୁସାରେ ପରିଚାଳିତ ହୁଅନ୍ତି, ଏହା କିଏ ସନ୍ଦେହ କରିପାରେ । ଶାରୀରିକ କ୍ରିୟାଦି ସମ୍ବନ୍ଧରେ ମଧ୍ୟ ମନୁଷ୍ୟର ସ୍ୱାଧୀନ ଇଚ୍ଛା ବ୍ୟକ୍ତ ହୁଏ । ଅଙ୍ଗାଦି ସଞ୍ଚାଳନ ଆମ୍ଭମାନଙ୍କ ଇଚ୍ଛାର ସମ୍ପୂର୍ଣ୍ଣ ଆୟତ୍ତ ।

କେହି କେହି ଆପତ୍ତି କରିବେ ଯେ ମନୁଷ୍ୟର ସମୁଦାୟ ଚିନ୍ତା ଇଚ୍ଛାସମ୍ଭୂତ ନୁହେ । ଚିନ୍ତାସ୍ରୋତଃ ସତତ ମନୋରୂପ ପ୍ରସ୍ରବଣରୁ ସ୍ୱତଃ ପ୍ରବାହିତ ହୁଏ । ଆମ୍ଭେମାନେ ଏକଥା ସ୍ୱୀକାର କରୁଁ, ମାତ୍ର ଆମ୍ଭ ମତରେ ଏହାଦ୍ୱାରା ସ୍ୱାଧୀନତାର ଅପଳାପ ହେଉ ନାହିଁ; କାରଣ କି ମନୁଷ୍ୟର ମନ ଜନ୍ମାବଧି ଅବସ୍ଥାରୂପ ଛାଞ୍ଚରେ ଗଠିତ ହୋଏ, ଏଣୁ ତାହାର ଚିନ୍ତାସ୍ରୋତ ଅବସ୍ଥାର ଅଧୀନ ହୋଇ ପ୍ରବାହିତ ହୁଏ । କିନ୍ତୁ ଏହା ମଧ୍ୟ ଆମ୍ଭେମାନେ ସାହସପୂର୍ବକ କହିପାରୁଁ ଯେ ମନୁଷ୍ୟ, ଅବସ୍ଥାର ପ୍ରଭାବରୁ ପରାଜୟ କରି ଅନେକ ସମୟରେ ଚିନ୍ତାସ୍ରୋତର ପରିବର୍ତ୍ତନ ସମ୍ପାଦନ କରିପାରେ ।

ଯେଉଁମାନେ କହନ୍ତି ଯେ ଈଶ୍ୱର ସର୍ବଜ୍ଞ ଏବଂ ତାଙ୍କ ଜ୍ଞାନ ଭ୍ରମାତ୍ମକ ନୁହେ, ଏବଂ ଏଥିରୁ ଅନୁମାନ କରନ୍ତି ଯେ ମନୁଷ୍ୟ ସ୍ୱାଧୀନ ଜୀବ ନୁହେଁ, ସେମାନଙ୍କୁ ଆମ୍ଭେମାନେ ନିମ୍ନଲିଖିତ ଉତ୍ତର ପ୍ରଦାନ କରୁଅଛୁଁ । ପ୍ରଥମେ, ଏହା ଆମ୍ଭମାନଙ୍କର ସ୍ୱଭାବସିଦ୍ଧ ଜ୍ଞାନ ଯେ ସର୍ବଜ୍ଞ ଈଶ୍ୱର ଆମ୍ଭ ଜୀବନର ପ୍ରତ୍ୟେକ ଘଟନା ଜାଣିଥିଲେ ସୁଦ୍ଧା ଆମ୍ଭେମାନେ ସ୍ୱାଧୀନ ଭାବରେ ସମସ୍ତ କାର୍ଯ୍ୟ ସମ୍ପାଦନ କରୁଁ । ଈଶ୍ୱର ଆମ୍ଭମାନଙ୍କ ନିୟତି ଅବଧାରଣ କରିଅଛନ୍ତି ଏବଂ ସେହି ନିୟତି ମାର୍ଗରେ ସ୍ୱାଧୀନ ହୋଇ ବିଚରଣ କରିବାର ଅଧିକାର ଦେଇଅଛନ୍ତି । ଆମ୍ଭେମାନେ ଈଶ୍ୱରଙ୍କ ଅଧୀନ ହୋଇ ସୁଦ୍ଧା କିୟତ୍ପରିମାଣରେ ସ୍ୱାଧୀନ ଅଟୁ । ଦ୍ୱିତୀୟତଃ, ଏହା ଜାଣିବାର ଆବଶ୍ୟକ ଯେ ଏକ ବ୍ୟକ୍ତିର ଜ୍ଞାନ ଅନ୍ୟ ବ୍ୟକ୍ତିତଃ କାର୍ଯ୍ୟର କାରଣ ହୋଇ ନ ପାରେ । ଆମ୍ଭେ ଏକ ବ୍ୟକ୍ତିର ସ୍ୱଭାବ ଜାଣୁ ଓ ସେ କିରୂପ କାର୍ଯ୍ୟ କରିବ ତାହା ମଧ୍ୟ ଜାଣିପାରୁଁ, କିନ୍ତୁ ଏସ୍ଥଳରେ ଆମ୍ଭର ଜ୍ଞାନ ସେ ବ୍ୟକ୍ତିର କାର୍ଯ୍ୟର ହେତୁ ହୋଇ ନ ପାରେ । ଅତଏବ ଈଶ୍ୱରଙ୍କ ଜ୍ଞାନ ଆମ୍ଭମାନଙ୍କ କାର୍ଯ୍ୟର ନିୟନ୍ତା ନୁହେଁ ଏବଂ ଆମ୍ଭେମାନେ ଇଚ୍ଛା ଅନୁସାରେ କାର୍ଯ୍ୟ ସାଧନ କରିପାରୁଁ ।

## ସଙ୍ଗୀତ ।

### ରାଗିଣୀ ବେହାଗ – ତାଳ ଆଡ଼ା

ନିଶାନ୍ତ ହୋଇଲା ମନ କି କରୁଛୁ ଶୋଇ ।
ଭବସିନ୍ଧୁ ତରିବାକୁ ତୋ ଇଚ୍ଛା କି ନାହିଁ । ପଦ ।
ଜୀବନର ଦିଗ୍ବଳୟେ, ଆୟୁଶ୍ଚନ୍ଦ୍ର ଲୟ ପାଏ
ଲୋଭ ମୋହାଦିରେ ଅଛୁ ଅଚେତନ ହୋଇ ।
ପାଞ୍ଚ ଯଦି ନିଜ ହିତ, ତାଙ୍କଠାରେ ଦିଅ ଚିତ୍ତ
ଯାହାଙ୍କ ମଧୁର ନାମ ସନ୍ତାପ ହରଇ ।
ହେଲେ ସଯତନ ମନ, ନବଜୀବନ ତପନ
ନବମାଧୁରୀରେ ଜାଣ, ନିଶ୍ଚେ ଉଦିବଇ । ୧ ।

### ରାଗିଣୀ ବେହାଗ – ତାଳ ଆଡ଼ା

କାହିଁ ଅଛ ପ୍ରାଣନାଥ ଦୟାମୟ ହରି ।
ପଡ଼ି ଏଭବସାଗରେ ଯାଉଛି ମୁଁ ସରି । ପଦ ।

ପଡ଼ିଣ ପାପସାଗରେ, ଡାକୁଅଛି ମୁଁ କାତରେ
ଉଦ୍ଧାର ହେ ଦୀନବନ୍ଧୁ କେଶ ମୋର ଧରି ।
ପଡ଼ିଛି ମୃତ୍ୟୁ ସଙ୍କଟେ, କେହି ନାହିଁ ମୋ ନିକଟେ
ତୁମ୍ଭେ ଥାଉଁ ଥାଉଁ ନାଥ ହେଲି ଏତେ ସରି ।
ମାଗୁଛି ଚରଣାଶ୍ରୟ ଦୟାକର ଦୟାମୟ
ପାପ ଶତ୍ରୁ ଏ ହୃଦକୁ ଅଛଇ ଆବୋରି ।

## ବିବିଧ ସମ୍ବାଦ

ଆମ୍ଭେମାନେ ଅତି ଦୁଃଖର ସହିତ ଅବଗତ ହେଲୁ ଯେ ବଙ୍ଗକବି ଶ୍ରୀଯୁକ୍ତ ବାବୁ ଦୀନବନ୍ଧୁ ମିତ୍ର ରାୟବାହାଦୁର ମାନବଲୀଳା ସଂବରଣ କରିଅଛନ୍ତି । ଏ ଜଣେ ପ୍ରକୃତ କବି ଏବଂ ନାଟକ ଲେଖକ ଥିଲେ । ବଙ୍ଗଭାଷାରେ ଗୁଡ଼ିଏ କାବ୍ୟ ଓ ନାଟକ ରଚନାକରି ଯାଇଅଛନ୍ତି; ତନ୍ମଧ୍ୟରେ ''ସୁରଧୁନୀ କାବ୍ୟ'', ''ଲୀଳାବତୀ ନାଟକ'', ''ନବୀନତପସ୍ୱିନୀ ନାଟକ'', ''ସଧବାର ଏକାଦଶୀ ପ୍ରହସନ'', ''ଜାମାଇବାରିକ ପ୍ରହସନ'', ''ହେମଲତା'' ଏବଂ ''ଦ୍ୱାଦଶ କବିତାବଳୀ'' ସର୍ବ ପ୍ରଧାନ । ସେ ଭାରତବର୍ଷର ଅନେକ ଅଂଶ ପରିଭ୍ରମଣ କରିଥିଲେ, ଏବଂ ତତ୍‌ପ୍ରଦେଶୀୟ ନୈସର୍ଗିକ ଶୋଭାର ସୁନ୍ଦର ବିବରଣ ନିଜ ନିଜ କାବ୍ୟ ଓ ନାଟକରେ ସନ୍ନିବେଶିତ କରିଅଛନ୍ତି ।

ଗତ ମଙ୍ଗଳବାର ତା ୧୦ ରିଖ ଦିନ ରାତ୍ରିରେ ମହୀଶୂରସ୍ଥ ଜଣେ ମୁସଲମାନ ବାଜିଗର, ଶ୍ରୀଯୁକ୍ତ ବାବୁ ଶ୍ୟାମାନନ୍ଦ ଦେଙ୍କ ବୈଠକଖାନାରେ ଅତି ଅପୂର୍ବ ବାଜି ଦେଖାଇଥିଲା । ପ୍ରାୟ ଦୁଇସହସ୍ର ଲୋକ ଉପସ୍ଥିତ ହୋଇଥିଲେ; ସମସ୍ତେ ତାହା ଦେଖି ସନ୍ତୁଷ୍ଟ ହୋଇଅଛନ୍ତି ।

ଗତ ୩ ତାରିଖ ନଭେମ୍ବର ଦିନ ଛାତ୍ରବୃତ୍ତି ପରୀକ୍ଷା ଆରମ୍ଭ ହୋଇ ୭ ତାରିଖ ଦିନ ଶେଷ ହେଲା । ବାଲେଶ୍ୱରରେ ୩୧ ଜଣ ପରୀକ୍ଷାର୍ଥୀ ଉପସ୍ଥିତ ଥିଲେ । ପ୍ରଶ୍ନଗୁଡ଼ିକ ପରୀକ୍ଷାର ଉପଯୋଗୀ ହୋଇଥିଲା ।

—

**ପ୍ରଥମ ବର୍ଷ ଦ୍ୱାଦଶ ସଂଖ୍ୟା**
**ଡିସେମ୍ବର, ୧୮୭୩**

# ଇଟାଲୀୟ ଯୁବା

## ପୂର୍ବ ପ୍ରକାଶିତ ଉତ୍ତାରୁ

ଏହା କହି ତାହା ହୃଦୟରେ ଆମ୍ଭ କରସ୍ଥିତ କରବାଳ ଭୁଷି ଦେଲୁଁ । ସେହି ଆଘାତରେ ତାହାର ପ୍ରାଣନାଶ ହେଲା କିନ୍ତୁ ସେତେବେଳଯାଏ ଆମ୍ଭ କ୍ରୋଧ ଶାନ୍ତି ହୋଇ ନ ଥିଲା । ରୁଧିରତୃଷ୍ଣାଯୁକ୍ତ ବ୍ୟାଘ୍ର ଭୀଷଣ ଗର୍ଜନ କରି ଯେପରି ନିଜ ଶିକାର ଉପରେ ପଡ଼ଇ, ଆମ୍ଭେ ସେହିପରି ଫିଲିପ୍ ଉପରେ ଲମ୍ଫଦେଇ ପଡ଼ିଲୁଁ । ବାରମ୍ବାର ଆଘାତ କଲୁଁ । ଗଳାରେ ଗୋଡ଼ଦେଇ ଦଳିଲୁ । ଆମ୍ଭ ସର୍ବାଙ୍ଗ ତାହାର ଶୋଣିତରେ ଲିପ୍ତ ହେଲା । ଲରା ଦୂରରୁ ଏହି ଭୟଙ୍କର ଘଟନା ଦେଖି ଚିତ୍କାର କରି ଆମ୍ଭ ନିକଟକୁ ଦୌଡ଼ି ଆସିଲେ । ତାହାଙ୍କୁ ଦେଖିବା ମାତ୍ରକେ ଆମ୍ଭ ହୃଦୟ ବିଦୀର୍ଣ୍ଣ ହେଲା, ଦ୍ରୁତ ଗତିରେ ସେହି ହତ୍ୟାସ୍ଥାନରୁ ପଳାଇଲୁଁ । କେଉଁଠାକୁ ପଳାଉଅଛୁଁ କାହିଁକି ଅବା ପଳାଉଅଛୁଁ କିଛି ସ୍ଥିର କରି ନ ପାରିଲୁଁ । ଆମ୍ଭ ମୁଣ୍ଡ ବୁଲିଲା । ସେଠାରୁ ଅନ୍ତର୍ହିତ ହେଲେ, ଆମ୍ଭ ହୃଦୟ ସୁସ୍ଥ ହେବ ଏହା ଭାବି ଅପିନାଇନ ପର୍ବତାଭିମୁଖରେ ପ୍ରସ୍ଥାନ କଲୁଁ । ସେହି ଗିରିରେ ରହି ନିର୍ଜ୍ଜନରେ କିଛିଦିନ ଗମିଲୁ । ନିତ୍ୟ ଏକ ଶିଖରରୁ ଅନ୍ୟ ଶିଖରକୁ ଗମନ କରୁଥାଉଁ । ଏରୂପେ ନରହତ୍ୟାରୂପ ମହାପାତକ ବିସ୍ମୃତ ହେବୁଁ, ଅହର୍ନିଶି ଏହି ଭାବନାରେ ଭାବିତ ହୋଇ ବାତୁଳ ପ୍ରାୟ ହେଲୁଁ । ଏପରି ଭୟଙ୍କର ପାପ କି ବିସ୍ମୃତ ହେବାର ସମ୍ଭବ ଅଟେ । ଲରାର ସେହି ମର୍ମଭେଦକ କାତର ଧ୍ୱନି ସର୍ବଦା ଶୁଭୁଅଛି, ଫିଲିପର ସେହି ରକ୍ତାକ୍ତ କଳେବର ସର୍ବଦା ଦେଖୁଅଛୁଁ, ଆମ୍ଭକୁ ଏହିପରି ବୋଧ ହେଲା । ଆତ୍ମଗ୍ଲାନି କେତେ ଯନ୍ତ୍ରଣାଦାୟକ । ଆମ୍ଭେ ଯେବେ ପୂର୍ବ ନିର୍ଦ୍ଦୋଷିତା ପ୍ରାପ୍ତ ହୋଇପାରନ୍ତୁ ତାହା ହେଲେ ଲରାକୁ ଫିଲିପର କଣ୍ଠାଶ୍ଳିଷ୍ଟ ଦେଖିଲେ ସୁଦ୍ଧା ଆମ୍ଭର କ୍ରୋଧୋଦୟ ହୁଅନ୍ତା ନାହିଁ । ନିର୍ଦ୍ଦୋଷିତା ମହାରତ୍ନ ଥରେ ହଜିଲେ ଆଉ ତାହାର ପୁନଃ ପ୍ରାପ୍ତର ସମ୍ଭାବନା ନ ଥାଏ । କ୍ରମେ କ୍ରମେ ଗତାନୁଶୋଚନା ଗୋଟିଏ ମାନସିକ ରୋଗରୂପେ ପରିଣତ ହେଲା । ଯେଉଁଠାକୁ ଗଲୁଁ ଫିଲିପର ବିକଟାକାର ଭୟଙ୍କର ପିଶାଚ ଆମ୍ଭ ପଛେ ପଛେ ଆସୁଥିବାର ବୋଧ ହେଲା । ନିଦ୍ରାବସ୍ଥାରେ ସେହି ଭୂତର ସ୍ୱପ୍ନ ଦେଖିଲୁଁ । ଅନ୍ଧକାରାଚ୍ଛନ୍ନ ଗୃହରେ ସୁଦ୍ଧା ସେହି ଭୂତ ଦୃଷ୍ଟ ହେଲା । ''କିଅବା ଈଶ୍ୱର ଆମ୍ଭକୁ ଦଣ୍ଡ ଦେବା ନିମନ୍ତେ ବାସ୍ତବରେ

ଗୋଟାଏ ଭୂତ ପ୍ରେରଣ କରିଥିଲେ'' କେତେ ଗୃହରେ ବାସ କଲୁଁ, କେତେ ସ୍ଥାନ ଭ୍ରମିଲୁ, କେତେ ଆମୋଦ ପ୍ରମୋଦରେ ରତ ହେଲୁଁ, କାହିଁରେ କିଛି ହେଲା ନାହିଁ। ଶେଷକୁ ତୂଳିକା ଘେନି ସେହି ଭୂତର ଗୋଟିଏ ପ୍ରତିମୂର୍ତ୍ତି ଲେଖିଲୁଁ। ସର୍ବଦା ସେହି ପ୍ରତିମୂର୍ତ୍ତି ଦେଖିଲେ ଆମ୍ଭର ଭୟ ଭାଙ୍ଗିଯିବ ଏହି ବିବେଚନାରେ ଚିତ୍ରପଟକୁ ବାରମ୍ବାର ଦେଖିଲୁ। ମାତ୍ର ତହିଁରେ ଭୟର ହ୍ରାସ ନ ହୋଇ ବରଂ ବୃଦ୍ଧି ହେଲା। ଐହିକ ସୁଖର ଆଶାରେ ଜଳାଞ୍ଜଳି ଦେଇଥିଲୁଁ। ପରକାଳରେ ଯେ ସୁଖ ହେବ ଏପରି ଆଶା ଅବା କି ରୂପେ କରିବୁଁ ? ଦୁର୍ବିଷହ ବେଦନାରେ ଆମ୍ଭ ମନଃ ନିରନ୍ତର ବ୍ୟାକୁଳ ହେଲା। ଆତ୍ମଗ୍ଲାନିରୂପ କୀଟ ହୃଦୟକୋରକକୁ କାଟିଲା ଫୁରନ୍ତ ଯନ୍ତ୍ରଣାନଳ ହୃଦୟକୁ ଦଗ୍ଧ କଲା। ଅନ୍ତର୍ଯାମୀ ଜଗଦୀଶ୍ୱରଙ୍କୁ କିଛି ଅପ୍ରକାଶ ନାହିଁ। ଆମ୍ଭ ମାନସିକ ଭାବ ତାଙ୍କୁ ଗୋଚର ଥିଲା। ଆମ୍ଭ ମନସ୍ତାପ ଅନ୍ତର୍ଦାହ ତାହାଙ୍କୁ ଅଜ୍ଞାତ ହୋଇ ନ ପାରେ। ଆମ୍ଭେ ବାରମ୍ବାର ଭୂମିଷ୍ଠ ହୋଇ ସେ କରୁଣାସିନ୍ଧୁଙ୍କଠାରେ କ୍ଷମା ମାଗିଅଛୁଁ, ଶୀଘ୍ର ମୃତ୍ୟୁକୁ ପଠାଇ ଆମ୍ଭକୁ ଉଦ୍ଧାର କରିବା ନିମନ୍ତେ କେତେ ଥର ମିନତି କରିଅଛୁଁ।

ଆମ୍ଭେ ଏତେଦୂର ଯାଏ ଲେଖି ରଖିଥିଲୁଁ। ଯେତେବେଳେ ଆମ୍ଭେ ସଂସାରରୁ ତିରୋହିତ ହୋଇଥିବୁଁ ସେତେବେଳେ ଏହା ପ୍ରଚାରିତ ହେବ ଆମ୍ଭର ଏହି ଅଭିପ୍ରାୟ ଥିଲା। କୃପାସିନ୍ଧୁ ଜଗଦୀଶ୍ୱର ଆମ୍ଭର ପ୍ରାର୍ଥନା ଶୁଣିଲେ। ଆମ୍ଭେ କାଲି ସନ୍ଧ୍ୟାସମୟରେ ଯେତେବେଳେ ଦେବାଳୟରେ ଆରାଧନା କରୁଥିଲୁଁ, ଆମ୍ଭର ଭାବଭଙ୍ଗୀ ତୁମ୍ଭେ ନିର୍ନିମେଷ ନୟନରେ ଦେଖିଅଛ। ଦେବାଳୟରେ ଗଭୀର ବାଦ୍ୟଧ୍ୱନି ହେବାକୁ ଲାଗିଲା। ମନ୍ଦିର ପ୍ରତିଧ୍ୱନିତ ହେଲା। ସେହି ବାଦ୍ୟ ସମୟରେ ଆମ୍ଭେ କୌଣସି ବ୍ୟକ୍ତିର ବାଦ୍ୟ ଶୁଣିଲୁଁ। ଆହା ! କି ମନୋହର ସ୍ୱର ! ଆମ୍ଭକୁ କହିଲେ ''ଅପରାଧୀ ଯୁବକ ? ତୁମ୍ଭର ଅପରାଧ ମାର୍ଜିତ ହେବ, କିନ୍ତୁ ତୁମ୍ଭକୁ ସମ୍ପୂର୍ଣ୍ଣ ପ୍ରାୟଶ୍ଚିତ୍ତ କରିବାକୁ ହେବ।'' ଆମ୍ଭେ ସେହି ପ୍ରାୟଶ୍ଚିତ୍ତ ନିମନ୍ତେ ଗମନ କରୁଅଛୁଁ। ଜେନୋୟା ନଗରରେ ଉପସ୍ଥିତ ହୋଇ ଧର୍ମାସନ ଅଗ୍ରତେ ଅପରାଧ ସ୍ୱୀକାର କଲେ ଆମ୍ଭର ପ୍ରାଣଦଣ୍ଡ ହେବ। ତୁମ୍ଭେ ଆମ୍ଭ ଦୁଃଖରେ ଦୁଃଖୀ ହୋଇ ଆମ୍ଭର ଆହତ ହୃଦୟରେ ପ୍ରେମରୂପ ଔଷଧ ଲେପିଅଛ କିନ୍ତୁ ଆମ୍ଭର ରୋଗ ସହଜରେ ଉପଶମ ହେବାର ନୁହେଁ। ଆମ୍ଭର ଏହି ଇତିହାସ ପ୍ରଚାର କରିବା ନିମନ୍ତେ ତୁମ୍ଭଠାରେ ରଖିଗଲୁଁ, ଆମ୍ଭକୁ ମନରେ ରଖିଥିବ ଏତିକି।

# ଉପସଂହାର

ଗଳ୍ପ ସରିଲା ଉତ୍ତାରୁ ଗୃହସ୍ୱାମୀ ବାଷ୍ପ-ଗଦ୍ଗଦ ସ୍ୱରରେ କହିଲେ ''ଆଉ ସେପରି ଅକୃତ୍ରିମ ମିତ୍ର ପାଇବୁ ନାହିଁ । ଏହା କହି ରୋଦନ କରିବାକୁ ଲାଗିଲେ । ଅତିଥିମାନେ ଗଳ୍ପ ଶୁଣି କିଛିକାଳ ନୀରବ ହୋଇ ରହିଲେ । ଅନନ୍ତର ଜଣେ କହିଲେ ''ପୃଥିବୀରେ ଏମନ୍ତ ଲୋକ ସୁଦ୍ଧା ଥାଏ ! କି ଆଶ୍ଚର୍ଯ୍ୟ ! କେତେ ଉପନ୍ୟାସ ଶୁଣିଅଛୁଁ ମାତ୍ର କେବେହେଁ ଏପରି ଅପୂର୍ବ କଥା ଶୁଣି ନାହୁଁ । ଆହା ! ସବୁ ମନୁଷ୍ୟ ଯେବେ ଏପରି ସରଳସ୍ୱଭାବ ହୁଅନ୍ତେ ତାହା ହେଲେ ମହୀ ସ୍ୱର୍ଗପରି ହୁଅନ୍ତା ସନ୍ଦେହ ନାହିଁ । ବାସ୍ତବରେ ଏପରି ମନୁଷ୍ୟ ଦୁର୍ଲଭ ।''

ଛବି ଦେଖିବାପାଇଁ ସେମାନଙ୍କର ଏକାନ୍ତ ବାସନା ହେଲାରୁ ଗୃହସ୍ଥକୁ କହିଲେ ''ମହାଶୟ ଛବି ଦେଖିବା ନିମନ୍ତେ ଆମ୍ଭମାନଙ୍କର ଅତ୍ୟନ୍ତ କୌତୂହଳ ହେଉଅଛି । ଅନୁଗ୍ରହପୂର୍ବକ ଦେଖାଇବା ହେଉନ୍ତୁ ।''

ଗୃହସ୍ୱାମୀ କହିଲେ ''ସେଥିରେ ଆମ୍ଭର କିଛି ଆପତ୍ତି ନାହିଁ । ମାତ୍ର ସମସ୍ତେ ଏକାବେଳକେ ନ ଦେଖି ଜଣେ ଜଣେ କରି ଦେଖିଲେ ଭଲ ହେବ । ରାତିରେ ସେହି ଛବି ଯେରୂପ ଭୟଙ୍କର ଦିଶେ ଦିନରେ ସେରୂପ ଦିଶେ ନାହିଁ । ଯେବେ ଆପଣମାନଙ୍କର ଅଭିରୁଚି ହୁଏ ରାତିରେ ଦେଖାଇବୁଁ ।''

ଅତିଥିମାନେ କହିଲେ ''ଆଚ୍ଛା ତେବେ ରାତିରେ ଦେଖିବୁଁ'' ଦିବା ଦୁଇପ୍ରହର ହୋଇଥିଲା । ଗୃହସ୍ଥ ଏବଂ ଅତିଥିମାନେ ସ୍ନାନାଦି କରି ଭୋଜନ କଲେ । ମିଷ୍ଟାଳାପରେ ଅପରାହ୍ନ ଯାପିତ ହେଲା ।

ସୂର୍ଯ୍ୟ ବୁଡ଼ିଲେ । ସଞ୍ଜ ହେଲା । ପକ୍ଷୀମାନେ ଆପଣା ଆପଣା ବସାକୁ ନଉଟିଲେ । ଅନ୍ଧାର ବଢ଼ିଲା । ପୁଣି ବା ପ୍ରବଳ ହେଲା । ଅତିଥିମାନେ ଛବି ଦେଖିବା ନିମନ୍ତେ ବ୍ୟଗ୍ର ହୋଇଥିଲେ । ଗୃହସ୍ୱାମୀ ସେମାନଙ୍କୁ ଜଣେ ଜଣେ କରି ଛବି ଘରକୁ ଘେନିଗଲେ । ସେହି ଘର ପଥର ନିର୍ମିତ, ପୁଣି ଅତିଶୟ ପୁରୁଣା, ତହିଁରେ ଗୋଟାଏ ଝରକା ଥିଲା । ରାତିରେ ସେହି ଝରକାରୁ ଚାହିଁଲେ ଅନ୍ଧାର, ଲତାକୀର୍ଣ୍ଣ ବନଛଡ଼ା ଆଉ କିଛିହିଁ ଦିଶେ ନାହିଁ । ଅତିଥିମାନେ ଛବି ଦେଖି ବିସ୍ମୟ ଯୁକ୍ତ ହେଲେ । ଚିତ୍ରକାରର ଅସାଧାରଣ ଚିତ୍ରନୈପୁଣ୍ୟ ହେତୁରୁ ସେହି ପ୍ରତିମୂର୍ତ୍ତି ସେମାନଙ୍କୁ ପ୍ରକୃତ ଭୂତ ପ୍ରାୟ ବୋଧହେଲା । କହିଲେ ''କି ଭୟଙ୍କର ମୂର୍ତ୍ତି ମଲେ ସୁଦ୍ଧା ଏହା ପାସୋରିବୁ ନାହିଁ ।''

ସମ୍ପୂର୍ଣ୍ଣମ୍ ।

# ଉତ୍ତର ମେଘ ।

## ପୂର୍ବ ପ୍ରକାଶିତ ଉତ୍ତାରୁ ।

ଅଳକା ହର୍ମ୍ମ୍ୟେରାଜେ ନବ ଯୋଷିତ,*
ତୋ ଅଙ୍ଗେ ନୀରଧର ସ୍ୱର୍ଣ୍ଣ ଜଡ଼ିତ;
ଅଳକା ସୌଧେ ଚିତ୍ର ମୋହେ ନୟନ,
ଇନ୍ଦ୍ରକୋଦଣ୍ଡ ତୋର ଅଙ୍ଗେ ଯେସନ;
ତୋ ସ୍ନିଗ୍ଧ ମନ୍ଦ୍ରନାଦ ପରାୟେ ତହିଁ,
ମୁରଜ ମନ୍ଦ୍ରନାଦ ନିତ୍ୟ ସ୍ଫୁରଇ;
ଉଜ୍ଜ୍ୱଳ ମଣି ରଶ୍ମି ପ୍ରାଙ୍ଗଣେ ତାର,
ଯେସନେ ଗର୍ଭେ ତୋର ଶୁକ୍ଳ ଆସାର,
ପୁଷ୍ପଭୂଷଣ ପ୍ରିୟ ନାଗରୀ ଦଳ
କରେ ଶୋଭଇ ଯହିଁ ଲୀଳାକମଳ,
ଅଳକେ କୁନ୍ଦକଳି ରାଜେ ମୋହନ,
ରୋଧ ପରାଗେ ପାଣ୍ଡୁ ଚାରୁ ଆନନ,
ରମ୍ୟଶିରୀଷେ ଶୋହେ ଶ୍ରବଣ ମୂଳ
ସୀମନ୍ତେ ଶୋହେ ନବ କଦମ୍ବ ଫୁଲ;
ବକୁଳମାଳ-ଶୋଭି ଘନଜଘନ,
ମନ୍ଦାର ଶୋଭି କେଶ ଚୁମ୍ବେ ଚରଣ;
ନିତ୍ୟ କୁସୁମ ଯହିଁ ତରୁ ନିକରେ,
ନିତ୍ୟ ମୁଖର ମଧୁକର ଗୁଞ୍ଜରେ,
ରାଜହଂସ ରସନା ସରସୀକୁଳ,
ଫୁଲ୍ଲପଙ୍କଜ ବ୍ରଜେ ନିତ୍ୟ ମଞ୍ଜୁଳ,
ଉଦ୍‌ଗ୍ରୀବ ହୋଇ ନିତ୍ୟ ଗୃହ ମୟୂର,
ଗମ୍ଭୀର କେକାରବେ ପୂରନ୍ତି ପୁର,
ସୁଧାକର କିରଣେ ନିତ୍ୟତିମିର,
ଦୂର ହୋଇ ପ୍ରଦୋଷ ଦିଶେ ରୁଚିର

---

* ରାଗ – କଳହଂସ କେଦାର

ଅଳକାରେ ଲୋତକ ସୁଖରୁ ବହେ,
ଆନ ପୀଡ଼ା ଅଭାବେ ଅନଙ୍ଗ ଦହେ,
ଅନଙ୍ଗ ପୀଡ଼ା ପ୍ରତିକାର ପ୍ରଚୁର
ଅଛି ତହିଁ, ତେଣୁ ସେ ପୀଡ଼ା ମଧୁର,
ମାନ ବିହୁନେ ନାହିଁ ଆନ କଳହ,
ମାନଙ୍କ ବିନୁ ନାହିଁ ଆନ ବିରହ,
ଆନ ବୟସ ନାହିଁ ବିନା ଯୌବନ,
ଏକତ୍ରେ ସର୍ବଋତୁ-ସୁଖ ମିଳନ
କୁସୁମତାରକିତ ମଣିପ୍ରାସାଦେ
ମଧୁ ପିଅନ୍ତି ଯକ୍ଷେ ମନ ପ୍ରସାଦେ,
ଅବସର ଲଭିଣ ମୀନକେତନ,
ପୁଷ୍ପ-ବିଶିଖେ ଅଙ୍ଗ ବିନ୍ଧେ ବହନ,
ବରଯୁବତୀ ବ୍ରଜ ବସନ୍ତି ପାଶେ,
ବାସଇ ସମୀରଣ ସୁରଭି ଶ୍ୱାସେ,
ମୁରଜ ମନ୍ଦ୍ରନାଦ ପୂରଇ ପୁର
କାମିନୀ କଳକଣ୍ଠ ଶୁଭେ ମଧୁର
ମନ୍ଦାକିନୀ ପୁଳିନେ ମନ୍ଦାର ତଳେ,
ଖେଳନ୍ତି ବାଳାବ୍ରଜ ବସି କୁଶଳେ,
ନିର୍ମଳ ବାରିବିନ୍ଦୁ ବହି ପବନ
ସେବନ ଛଳେ ବକ୍ଷ ପରଶେ ଘନ;
କନକ ସିକତାରେ ଲୁଚାଇ ମଣି,
ଲୋଡ଼ନ୍ତି କଉତୁକେ ବରବରନୀ,
ରକ୍ତ ଅମ୍ବରେ ବପୁ ଶୋହେ ସୁନ୍ଦର,
ରକ୍ତ ଅମ୍ବୁଜେ ଯେହ୍ନେ ପୀତ କେଶର
କାମେ ଉନ୍ମତ୍ତ କାନ୍ତ ଦୁକୂଳ ହରେ
ସୁନ୍ଦରୀ ଦିଗମ୍ବରୀ ଥରେ ଲାଜରେ,
ସମ୍ମୁଖେ ରତ୍ନଦୀପ ଉଜ୍ଜ୍ୱଳ ଜଳେ,
ନିର୍ବାଣ ଆଶେ ହିମରଜ ବିଫଳେ
ଫିଙ୍ଗଇ ବରାଙ୍ଗନା ପ୍ରଦୀପ ପ୍ରତି,
ବ୍ୟର୍ଥ ଯତନ ଦେଖି କୌତୁକୀ ପତି;

ଭାସନ୍ତି ପ୍ରେମନୀରେ ତହୁଁ ଉଭୟେ,
ଭିଡ଼ନ୍ତି ପରସ୍ପର ଅଙ୍ଗ ନିର୍ଦ୍ଦୟେ;
ସରମେ ରସବତୀ ରମଣ ଚିତ୍ତ
ରସାଇ ଅନୁରାଗ କରେ ଦୀପିତ;
ସରମେ ଶଶି-ମୁଖୀ ମୁଖମାଧୁରୀ
ଧୈର୍ଯ୍ୟ ଅଙ୍କୁରକୁ ସେ କାମ କତୁରୀ
ପଦ୍ମୋଦର ସୋଦର ବର ବଦନେ
ଲାଜ ରାଗଉଜ୍ଜଳେ ରାଗ ରମଣେ,
ସୁନ୍ଦର ଦରସ୍ମିତ ତା ସଙ୍ଗେ ମିଶେ,
କମଳେ ରବିବିଭା ତା ସରିକି ସେ ?
ଜଳଦମାଳ ତହିଁ ପବନ ବଳେ,
ତୁଙ୍ଗ ସୌଧ ଗବାକ୍ଷେ ପଶି ଚଞ୍ଚଳେ,
ତିନ୍ତାଇ ଭିଡ଼ି ଚିତ୍ର ପଳାନ୍ତି ତ୍ରାସେ
ଧୂମରାଶି ପରାଏ ଦିଶି ଆକାଶେ
ସୂତ୍ରଲମ୍ବିତ ଚନ୍ଦ୍ରକାନ୍ତ ନିକର,
ଯହିଁ ନିଶିରେ ଲଭି ଚନ୍ଦ୍ରମାକର,
କରଇ, ମୁଞ୍ଚି ଜଳବିନ୍ଦୁ ବିମଳ,
ଅଙ୍ଗନା ରତିଖିନ୍ନ ଅଙ୍ଗ ଶୀତଳ;
କୁବେର ଯଶଗୀତ ଗାଇ କୌତୁକେ,
କଳକଣ୍ଠ କିନ୍ନର ଭ୍ରମନ୍ତି ସୁଖେ,
ଯକ୍ଷ ବିଳାସୀଦଳ, ବୈଭ୍ରାଜବନେ,
ସୁର କାମିନୀ ସଙ୍ଗେ ଅନଙ୍ଗ ରଣେ
ମାତନ୍ତି-ନାଦେ ପିକ, ନାଦେ ଭ୍ରମର,
ଅଳଙ୍କାର ଝଙ୍କାର ମିଶେ ସୁନ୍ଦର,
ଲାଜେ ନିକୁଞ୍ଜେ ଥରେ କୁଞ୍ଜବଲ୍ଲରୀ
ଦୋଳେ ମଞ୍ଜୁଳେ ଫୁଲ୍ଲ ଫୁଲମଞ୍ଜରୀ
ଅଭିସାରିକା କୁଳ କାନ୍ତ ସଦନେ,
ନିଶି ଅନ୍ଧାରେ ଯହିଁ ଯାନ୍ତି ବିଜନେ,
କମ୍ପଇ ଅଙ୍ଗଲତା ବେଗେ ସାଧ୍ୱସେ,
କୁଟିଳ କୁନ୍ତଳରୁ ମନ୍ଦାର ଖସେ,

ଚାହାନ୍ତି ଚଉଦିଗେ ଭୟେ ବିକଳ,
ଖସଇ କର୍ଣ୍ଣ ଶୋଭି ସ୍ୱର୍ଣ୍ଣ କମଳ,
ଘନ ଉରଙ୍କୁଁ ଛିଣ୍ଡି ମୁକୁତାହାର
ସୂଚଇ ପ୍ରାତେ ବାଳା-ନିଶି-ବେଭାର
ଅଳକା ପୁରେ ଛନ୍ତି ଶଶି ଶେଖର,
ଅଳି ସିଞ୍ଜିନୀ ଧନୁ କୁସୁମ ଶର,
ନଧରେ ତ୍ରାସେ, ତହୁଁ ଲାବଣ୍ୟମୟୀ
ବାଳା କଟାକ୍ଷତାର କାର୍ଯ୍ୟ କରଇ
କାମିନୀ ଭ୍ରୂରୁ କାମ କୋଦଣ୍ଡ ପରି,
କାମିନୀ ବାମନେତ୍ର ବିଶିଖ ସରି;
ଅନଙ୍ଗର ପ୍ରୟାସ ତେଣୁ ସଫଳ,
ଅସ୍ତ୍ରେ କି କାର୍ଯ୍ୟ ଯାର ଅବଳାବଳ,
ନବ ଦୁକୂଳ-ନାନାରାଗେ ରଞ୍ଜିତ,
ନେତ୍ର ବିଳାସକର ମଧୁ ବାସିତ,
ସପଲ୍ଲବକୁସୁମ ରମ୍ୟଭୂଷଣ,
ଅଲତା ଲଳିତାଙ୍ଗୀ ପାଦମଣ୍ଡନ,
କଳ୍ପତରୁ ଦେହରୁ ସବୁ ପ୍ରସୂତ,
ଇଚ୍ଛାମାତ୍ରକେ ସବୁ ହୋଏ ପ୍ରସ୍ତୁତ,
ସେ ତରୁ କୁଞ୍ଜେ ବସି କୁଞ୍ଜର ଗତି,
ଲେଖନ୍ତି ପ୍ରେମ ଲିପି ପ୍ରେମିକ ପ୍ରତି । ୧୦୪ ।
ଧନପତି ବସତି ଛାଡ଼ି ଉତ୍ତରେ,
ଇନ୍ଦ୍ରଧନୁ ତୋରଣ ନୟନ ହରେ,
ସେ ଅଟେ ନୀରଧର ମୋର ନିଳୟ,
ଦୂରୁଁ ଦିଶଇ ଚାରୁ ସୁଷମା ମୟ । ୧୦୮ ।
ତହିଁ ଉଦ୍ୟାନେ ରାଜେ ଶିଶୁମନ୍ଦାର,
ତାଠାରେ ପୁଷ୍ପପ୍ରାୟେ ସ୍ନେହ ପ୍ରିୟାର,
କନକ ପୁଷ୍ପ ରାଜି ଶୋହେ ସ୍ତବକେ,
ତରୁଣ ରବିକରେ ଚାରୁ ଝଟକେ । ୧୧୨ ।
ମରକତ ସୋପାନ ତହିଁ ସରସୀ
(ନୀଳଘନ ବେଷ୍ଟିତ ଯେସନ ଶଶୀ)

ହେମକମଳକଳି ବହୁ ବିକଶେ,
ନୀଳକାନ୍ତ ବୃନ୍ତରେ ଉଜ୍ଜ୍ୱଳ ହସେ, । ୧୧୬ ।
ସୁଖେ ବସନ୍ତି ତହିଁ ହଂସ ସାରସ,
ବର୍ଷାଗମେ ମାନସେ ନାହିଁ ମାନସ,
ବାରିବିହଙ୍ଗେ ନୀଳ ଲହରୀ ପରେ
ଦୋଳନ୍ତି, ସରୋବର ପୂରି ରାବରେ । ୧୨୦ ।
ସରସୀ ତୀରେ ଇନ୍ଦ୍ରନୀଳ ଶିଖର
କ୍ରୀଡ଼ା ପର୍ବତ ରାଜେ କେଡ଼େ ସୁନ୍ଦର,
ସ୍ୱର୍ଣ୍ଣ-କଦଳୀ-ଦଳ ଚଉଦିଗରେ
ଶୋହେ ବିଜୁଳି ଯେହ୍ନେ ତୋ କଳେବରେ । ୧୨୪ ।
ପ୍ରିୟା ବିହାର ସ୍ଥଳ ସେହୁ ଅଟଇ,
ତୋ ଦରଶନେ ଘନ ! ମନେ ପଡ଼ଇ;
ନୟନୁ ନୀରଝରେ ତାର ସ୍ମରଣେ,
ଝୁରୁଥିବ ପ୍ରେୟସୀ ନିକି ବିଜନେ । ୧୨୮ ।
ଉକ୍ତ ଅଶୋକ ତରୁ ସେ ଉପବନେ,
ନବପଲ୍ଲବ ନିତ୍ୟ କମ୍ପେ ପବନେ,
ମାଧବୀ ବିମଣ୍ଡିତ ମଣ୍ଡପ ତହିଁ,
ରମ୍ୟପୁଷ୍ପେ ମଧୁପ ମଧୁ ପିଅଇ, । ୧୩୨ ।
କୁରବକ ବେଷ୍ଟନ ସେ ମଣ୍ଡପର,
ରାଜେ ପାଶେ ପୁଷ୍ପିତ କାନ୍ତ କେଶର,
ଦ୍ୱନ୍ଦ୍ୱୀ ଅଟଇ ମୋର ତରୁ ଯୁଗଳ,
ନିତ୍ୟ କରଇ ମନ ଈର୍ଷା ଚଞ୍ଚଳ, । ୧୩୬ ।
ବାଞ୍ଛେ ଅଶୋକ ପ୍ରିୟା ପଦପରଶ,
ବାଞ୍ଛେ ବକୁଳ ମୁଖମଦିରା ରସ,
ଏକାନ୍ତେ କାନ୍ତା ତହିଁ ପ୍ରଦୋଷେ ବସେ,
ବାୟୁ ବାରିଜ ସଙ୍ଗେ ବକ୍ର ପରଶେ । ୧୪୦ ।
କନକଯଷ୍ଟି ତହିଁ ରାଜେ ଉଜ୍ଜ୍ୱଳ,
ଶିରେ ସୁନ୍ଦର ଶୋହେ ସ୍ଫଟିକ ଫଳ,
ମୂଳ ମଣ୍ଡଣୀ ତାର ଇନ୍ଦ୍ରନୀଳରେ,
ତୋ ମିତ୍ର ନୀଳକଣ୍ଠ ତହିଁ ବିହରେ, । ୧୪୪ ।

ସରୋଜବନ୍ଧୁ ଚଢ଼ି ଚରମାଚଳେ,
ସ୍ୱର୍ଣ୍ଣକିରଣେ ତରୁ ଶିର ଉଜଳେ,
ସରୋଜନେତ୍ରୀ ବାଳା ତହିଁ ବିଳାସେ,
କରତାଳି ଦିଅଇ ମୟୂର ପାଶେ । ୧୪୮ ।
ବାଜଇ ରଣ ରଣ ବାଜେଣୀ ବଳା,
ନାଚଇ ଘନ ଘନ କେକୀ ଉତଳା,
ତାଳେ ବାଜଇ କରେ ଶିଞ୍ଜା ଭୂଷଣ,
ତାଳେ ମୟୂର ରାବେ ରଞ୍ଜି ଶ୍ରବଣ । ୧୫୨ ।
ନୀଳକମଳ ଗଞ୍ଜି କଳାପ ଟେକି,
କୌତୁକେ ଉପବନେ ନାଚଇ କେକୀ;
ଉରେ ଏ ଛବି ଘେନି ନାଚେ ତରଙ୍ଗ,
ଝୁରେ ନୟନ ଘନ ! ସ୍ମରି ସେରଙ୍ଗ । ୧୫୬ ।
ଏ ଲକ୍ଷଣୁଁ ଜାଣିବ ମୋହେ ଅପାର,
ଖୋଦିତ ଶଙ୍ଖପଦ୍ମେ ଶୋଭେ ତା ଦ୍ୱାର,
ନାହିଁ ସେ ପୂର୍ବଭାବ ପୂର୍ବମାଧୁରୀ,
ରବି ବିହୁନେ ପଦ୍ମପରାଏ ଝୁରି । ୧୬୦ ।
କରଭ ପ୍ରାୟେ କରି ଶରୀର କ୍ଷୀଣ,
କ୍ରୀଡ଼ାଶଇଳେ ସୁଖେ ହୋଇ ଆସୀନ,
ଭେଟିବ ନାଗରୀକୁ ଆଗରେ ତହିଁ,
ଖଦ୍ୟୋତ ପ୍ରାୟେ କାନ୍ତି ନିଭି ଜଳଇ, । ୧୬୪ ।
ମଳିନ ସେ ସୁଷମା ଦେଖିବେ ଘନ !
କାରଣ୍ୟ ଉପୁଜିବ, ଦ୍ରବିବ ମନ,
ସ୍ଫୁରିବ ସୌଦାମିନୀ ନଭେ ଉଜ୍ୱଳେ,
ଚମକୀ ଚାରୁନେତ୍ରୀ ଚାହିଁବ ଭଲେ । ୧୬୮ ।

କ୍ରମଶଃ

—

# ଗ୍ରହମାନେ ପ୍ରାଣୀମାନଙ୍କ ଆବାସଭୂମି କି ନା ?

କୃଷ୍ଣପକ୍ଷ ରଜନୀରେ ସୁନିର୍ମଳ ଗଗନ ଆଡ଼କୁ ଥରେ ଅନାଇଲେ, କେତେ ଅସଂଖ୍ୟ ନକ୍ଷତ୍ର ନେତ୍ରଗୋଚର ହୁଅନ୍ତି । ସେମାନଙ୍କ ମଧ୍ୟରେ କେତେଗୁଡ଼ିଏ ଆମ୍ଭମାନଙ୍କ ସୌରଜଗତର ମଧ୍ୟବର୍ତ୍ତୀ, ଆଉ ସମସ୍ତେ ତାହାର ବହିର୍ଭୂତ । ଏହି ସୌରଜଗତ ମଧ୍ୟରେ କେତେଗୁଡ଼ିଏ ଗ୍ରହ, ପୁଣି କେତେଗୁଡ଼ିଏ ଉପଗ୍ରହ ଅବା ଚନ୍ଦ୍ର ଅଛନ୍ତି । ଆମ୍ଭମାନଙ୍କ ପୃଥିବୀ ତାହା ମଧ୍ୟରେ ଗୋଟିଏ ଗ୍ରହ ଅଟେ; ଏବଂ ତାହାର ଯେମନ୍ତ ଗୋଟିଏ ଚନ୍ଦ୍ର ଉପଗ୍ରହ ଅଛି, ସେହିପରି ଅନ୍ୟାନ୍ୟ ଗ୍ରହମାନଙ୍କ କାହାର ଚାରୋଟି, କାହାର ବା ଆଠୋଟି ଉପଗ୍ରହ ଅଛନ୍ତି; ଆଉ କାହାରି ବା ଗୋଟିଏ ସୁଦ୍ଧା ଉପଗ୍ରହ ନାହିଁ । ସେ ଯାହା ହେଉ, ରଜନୀ କାଳରେ ଆମ୍ଭେମାନେ ଏହି ଗ୍ରହମାନଙ୍କୁ ଦେଖିଥାଉଁ । ଯେତେବେଳେ ସେମାନେ ଦେଖାଯାନ୍ତି, ତେତେବେଳେ ଚିନ୍ତାଶୀଳ ବ୍ୟକ୍ତିମାତ୍ରକେ ସହଜରେ ଆପଣାକୁ ଏହି ପ୍ରଶ୍ନ ପଚାରି ପାରନ୍ତି– ''ଯେମନ୍ତ ଆମ୍ଭମାନଙ୍କ ଏହି ପୃଥିବୀରେ ବିବିଧ ଜୀବଜନ୍ତୁ ଓ ମନୁଷ୍ୟମାନେ ବାସ କରନ୍ତି, ସେହିପରି ଉକ୍ତ ଗ୍ରହମାନେ କି ଜୀବଜନ୍ତୁ ଓ ମନୁଷ୍ୟ ତୁଲ୍ୟ ପ୍ରାଣୀମାନଙ୍କ ଆବାସଭୂମି ନୁହନ୍ତି ?''

ବିଶ୍ୱପତି ଈଶ୍ୱରଙ୍କ ସୃଷ୍ଟି ମଧ୍ୟରେ ଆମ୍ଭେମାନେ ଯାହା କିଛି ଜାଣୁ, ତହିଁରୁ ଉପଲବ୍ଧ ହେଉଅଛି ସୃଷ୍ଟିର କୌଣସି ପଦାର୍ଥ ନିରର୍ଥକ ନୁହେଁ; ପ୍ରତ୍ୟେକ ପଦାର୍ଥ କୌଣସି ବିଶେଷ ଉଦ୍ଦେଶ୍ୟରେ ସୃଷ୍ଟି ହୋଇଅଛି । ତେବେ ଯେ ଏହି ସମସ୍ତ ଗ୍ରହ ଉପଗ୍ରହମାନେ ନିରର୍ଥକ ସୃଷ୍ଟି ହେବେ, ଏହା କିପରି ସମ୍ଭବ ହେବ । ଯଦି ଏପରି କହ ଯେ ଗ୍ରହମାନେ ନିରର୍ଥକ କାହିଁକି ସୃଷ୍ଟ ହେବେ, ସେମାନେ ରଜନୀ କାଳରେ ଆଲୋକ ବିତରଣ କରି ବିଚିତ୍ର ଶୋଭା ସମ୍ପାଦନ କରୁଅଛନ୍ତି । ଆଲୋକ ପ୍ରଦାନ ସେମାନଙ୍କ ସୃଷ୍ଟିର ଉଦ୍ଦେଶ୍ୟ । ଏଥିକି ଆମ୍ଭର ଉତ୍ତର ଏହି ଯେଉଁମାନେ ଏପରି ବିଚାର କରନ୍ତି, ଆମ୍ଭେମାନେ ସେମାନଙ୍କୁ ପିଲା ପରି ଜ୍ଞାନ କରୁଁ; ବ୍ରହ୍ମାଣ୍ଡର ଅନନ୍ତ ପଦାର୍ଥ ମଧ୍ୟରେ ଆଉ କୌଣସି ମୁଖ୍ୟ ଉଦ୍ଦେଶ୍ୟ ନ ପାଇ ସେମାନେ ସମସ୍ତ ପଦାର୍ଥକୁ ଆପଣାର ପ୍ରୀତି ଓ ସୁଖ ବର୍ଦ୍ଧନାର୍ଥ ସୃଷ୍ଟି ବୋଲି ମଣନ୍ତି । ଏପରି ଚିନ୍ତା ବାଳସ୍ୱଭାବସୁଲଭ ଅଟେ । କିନ୍ତୁ ଚିନ୍ତାଶୀଳ ବ୍ୟକ୍ତିମାନେ ଆନପ୍ରକାର ବିଚାର କରନ୍ତି । ଅସଂଖ୍ୟ ଗ୍ରହ ଉପଗ୍ରହମାନେ କେବଳ ଆଲୋକ ଦାନ କରିବା ନିମନ୍ତେ ସୃଷ୍ଟ, ସେମାନେ ଏକଥା କେବେହେଁ ବିଶ୍ୱାସ କରନ୍ତି ନାହିଁ । ସେମାନେ ଆହୁରି ଉଚ୍ଚତର ଉଦ୍ଦେଶ୍ୟ ଅନୁମାନ

କରନ୍ତି । ଗ୍ରହମାନଙ୍କ ମଧ୍ୟରେ କେତେଗୁଡ଼ିଏ ଏହି ପୃଥିବୀ ପରି; କେତେଗୁଡ଼ିଏ ତାହାଠାରୁ କିଛି ସାନ; ଆଉ ସମସ୍ତେ ତାହାଠାରୁ ବହୁତ ବଡ଼, ଏମନ୍ତ କି ଆମ୍ଭମାନଙ୍କ ପୃଥିବୀପରି ଶତ ଅବା ସହସ୍ର ଗୋଲକ ଏକତ୍ର ହେଲେ ସେମାନଙ୍କ ତୁଲ୍ୟ ହୋଇପାରେ କି ନାହିଁ ସନ୍ଦେହ । ଏଡ଼େ ଏଡ଼େ ଅସଂଖ୍ୟ ପୃଥିବୀମାନେ ଯେ ନିରର୍ଥକ ସୃଷ୍ଟ ହୋଇଅଛନ୍ତି, ଆଉ ସେମାନଙ୍କ ମଧ୍ୟରେ ଅତି କ୍ଷୁଦ୍ର ଗୋଟିଏ ଗ୍ରହ (ଆମ୍ଭମାନଙ୍କ ଆବାସଭୂମି ପୃଥିବୀ) ଯେ କେବଳ ବିବିଧ ଉଦ୍ଭିଦ ଓ ପ୍ରାଣୀମାନଙ୍କର ବାସସ୍ଥାନ, ଏପରି ବିବେଚନା କେବଳ ଆତ୍ମମ୍ଭରି ଲୋକମାନେ କରିପାରନ୍ତି । ଅତଏବ ବିଜ୍ଞାନ ସାହାଯ୍ୟରେ କଣ ଉପଲବ୍ଧି ହୁଏ, ଦେଖିବାର ଆବଶ୍ୟକ । ଆମ୍ଭେମାନେ ଏହି ସୌରଜଗତର କଥା ବୋଲିବୁଁ ଯେହେତୁ ତଦ୍‌ବହିର୍ଭୂତ ଗ୍ରହମାନଙ୍କ ବୃତ୍ତାନ୍ତ, ଅତୀବ ଦୂରତ୍ୱ ହେତୁରୁ, ଆଜିଯାଏଁ ଉତ୍ତମରୂପେ ଜଣା ଯାଇ ନାହିଁ ।

ଗ୍ରହମାନେ ପୃଥିବୀପରି ପ୍ରାଣୀମାନଙ୍କ ଆବାସଭୂମି କି ନା, ତାହା କେଉଁ ପ୍ରକାରରେ ଜଣାଯାଏ ?

ଦୂରବୀକ୍ଷଣଦ୍ୱାରା କି ତାହା ପ୍ରତ୍ୟକ୍ଷ କରାଯାଇପାରେ ? ଦୂରବୀକ୍ଷଣ ବସ୍ତୁମାନଙ୍କ ଦୂରତ୍ୱକୁ ହ୍ରାସ କରିଦିଏ ସତ୍ୟ; ମାତ୍ର ତାହା ସାହାଯ୍ୟରେ ଦୂରତ୍ୱ ଏତେ ହ୍ରାସ ହୋଇ ନ ପାରେ ଯେ ଗ୍ରହନକ୍ଷତ୍ରାଦିର ପ୍ରାଣୀ ଅବା ଉଦ୍ଭିଜ୍ଜ ଦୃଷ୍ଟିଗୋଚର ହେବ । ଦୂରବୀକ୍ଷଣ ସେମାନଙ୍କ ଦୂରତ୍ୱ କେତେ ହ୍ରାସ କରିବ ? ପରୀକ୍ଷା ନିମନ୍ତେ ପୃଥିବୀର ଅତି ନିକଟସ୍ଥ ଉପଗ୍ରହ ଯେ ଚନ୍ଦ୍ର, ତାହାକୁଇ ଧର । ଚନ୍ଦ୍ର ପୃଥିବୀଠାରୁ ପ୍ରାୟ ୨୪୦୦୦୦ ମାଇଲ ଅନ୍ତରେ ଅଛି । ମନେକର, ଆମ୍ଭେମାନେ ଏହିକ୍ଷଣି ଏମନ୍ତ ଗୋଟିଏ ଦୂରବୀକ୍ଷଣ ନେଲୁଁ ଯେ ତାହାର ଦର୍ଶନଶକ୍ତି ବୃଦ୍ଧି କରିବାର କ୍ଷମତା ସହସ୍ର ଗୁଣ; ଏହି ଦୂରବୀକ୍ଷଣ ସାହାଯ୍ୟରେ ଚନ୍ଦ୍ରକୁ ଦେଖିଲେ କିପରି ଦିଶିବ ? ଚନ୍ଦ୍ର ବର୍ତ୍ତମାନ ଯେତେ ଅନ୍ତରରେ ଅଛି, ତାହାଠାରୁ ସହସ୍ର ଗୁଣ ନିକଟରେ ଥିଲେ ଯେମନ୍ତ ଦିଶନ୍ତା, ସେହିପରି ସିନା ଦିଶିବ; ଅର୍ଥାତ୍ ଚନ୍ଦ୍ର ଯଦି ୨୪୦୦୦୦ ମାଇଲ ଅନ୍ତରରେ ନ ଥାଇ ୨୪୦ ମାଇଲ ଅନ୍ତରରେ ଥାନ୍ତା ତେବେ ଯେମନ୍ତ ଦିଶିଥାନ୍ତା ସେହିପରି ଦିଶିବ । ତେବେ ଦେଖ ୨୪୦ ମାଇଲ ଦୂରେ ଥାଇ ତୁମ୍ଭେ ବି କେବେ ସ୍ପଷ୍ଟ କି ଅସ୍ପଷ୍ଟ ରୂପେ ଚନ୍ଦ୍ରରେ ଗୋଟିଏ ମନୁଷ୍ୟ, ଓଟ, ହାତୀ ଅବା ଆଉ କୌଣସି ବୃକ୍ଷ ଆଦି ଦେଖିପାର ? ଯଦି ଚନ୍ଦ୍ର ଉପରେ ଜଗନ୍ନାଥଙ୍କ ଦେଉଳ ପରି ଗୋଟିଏ ଦେଉଳ ଥାଏ ତାହାକି ତୁମ୍ଭକୁ ଦିଶିବ ? କେବେହେଁ ନୁହେ । ଯେତେବେଳେ ପୃଥିବୀର ଅତି ନିକଟସ୍ଥ ଉପଗ୍ରହ ସମ୍ବନ୍ଧରେ ଏପ୍ରକାର ଅସ୍ଥିରତା, ଚନ୍ଦ୍ରଠାରୁ ସମଧିକ ଦୂରବର୍ତ୍ତୀ ଅନ୍ୟାନ୍ୟ ଗ୍ରହମାନଙ୍କ ମଧ୍ୟଗତ ପଦାର୍ଥ ତୁମ୍ଭକୁ କିପରି ଦିଶିବ ?

ଅଜ୍ଞଲୋକମାନେ ଏହି ସ୍ଥଳରେ ଏପରି ବିବେଚନା କରିପାରନ୍ତି କି ଯେତେବେଳେ ଏପରି ଅଦ୍ଭୁତ କ୍ଷମତା ବିଶିଷ୍ଟ ଦୂରବୀକ୍ଷଣ ସାହାଯ୍ୟରେ କିଛିହିଁ ଦିଶେ ନାହିଁ, ତେବେ ଗ୍ରହନକ୍ଷତ୍ରମାନେ ପ୍ରାଣୀମାନଙ୍କ ଆବାସଭୂମି କି ନା, ତାହା ଜାଣିବା ପାଇଁ ଆଉ କି ଉପାୟ ଥାଇପାରେ ? କେହି କିଛି ସେଠାକୁ ଯାଇପାରିବ ନାହିଁ। ଉତ୍ତର, ସତ୍ୟ କେହି ସେଠାକୁ ଯାଇପାରିବ ନାହିଁ। ସତ୍ୟ ଦୂରବୀକ୍ଷଣ ଦ୍ୱାରା କୌଣସି ପ୍ରାଣୀ ଅବା ଗୃହ ଦୃଷ୍ଟିଗୋଚର ହୋଇ ନ ପାରେ; କିନ୍ତୁ ଦୂରବୀକ୍ଷଣ ଦ୍ୱାରା ଏମନ୍ତ କେତୋଟି ପ୍ରମାଣ ମିଳଇ ଯେ ତାହା ସାହଯ୍ୟରେ ଆମ୍ଭେମାନେ ନିର୍ଣ୍ଣୟ କରିପାରୁଁ ଯେ ଗ୍ରହନକ୍ଷତ୍ର ସମୂହରେ ପ୍ରାଣୀ ଅଛନ୍ତି କି ନାହିଁ।

ଆମ୍ଭେମାନେ ପ୍ରଥମରେ ''ପାର୍ଥିବଗ୍ରହ''ମାନଙ୍କ ବିଷୟ ଆଲୋଚନା କରିବୁଁ। ଏହି ଗ୍ରହମାନଙ୍କର ପୃଥିବୀ ସଙ୍ଗରେ ବହୁତ ସାଦୃଶ୍ୟ ଥିବାରୁ, ଏମାନଙ୍କୁ ପାର୍ଥିବଗ୍ରହ ବୋଲାଯାଏ। ଏମାନଙ୍କ ସଂଖ୍ୟା ତିନୋଟି; ବୁଧ, ଶୁକ୍ର ଆଉ ମଙ୍ଗଳ। ଏମାନେ ଅପର ଗ୍ରହମାନଙ୍କଠାରୁ ଅଳ୍ପ ଦୂରରେ ଥାଇ ସୂର୍ଯ୍ୟର ଚାରିଆଡ଼ରେ ପରିଭ୍ରମଣ କରନ୍ତି। ଏମାନଙ୍କ ସମ୍ବନ୍ଧରେ ଯାହା କିଛି କହିବା ଆବଶ୍ୟକ ତାହା କହିଲା ଉତ୍ତାରୁ ଅନ୍ୟାନ୍ୟ ଗ୍ରହମାନଙ୍କର କଥା ବୋଲାଯିବ।

ଏହି ପାର୍ଥିବ ଗ୍ରହମାନେ ପ୍ରାଣୀମାନଙ୍କ ଆବାସଭୂମି କି ନା ତାହା ଉତ୍ତମରୂପେ ବୁଝିବାକୁ ହେଲେ, ପ୍ରଥମରେ ଯେଉଁ କାରଣରେ ଏହି ପୃଥିବୀ ପ୍ରାଣୀମାନଙ୍କ ଆବାସଭୂମି ହୋଇଅଛି, ତାହା ବିବେଚନା କରିବା ଉଚିତ। ତହିଁଉତ୍ତାରେ ସେ ସେ କାରଣର ସତ୍ତା ପାର୍ଥିବ ଗ୍ରହମାନଙ୍କ ମଧରେ ଦେଖାଯାଏ କି ନାହିଁ, ତାହା ଜାଣିବା ବିହିତ ଅଟେ। ପ୍ରାଣୀମାନଙ୍କ ବାସଯୋଗ୍ୟା ହେବା ନିମନ୍ତେ ପୃଥିବୀରେ ଯେଉଁ ଯେଉଁ ପଦାର୍ଥ ଆବଶ୍ୟକ, ଯଦି ସେହି ସେହି ପଦାର୍ଥ ପାର୍ଥିବ ଗ୍ରହମାନଙ୍କ ମଧ୍ୟରେ ଦେଖାଯାଏ, ତାହା ହେଲେ ସେମାନେ ଯେ ପ୍ରାଣୀମାନଙ୍କ ଆବାସ ଭୂମି, ଏହା ସହଜେ ଉପଲବ୍ଧ ହେବ। ତେବେ ଦେଖାଯାଉ ପ୍ରାଣୀମାନଙ୍କ ଜୀବନ ଧାରଣୋପଯୋଗୀ କି କି ପଦାର୍ଥ ଆମ୍ଭମାନଙ୍କ ପୃଥିବୀରେ ଅଛି।

ପ୍ରଥମ। ଏହି ପୃଥିବୀ ବାସଯୋଗ୍ୟ ହେବା ନିମନ୍ତେ ତହିଁରେ ତାପ ଏକାନ୍ତ ଆବଶ୍ୟକ। ତାପ ବ୍ୟତିରେକେ କୌଣସି ପ୍ରାଣୀ ବଞ୍ଚିପାରଇ ନାହିଁ। ଅତଏବ ତାପ ଅତ୍ୟନ୍ତ ଆବଶ୍ୟକ ପଦାର୍ଥ। ଏହି ତାପ ପୃଥିବୀକୁ କେଉଁଠାରୁ ଆସେ ? ପାଠକମାନଙ୍କ ମଧ୍ୟରେ ଯେଉଁମାନେ ସାମାନ୍ୟରୂପେ ଭୂଗୋଳ ପଢ଼ିଅଛନ୍ତି, ସେମାନେ ଜାଣନ୍ତି ଯେ ପୃଥିବୀର ଦୁଇପ୍ରକାର ଗତି ଅଛି, ପ୍ରଥମ ଏହି ଯେ, ପୃଥିବୀ ନିଜ ମେରୁଦଣ୍ଡ ଉପରେ ଆବର୍ତ୍ତନ କରଇ; ଦ୍ୱିତୀୟ ସେହିପରି ଯାଉ ଯାଉ ପୃଥିବୀ ସୂର୍ଯ୍ୟମଣ୍ଡଳର ଚାରିଆଡ଼େ ପ୍ରଦକ୍ଷିଣ କରିଆସେ। ତେବେ ଏପରି ଆବର୍ତ୍ତନର କାରଣ

କଣ ? ମନେକର, ଗୋଟିଏ ସ୍ଥାନରେ ନିଆଁ ଜଳୁଅଛି, ତୁମ୍ଭଙ୍କୁ ସେହି ନିଆଁର ଆଲୁଅ ଓ ତାପ ଭୋଗ କରିବାକୁ ହେବ; କିନ୍ତୁ କୌଣସି କାରଣରୁ ତୁମ୍ଭେ ଏକସ୍ଥାନରେ ଠିଆ ହୋଇପାରିଲ ନାହିଁ, ତୁମ୍ଭଙ୍କୁ ସ୍ଥାନ ପରିତ୍ୟାଗ କରିବାକୁ ହେଲା; ଏପରି ସ୍ଥଳରେ ଆଲୁଅ ଓ ତାପ ଭୋଗ କରିବା ନିମନ୍ତେ ତୁମ୍ଭେ କଣ କରିବ ? ଯେଉଁଠାରେ ନିଆଁ ଜଳୁଅଛି, ତାହା ଚାରିଆଡ଼ରେ ଚକ୍ରାକାର ଗତିରେ ବୁଲିବ ସିନା । ଆମ୍ଭମାନଙ୍କ ପୃଥିବୀ ମଧ୍ୟ ସେହିପରି ସୂର୍ଯ୍ୟର ଚାରିଆଡ଼େ ବୁଲୁଅଛି । ଏହି ପ୍ରକାର ଭ୍ରମଣଦ୍ୱାରା ପୃଥିବୀର ଉପରିଭାଗର ସମସ୍ତ ଅଂଶ କ୍ରମାନ୍ୱୟେ ସୂର୍ଯ୍ୟର ଆଲୋକ ଓ ତାପ ଭୋଗ କରିବାକୁ ସମର୍ଥ ହୁଏ । ଏହି ପ୍ରକାର ପ୍ରଦକ୍ଷିଣର ଫଳ ଋତୁ ପରିବର୍ତ୍ତନ । ସୂର୍ଯ୍ୟମଣ୍ଡଳରୁ ଏତେ ତାପ ନିର୍ଗତ ହୁଏ ଯେ ନିରବଚ୍ଛିନ୍ନ ଏକ ପାଖରେ ତାପସଂଯୁକ୍ତ ହେଲେ, ସେ ପାଖ ଦଗ୍ଧ ହୋଇଯାଇପାରେ ପୁଣି ତାପର ପାଖ ନିରବଚ୍ଛିନ୍ନ ତାପର ଅଭାବରେ ଏପରି ଶୀତ ପ୍ରବଳ ହୋଇପାରେ ଯେ ତହିଁରେ କୌଣସି ପ୍ରାଣୀ ଅବା ଉଦ୍ଭିତ୍ ଜନ୍ମିପାରିବେ ନାହିଁ । ଅସଙ୍ଗତ ଅଧିକ ତାପ ଓ ଏକାନ୍ତ ତାପାଭାବ, ଏ ଦୁଇ କାରଣରୁ ପ୍ରାଣୀ ଜୀବନ ବିନଷ୍ଟ ହୁଏ । ଏଥିପାଇଁ ବିଶ୍ୱନିୟନ୍ତା ପୃଥିବୀ ସମ୍ବନ୍ଧରେ ଏହିପରି ଋତୁ ପରିବର୍ତ୍ତନର ନିୟମ କରିଦେଇଅଛନ୍ତି; ସେହି ହେତୁରୁ ପ୍ରାଣୀମାନେ ପୃଥିବୀରେ ବାସ କରିବାକୁ ସକ୍ଷମ ହୋଇଅଛନ୍ତି । ଦେଖାଯାଉ ପାର୍ଥିବ ଗ୍ରହ ମଧ୍ୟରେ ଏପରି କିଛି ବନ୍ଦୋବସ୍ତ ଅଛିକି ନାହିଁ । ଯଦିବା ଦୂରବୀକ୍ଷଣ ସାହାଯ୍ୟରେ ଉକ୍ତ ଗ୍ରହ ସମୂହରେ ଜୀବଜନ୍ତୁ ଅଛନ୍ତି କି ନାହିଁ, ଏ ବିଷୟରେ କୌଣସି ପ୍ରମାଣ ମିଳେ ନାହିଁ । ତଥାପି ତହିଁରୁ ଜଣାଯାଉଅଛି ଯେ ଉକ୍ତ ପାର୍ଥିବ ଗ୍ରହମାନେ ପୃଥିବୀ ପରି ସମଭାବରେ ସୂର୍ଯ୍ୟର ଚାରିଆଡ଼େ ପରିଭ୍ରମଣ କରନ୍ତି, ଏବଂ ସେମାନେ ପୃଥିବୀ ସଙ୍ଗରେ ସମଧରାତଳରେ ଅଛନ୍ତି । ଅତଏବ ସେଠାରେ ଯେ ପୃଥିବୀ ପରି ଋତୁ ପରିବର୍ତ୍ତନ ହୁଏ, ତାହା ସହଜରେ ବୁଝାଯାଏ । ସୁତରାଂ ପୃଥିବୀରେ ଯେ ପ୍ରକାର ଜୀବଜନ୍ତୁ ବାସ କରନ୍ତି, ସେଠାରେ ସେପରି ଜୀବଜନ୍ତୁମାନଙ୍କ ବାସ କରିବା ଅସମ୍ଭବ ନୁହେଁ ।

ଏ ସ୍ଥଳରେ କେହି କେହି ପଚାରିପାରନ୍ତି ଯେ ଏହି ଚାରୋଟି ଗ୍ରହ କିଛି ସମଦୂରରେ ନାହାନ୍ତି; ଗୋଟିଏ ସୂର୍ଯ୍ୟର ଅତି ନିକଟ, ଆଉ ତିନୋଟି ତାହାଠାରୁ ଅପେକ୍ଷାକୃତ ଦୂରରେ ଅଛନ୍ତି । ତେବେ ଦୂର ଗ୍ରହ ଯେ ପରିମାଣରେ ତାପ ପାଇବ, ନିକଟସ୍ଥ ଗ୍ରହ ତଦପେକ୍ଷା ଅଧିକ ତାପ ପାଇବ, ଏଣୁ ପୃଥିବୀର ଜୀବ ତୁଲ୍ୟ ଜୀବ ବୁଧ ଗ୍ରହରେ କିପରି ବାସ କରିପାରେ ? ସେମାନଙ୍କ ପୋଡ଼ିଯିବାରତ ସମ୍ଭାବନା ଉତ୍ତର, ଏସ୍ଥଳରେ ବିଚାର କରିବା ଉଚିତ ଯେ ସୂର୍ଯ୍ୟର ଉପଗ୍ରହମାନଙ୍କ ଦୂରତ୍ୱ ଉପରେ ନିର୍ଭର କରେନାହିଁ; ତାପ ପରିମାଣ ଗ୍ରହମାନଙ୍କ ବେଷ୍ଟନକାରୀ ବାୟୁ ଉପରେ ନିର୍ଭର କରେ । ଦେଖ ଏହି ପୃଥିବୀ ମଧ୍ୟରେ ଉଷ୍ଣକଟିବନ୍ଧର କୌଣସି ନିମ୍ନଭୂମିର

ତାପ କେତେ; ଆଉ ସେହି ଦେଶ ମଧ୍ୟବର୍ତ୍ତୀ କୌଣସି ଉଚ୍ଚପର୍ବତ ଶିଖର ଦେଶର ତାପ କେତେ । ପର୍ବତ ଶିଖର ଏତେ ଶୀତଳ କାହିଁକି । କେବଳ ସେଠାରେ ବାୟୁର ଅଧିକତର ତରଳତାହିଁ ତାହାର ପ୍ରଧାନ କାରଣ । ଏହିପରି ଯେଉଁଠାରେ ବାୟୁ ଯେତେ ଅଧିକ ତରଳ ହେବ, ସେଠାରେ ତାପର ପରିମାଣ ତେତେ ହ୍ରାସ ହେବ । ଅତଏବ ଯେବେ ଗ୍ରହମାନଙ୍କୁ ବାୟୁଦ୍ୱାରା ପରିବେଷ୍ଟିତ ବିବେଚନା କରାଯାଏ, ତେବେ ସହଜବୁଦ୍ଧିରେ ନିର୍ଣ୍ଣୀତ ହୋଇପାରେ ଯେ ଯେମନ୍ତ ବୁଧ ଆଉ ଶୁକ୍ରଗ୍ରହ ପୃଥିବୀଠାରୁ ସୂର୍ଯ୍ୟର ଅଧିକ ନିକଟ ଥିବାରୁ ସେମାନଙ୍କର ଅଧିକ ତାପ ପାଇବାର ସମ୍ଭବ ତେମନ୍ତ ସେଠାରେ ସେହି ପରିମାଣରେ ପୃଥିବୀଠାରୁ ବାୟୁର ଅଧିକ ତରଳ ହୋଇଥିଲେ କଦାପି ତାପର ସାମଞ୍ଜସ୍ୟ ହୋଇପାରେ ନାହିଁ । ଗ୍ରହମାନେ ଯେ ବାୟୁଦ୍ୱାରା ବେଷ୍ଟିତ, ତାହା ପଛେ ବୋଲାଯିବ । କ୍ରମଶଃ ।

## ଅର୍ଥ ଏବଂ ମୁଦ୍ରା ।

ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗଯାଏ ଇୟୁରୋପ ଭୂଭାଗରେ ଏପରି ବିଶ୍ୱାସ ଥିଲା ଯେ ମୁଦ୍ରା ଅର୍ଥାତ୍ ଟଙ୍କା ପ୍ରକୃତ ଅର୍ଥପଦରେ ବାଚ୍ୟ । ଏଥିନିମନ୍ତେ ଭିନ୍ନ ଭିନ୍ନ ରାଜ୍ୟ ମଧ୍ୟରେ ବ୍ୟବସାୟ ବାଣିଜ୍ୟ ବିଷୟକ ସନ୍ଧିସମୟରେ କେତେ ଗଣ୍ଡଗୋଳ ହେଉଥିଲା ଏଇ ରଜାମାନଙ୍କ ମଧରେ ପରସ୍ପର ବିବାଦ ହେତୁରୁ କେତେ ନରରକ୍ତପାତ ହେଉଥିଲା । ଏକାରଣରୁ ବାଣିଜ୍ୟର ଯେ କେତେ ବ୍ୟାଘାତ ହେଉଥିଲା ତାହା କଳନା କରିବା ଅସମ୍ଭବ, ସୁତରାଂ ଜନସମାଜ ନିରନ୍ତର ଅସୁଖରେ ରହୁଥିଲା ଏବଂ ତାହାର ଉନ୍ନତି ପକ୍ଷରେ ବ୍ୟାଘାତ ହେଉଥିଲା । ଦେଖ ଗୋଟିଏ ବାଣିଜ୍ୟ ବୋଇତ ଏକ ରାଜ୍ୟରୁ ଅନ୍ୟ ରାଜ୍ୟକୁ ଚାଲିଲା, ଦ୍ରବ୍ୟାଦି ବିକ୍ରୟ କରି ତାହା ବଦଳରେ ଆନଦ୍ରବ୍ୟ ନ ନେଇ କେବଳ ଧାତୁମୟ ମୁଦ୍ରା ମୂଲ୍ୟରୂପେ ଘେନିଗଲା । ଏପରି ସ୍ଥଳରେ ଦେଶସ୍ଥ ଲୋକେ ବିଚାରିଲେ ଯେ ବୋଇତ ଆମ୍ଭମାନଙ୍କୁ ଦରିଦ୍ର କରି ସବୁ ଅର୍ଥ ନିଜ ଦେଶକୁ ଘେନିଗଲା ଏବଂ ତଦ୍ଦ୍ୱାରା ସ୍ୱଦେଶର ଧନ ବର୍ଦ୍ଧନ କଲା । କିନ୍ତୁ ବିନିମୟରେ ଉକ୍ତ ବୋଇତ ଯେସବୁ ଦ୍ରବ୍ୟ ଦେଇଗଲା ତାହାଆଡ଼କୁ କେହି ଅନାଇଲେ ନାହିଁ ବରଂ ବିଚାରିଲେ ଯେ ସେସବୁ ଦରିଦ୍ରତାର ଚିହ୍ନ । ଏଥିପାଇଁ କେବେକେବେ ଏକ ଦେଶର ରଜା ଭିନ୍ନ ଦେଶୀୟ ବୋଇତକୁ ଅଟକ କରିବାରୁ ଘୋର ଯୁଦ୍ଧ ଲାଗୁଥିଲା ତେଣୁ ବହୁ ପ୍ରାଣୀର ବିନାଶ ଘଟୁଥିଲା । ବହୁକାଳରୁ ଏହିପରି ରୀତି ଚଳିଆସୁଥିଲା କିନ୍ତୁ କୌଣସି ରାଜା ରାଜମନ୍ତ୍ରୀ ଅବା ରାଜନୀତିଜ୍ଞ ପଣ୍ଡିତ ଏ ଦୋଷ ସଂଶୋଧନ କରି ପାରି ନ ଥିଲେ ଏମନ୍ତ କି ପ୍ରଚଳିତ ମତ ଯେ ଭ୍ରାନ୍ତି ସଂକୁଳ

ଏହାକୁ ବାରେ କେହି ସ୍ୱପ୍ନରେ ସୁଦ୍ଧା ଭାଳୁ ନ ଥିଲେ । ଶେଷକୁ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ସ୍କଟଲ୍ୟାଣ୍ଡ ଦେଶୀୟ ଦୀନ, କେବଳ ଜ୍ଞାନମାତ୍ର ସମ୍ବଳ ମହାମହୋପାଧ୍ୟାୟ ଆଦମ ସ୍ମିଥ, ଯାହାଙ୍କଠାରେ ରାଜ୍ୟ ସମସ୍ତ ପ୍ରଣତ ହେବାର ଉଚିତ, ସାରଗର୍ଭ ଯୁକ୍ତି ଦେଖାଇ ଏହି ଭ୍ରାନ୍ତିର ଉଚ୍ଛେଦ ସାଧନ କଲେ । ଏହି ସାମାନ୍ୟ ବ୍ୟକ୍ତିଙ୍କଦ୍ୱାରା ପୃଥିବୀ କେତେଦୂର ଉପକୃତ ହୋଇଅଛି ବିଜ୍ଞବର ବକଲସାହେବ ତାହା ସୁନ୍ଦରରୂପେ ପ୍ରତିପନ୍ନ କରିଅଛନ୍ତି ।

ଅର୍ଥ କାହାକୁ କହନ୍ତି ଏକଥା କାହାକୁ ପଚାରିଲେ, ପ୍ରାୟ ଏହି ଉତ୍ତର ମିଳଇ ଯେ ଟଙ୍କା ଅର୍ଥ, ଏହା ଛଡ଼ା ଆଉ କଣ ହୋଇପାରଇ ? ପୁଣି ଲୋକେ ପ୍ରଶ୍ନକାରୀକୁ ଉପହାସ କରନ୍ତି ଆହୁରି ବୋଲନ୍ତି ଏଉଟା କି ନିର୍ବୋଧ, ଅର୍ଥ କାହାକୁ କହନ୍ତି ଜାଣେ ନାହିଁ । ଆହୁରି ପୁଣି ଅନ୍ୟ ବ୍ୟକ୍ତିକୁ ଏକଥା ପଚାରିଅଛି । ଜଣେ ବ୍ୟକ୍ତିକୁ ଯଦି ପଚାର ଯେ ଅମୁକେଇ ଲୋକ କିପରି ଧନୀ, ତେବେ ସେ ସେହିକ୍ଷଣି ବୋଲିବ "କାହିଁକି ? ତାହାର ନଗଦ ଦଶହଜାର ଟଙ୍କା ଅଛି ଦୁଇ ଚାରିଟା ପକା କୋଠା ଅଛି ତିନି ଚାରିଖଣ୍ଡ ଗାଡ଼ି ଅଛି" ଇତ୍ୟାଦି । ଏଠାରେ ଦ୍ରବ୍ୟାଦି ଯେ ଧନ ମଧ୍ୟରେ ଧରା ହେଲା, ସେ କେବଳ ଏହି ବିବେଚନାରେ ଯେ ତାହାର ମୂଲ୍ୟ ଏତେ ଟଙ୍କା ହେବ, ଅତଏବ ଧାତୁମୁଦ୍ରା ଗଣନାରେ ଲୋକ ଧନୀବୋଲି ଚିହ୍ନିତ ହେଲା । ଦୁଇଟଙ୍କା ଜଣେ ବ୍ୟକ୍ତିକୁ ଦେଇ, ତାହାଠାରୁ ଦୁଇମହଣ ଚାଉଳ ନେଲେ, ଲୋକେ ବିଚାରିବେ ମୋ ଧନରୁ ଦୁଇଟଙ୍କା ଊଣା ହେଲା । ଯେଉଁ ବେପାରୀ ବେପାର କରୁଅଛି ସେ ମନେମନେ ବିଚାର କରୁଅଛି ଯେ ମୋ ହାତରେ ଥିବା ଦ୍ରବ୍ୟାଦି ବିକ୍ରିକରି ଟଙ୍କା ପାଇବି, ଟଙ୍କା ପାଇଲା କ୍ଷଣି ସେ ଟଙ୍କାକୁ କଣ କରିବ ? ପୁଣି ଦ୍ରବ୍ୟାଦି କିଣି ଟଙ୍କାଲାଭର ଆଶାରେ ତାହାକୁ ବିକ୍ରୟ କରିବ । ଏହିପରି ତାହାର ସବୁ ବିନିମୟ ବ୍ୟବସାୟର ଉଦ୍ଦେଶ୍ୟ କଣ ? କେବଳ ଟଙ୍କା ଲାଭ । ଯେତେବେଳେ ସେ ବୃଦ୍ଧାବସ୍ଥାରେ ଅନେକ ଟଙ୍କା ସଂଗ୍ରହ କରି ବାଣିଜ୍ୟବ୍ୟବସାୟରୁ ଅପସୃତ ହେବ, ତେତେବେଳେ ଲୋକେ କହିବେ ଯେ ଏହାର ଅନେକ ଟଙ୍କା ଅଛି, ଏ ବ୍ୟକ୍ତି ଧନୀ, ଏ ସ୍ଥଳରେ ଜିଜ୍ଞାସ୍ୟ ଏହି ଯେ ଟଙ୍କା ନିଜେ କି ଜଣକର ଅଭାବ ପୂର୍ଣ୍ଣ କରିପାରେ ? ଶେଷକୁ ଏହି ଟଙ୍କାର କିପ୍ରକାର ବ୍ୟବହାର ହେବ ? ତାହା ଶେଷକୁ କାହିଁରେ ପରିଣତ ହେବ ?

ଟଙ୍କାର ବ୍ୟବହାର ଅତି ଚମତ୍କାର ଏବଂ ସର୍ବଦେଶ ପ୍ରଚଳିତ । ଏଣୁ ଲୋକେ ଭ୍ରାନ୍ତ ହୋଇ ଟଙ୍କାକୁ ଅର୍ଥ ବୋଲି ବିବେଚନା କରନ୍ତି । ଏ ବିଷୟ ଅନ୍ୟସ୍ଥାନରେ ଆଲୋଚିତ ହେବ । ଥରେ ଅର୍ଥ କାହାକୁ କହନ୍ତି ଦେଖାଯାଉ । ପରିଶ୍ରମ ଦ୍ୱାରା ଉତ୍ପନ୍ନ ଅଥଚ ମନୁଷ୍ୟର ଅତ୍ୟନ୍ତ ଆବଶ୍ୟକୀୟ ପୁଣି ବିନିମୟଶୀଳ ଯେଉଁ ଦ୍ରବ୍ୟ, ତାହାକୁ ଅର୍ଥ ବୋଲାଯାଏ । ପ୍ରକୃତିଠାରୁ ଆମ୍ଭେମାନେ ଯେଉଁ ଦ୍ରବ୍ୟ ବିନାଯତ୍ନରେ

ପାଇଥାଉଁ, ତାହା ଅର୍ଥ ମଧରେ ଗଣ୍ୟ ହୋଇନପାରେ । ଦେଖ ଖରା ଆଉ ପବନ ମନୁଷ୍ୟର କେଡ଼େ ଉପକାରୀ ଏବଂ ଆବଶ୍ୟକୀୟ କିନ୍ତୁ ତାହା କୌଣସି ଲୋକର ଶ୍ରମଲଭ୍ୟ ନୁହେଁ । ତାହା ସମସ୍ତଙ୍କ ପକ୍ଷର ନିଷ୍ପ୍ରୟୋଜନ । କାହାରି ଅଭାବ ନାହିଁ । ଏଣୁ ତାହାର ବିନିମୟ ନିଷ୍ପ୍ରୟୋଜନ ।

ପୂର୍ବଲିଖିତ ନିୟମରୁ ପ୍ରତିପନ୍ନ ହେଉଅଛି ଯେ କେବଳ ଏକମାତ୍ର ଟଙ୍କା ଅର୍ଥ ପଦରେ ବାଚ୍ୟ ନୁହେଁ । ଆୟାସଲଭ୍ୟ ଦ୍ରବ୍ୟ ମଧ୍ୟରେ ଟଙ୍କା ଗୋଟିଏ ଦ୍ରବ୍ୟମାତ୍ର । ଯଦି ଟଙ୍କାକୁ ମହଣେ ଚାଉଳ ମିଳେ, ତେବେ ମହଣକ ଚାଉଳର ମୂଲ୍ୟ ଯେତେ, ଟଙ୍କାକ ମୂଲ୍ୟ ତେତିକି । ବେଶି ନୁହେଁ କି କମ୍ ନୁହେଁ । ଯଦି ବୋଲ ଯେ ଟଙ୍କାର ମୂଲ୍ୟ ବେଶି, ତେବେ ମନେକର ମୋର ଗୋଟିଏ ଟଙ୍କା ଅଛି ମାତ୍ର ମୋର ଚାଉଳ ଦରକାର; ଏତେବେଳେ ଚାଉଳ ବଜାରରେ ମିଳୁ ନାହିଁ, ତେବେତ ଟଙ୍କାର କିଛି ମୂଲ୍ୟ ରହିଲା ନାହିଁ । ଯେଉଁ ଚାଉଳ ଭାଉ ଟଙ୍କାଏ ଥିଲା ସେ ଏବେ ଦୁଇଟଙ୍କା ହୋଇଅଛି । ଏଥିରୁ ଏହିତା ଜଣାଗଲା ଯେ ଚାଉଳ ମହାର୍ଘ ହୋଇଅଛି, ଏବଂ ବିନିମୟ ନିୟମ ଅନୁସାରେ ଟଙ୍କା ଶସ୍ତା ହୋଇଅଛି । ଏଥିରୁ ଏହା ମଧ୍ୟ ଅନୁମିତ ହେବ ଯେ ଜନସମାଜରେ ଯେତେ ଟଙ୍କା ଚଳୁଅଛି, ତାହାର ସଂଖ୍ୟା ବଢ଼ାଇଲେ ସମାଜର ଧନବୃଦ୍ଧି ହେବ ନାହିଁ, କାରଣ ଏକମାତ୍ର ଟଙ୍କା ଧନମଧ୍ୟରେ ଗଣ୍ୟ ନୁହେଁ । ମନେକର ଦେଶରେ ଦୁଇଲକ୍ଷ ମହଣ ଚାଉଳ ଅଛି ଏବଂ ଦୁଇଲକ୍ଷ ଟଙ୍କା ଚଳୁଅଛି । ଏଣୁ ବିନିମୟରେ ପ୍ରତି ମହଣ ଟଙ୍କାଏ ଲେଖାଏଁ ପଡୁଅଛି । ଯଦି ଦୁଇଲକ୍ଷ ଟଙ୍କାରେ ଆଉ ଚାରିଲକ୍ଷ ଟଙ୍କା ମିଶାଇଦେବ, ତାହାହେଲେ ଏହିତା ହେବ ଯେ ପ୍ରତିମହଣ ତିନିଟଙ୍କା ଲେଖାଏ ପଡ଼ିବ । ଟଙ୍କାଦ୍ୱାରା ଧନବୃଦ୍ଧି ହୁଏ ନାହିଁ, ଏ ବିଷୟ ପଛେ କଥିତ ହେବ ।

ବର୍ତ୍ତମାନ ବିନିମୟ ବିଷୟ ଏବଂ ଟଙ୍କାର ଇତିହାସ ଆଲୋଚନା କରାଯାଉ । ଭିନ୍ନ ଭିନ୍ନ ଲୋକଙ୍କଠାରେ ଭିନ୍ନ ଭିନ୍ନ ଦ୍ରବ୍ୟ ପ୍ରସ୍ତୁତ କରିବା ଭାର ସୁନ୍ଦର ରୂପେ ସ୍ଥାପିତ ହେବାକ୍ଷଣି, ଅଭାବର ଆଧିକ୍ୟ ହେତୁରୁ, ଜଣକର ପରିଶ୍ରମରେ ତାହାର ସମୁଦାୟ ଅଭାବ ପୂର୍ଣ୍ଣ ହେଲା ନାହିଁ, ପୁଣି ପୂର୍ବେ ତାହାର ନିଜ ଉତ୍ପାଦିତ ବସ୍ତୁର ଯେଉଁ ଅଭାବ ଥିଲା ତାହା ପୂର୍ଣ୍ଣହୋଇ ଅନେକ ବଳିବାକୁ ଲାଗିଲା, ଏଣୁ ଏହି ଉଦ୍‌ବୃତ୍ତ ଅଂଶ ତାହା ପକ୍ଷରେ ଅନାବଶ୍ୟକ ହେଲା । କିନ୍ତୁ ସେ ଆନ୍ୟ ବ୍ୟକ୍ତିର ପରିଶ୍ରମ-ଉତ୍ପନ୍ନ ଦ୍ରବ୍ୟ ପାଇବାକୁ ପ୍ରତ୍ୟାଶୀ; ଅନ୍ୟବ୍ୟକ୍ତି ମଧ୍ୟ ତାହାର ପରିଶ୍ରମୋତ୍ପନ୍ନ ଦ୍ରବ୍ୟ ପାଇବାକୁ ପ୍ରତ୍ୟାଶୀ । ଏଠାରେ ଦୁହିଁଙ୍କର ଅଧିକା ବସ୍ତୁର ବିନିମୟଦ୍ୱାରା ଦୁହିଁଙ୍କର ଅଭାବ ପୂର୍ଣ୍ଣ ହୋଇପାରେ କିନ୍ତୁ ପ୍ରୟୋଜନ ଅନୁସାରେ ଭିନ୍ନ ଭିନ୍ନ ଦ୍ରବ୍ୟ ମଧ୍ୟରେ ପରିମାଣର ଇତର ବିଶେଷ ହେବାର ସମ୍ଭବ ।

ଯେତେବେଳେ ବିନିମୟର କୌଣସି ସହଜ ଉପାୟ ନ ଥିବାରୁ କେତେ କ୍ଳେଶ ଘଟିବାର ସମ୍ଭବ । ମନେକର ଜଣେ କେବଳ କୋଡ଼ି ଗଢ଼େ, ତାହାର ଚାଉଳ ଦରକାର ହେଲା କିନ୍ତୁ ସେ ଖଣ୍ଡିଏ କୋଡ଼ି ବଦଳରେ ଚାରିଜଣଙ୍କର ଖୋରାକୀ ଚାଉଳ ପାଇପାରେ; ଜମା ଦୁଇଜଣଙ୍କର ଖୋରାକୀ ତାହାର ଆବଶ୍ୟକ, ବାକି ଯେତେକ ତାହା ପକ୍ଷରେ ଅନାବଶ୍ୟକ, କିନ୍ତୁ ସେହିପରି ପରିମାଣର ଊଣା ନେବାର ଉପାୟ ନାହିଁ । ଚାଉଳଛଡ଼ା ତାହାର ଯଦି ଆଉ ପାଞ୍ଚ ରକମ ଦ୍ରବ୍ୟ ଆବଶ୍ୟକ ହୁଏ ଏବଂ ସେ ଯଦି ଦିନକେ ଖଣ୍ଡିକରୁ ବେଶି ତିଆର କରି ନପାରେ ତେବେ ତାହାକୁ ଅନ୍ୟ ବସ୍ତୁ ପାଇଁ ବଳକା ଚାଉଳ ବଦଳ କରିବାକୁ ହେବ । ମନୁଷ୍ୟ କ୍ଳେଶରେ ପଡ଼ିଲେ ଉପାୟ ଉଦ୍ଭାବନ କରିବାକୁ ଯତ୍ନକରେ, ଏଣୁ ବିନିମୟର ସହଜ ଉପାୟ ବାହାର କରିବା ନିମନ୍ତେ ଯତ୍ନଶୀଳ ହେଲା । ଯେଉଁ ଦେଶ ଉନ୍ନତି ପଥରେ ଧାବିତ ହେଇଅଛି ସେ ଦେଶସ୍ଥ ଲୋକେ ବିନିମୟର ସହଜ ଉପାୟ ଉଦ୍ଭାବନ କରିଥାନ୍ତି । ଦକ୍ଷିଣ ଏସିଆର ସଭ୍ୟଜାତିମାନେ ୟୁରୋପୀୟ ବାସୀମାନଙ୍କଠାରେ ପଶୁଚର୍ମାଦି ବିନିମୟ କରି ଆହାରାଦିଦ୍ରବ୍ୟ ନିୟନ୍ତି । ନିୟୁ ଫାଉଣ୍ଡଲଣ୍ଡ ବାସୀମାନଙ୍କର କଡ଼ ମାଛ, ଶୁଖୁଆ ବିନିମୟର ପ୍ରଧାନ ଦ୍ରବ୍ୟ ଅଟେ । ପଲିନେସିୟା ଦ୍ୱୀପ ସମୂହରେ ପଶୁଲୋମ ବ୍ୟବହୃତ ହୁଏ । ଆମ୍ଭମାନଙ୍କ ପ୍ରତିବେଶୀ କୁକୀମାନେ ହାତୀ ଦାନ୍ତ ଓ ବାଘଚମ ବିନିମୟଦ୍ୱାରା ଲୁଣ ଆଉ ଚେନି ଦିଅନ୍ତି । ତେବେ ମନୁଷ୍ୟ ଜାତି ମୁଦ୍ରାକୁ କିପରି ବିନିମୟର ଉପାୟ କଲେ, ଦେଖାଯାଉ ।

ପୃଥିବୀ ମଧରେ ଅତିଶୟ ପ୍ରାଚୀନ ବେଦଗ୍ରନ୍ଥରେ ଦେଖାଯାଏ ଯେ ଶଜି ଗାର୍ତ୍ତି ଶଏ ଗାଇ ଘେନି ନିଜପୁତ୍ର ଶୁନସେପକୁ ବିକ୍ରୟ କରିଥିଲେ । ଇଉରୋପଖଣ୍ଡର ଆଦିକବି ହୋମରଙ୍କ ଗ୍ରନ୍ଥରେ ଦେଖାଯାଏ ଯେ ନଅଟି ଗୋରୁ ବିନିମୟ କରି ଡିଅମିଡ଼ ନିଜ ବର୍ମ କ୍ରୟ କଲେ । କିନ୍ତୁ ଏପରି ବିନିମୟ ଦ୍ୱାରା ପୂର୍ବକଥିତ ଅସୁବିଧା ଊଣା ହେଲା ନାହିଁ, ଏଣୁ ବହୁ ବିବେଚନା ଉତ୍ତାରେ ଧାତୁ, ବିନିମୟର ସହଜ ଉପାୟ ବୋଲି ନିର୍ଦ୍ଧାରିତ ହେଲା– ଧାତୁ ସ୍ଥାୟୀ, ଦୁଷ୍ପ୍ରାପ୍ୟତା ହେତୁରୁ ଅଳ୍ପକେ ବହୁତ ଦ୍ରବ୍ୟ ମିଳିପାରେ, ଏବଂ ତାହାକୁ ଭାଙ୍ଗି ଇଚ୍ଛା ଅନୁସାରେ ଭିନ୍ନ ଭିନ୍ନ ପରିମାଣର ମୁଦ୍ରା କରାଯାଇପାରେ । ବୈଦିକ ଗ୍ରନ୍ଥର ଅନେକ ସ୍ଥଳରେ ସୁବର୍ଣ୍ଣଖଣ୍ଡ ବିନିମୟର ଉପାୟ ବୋଲି ଲିଖିତ ଅଛି । ସ୍ପାର୍ଟା ରାଜ୍ୟରେ ଲୌହ ବ୍ୟବହାର ଚଳୁଥିଲା ଏବଂ ରୋମ୍ ରାଜ୍ୟରେ ତାମ୍ରଖଣ୍ଡ ପ୍ରଚଳିତ ଥିଲା ।

ଇତିହାସ ପାଠକଲେ ଜଣାଯାଏ ଯେ ଧାତୁର ଏହି ବିନିମୟ ଗୁଣ ପ୍ରକାଶ ହୋଇଥିଲେ ସୁଦ୍ଧା ଇହା ଅତି ପ୍ରାଚୀନ କାଳରେ ମୁଦ୍ରାର ଆକାର ଧାରଣ କରି ନ ଥିଲା, କାରଣ ପ୍ରାଚୀନ ସଂସ୍କୃତ ଗ୍ରନ୍ଥରେ ମୁଦ୍ରା ଏ ଅର୍ଥରେ ବ୍ୟବହୃତ ହେବାର

ଦେଖାଯାଏ ନାହିଁ । ରୋମ୍ ରାଜ୍ୟରେ ସର୍ବିଅସ ଟଲିଅସଙ୍କ ପୂର୍ବରେ ମୁଦ୍ରା ବ୍ୟବହାର ନଥିଲା, ଧାତୁଖଣ୍ଡଦ୍ୱାରା କାର୍ଯ୍ୟ ନିର୍ବାହ ହେଉଥିଲା । ସ୍ପାର୍ଟାରାଜ୍ୟରେ ଲୌହଖଣ୍ଡ ବ୍ୟବହୃତ ହେଉଥିଲା । ଏପରି ବଦଳରେ ବହୁତ ଅସୁବିଧା ଓ କ୍ଳେଶ ଘଟୁଥିଲା, ତେଣୁ ତାହା ଚିହ୍ନିତ ହେବାର ଆବଶ୍ୟକ ହେଲା । ସାଧାରଣ କାର୍ଯ୍ୟଭାର ଯାହାଙ୍କ ହସ୍ତରେ ସେ ଗ୍ରାହ୍ୟ କଲେ, ସମସ୍ତଙ୍କ ଗ୍ରାହ୍ୟ ହୋଇପାରେ, ଅତଏବ ଶାସନକର୍ତ୍ତା ମୁଦ୍ରା ଉପରେ ନିଜ ନାମ ଥିବା କୌଣସି ଏକ ଚିହ୍ନ ଆଙ୍କି କରିଦେଲେ । ଏହିପରି ମୁଦ୍ରାର ଜନ୍ମ ହେଲା । ଏହା କେଉଁ ସମୟରେ କାହାଦ୍ୱାରା ପ୍ରଥମ ହୋଇଥିଲା, ତାହା ନିରୂପଣ କରିବା ବୃଥା ଯେହେତୁ ତାହା ବିସ୍ମୃତି ସାଗରରେ ନିମଗ୍ନ ହୋଇଅଛି । ଏତେଦୂର ଉନ୍ନତି ହେଲା, ତଥାପି ପରିମାଣର ଏକତା ସ୍ଥାପିତ ହୋଇ ନାହିଁ । ବାଇବଲ ଗ୍ରନ୍ଥରେ ଦେଖାଯାଏ ଯେ ଆବ୍ରାହମ-ମାକପିଲା ଭୂମି କ୍ରୟ କରି ମୂଲ୍ୟସ୍ୱରୂପ ଚାରିଶତ ରୌପ୍ୟମୁଦ୍ରା ଓଜନ କରିଦେଇଥିଲେ । ନରମାନଜାତୀୟ ଉଇଲିୟମ ରାଜା ଯେ କି ଇଂଲଣ୍ଡ ଜୟ କରିଥିଲେ, ତାଙ୍କ ରାଜତ୍ୱକାଳ ପର୍ଯ୍ୟନ୍ତ ମୁଦ୍ରା ଓଜନ ହାର ପ୍ରଥା ଥିଲା । ଏଥିରେ ବହୁତ କ୍ଳେଶ ଘଟୁଥିଲା । ଏହି ଅସୁବିଧା ଦୂର କରିବା ନିମନ୍ତେ ମୁଦ୍ରାର ଦୁଇ ପିଠି ମୁଦ୍ରାଙ୍କିତ ଏବଂ ପାର୍ଶ୍ୱ ସମୁଦାୟ ଏକପ୍ରକାର ଚିହ୍ନରେ ଚିହ୍ନିତ ହେବାକୁ ଲାଗିଲା । ଏହି ପ୍ରକାରେ ମୁଦ୍ରା ପରିମାଣର ଏକତା ସ୍ଥାପିତ ହେଲା । ବର୍ତ୍ତମାନ ମୁଦ୍ରା ଏହି ଆକାରରେ ସଭ୍ୟଦେଶସମୂହରେ ପ୍ରଚଳିତ ହେଉଅଛି । ମୁଦ୍ରା ବିନିମୟର ଆଶ୍ଚର୍ଯ୍ୟ ଉପାୟ, ଏଣୁ ମୁଦ୍ରାହିଁ ଏକମାତ୍ର ଅର୍ଥ ବୋଲି ଲୋକମାନଙ୍କର ଭ୍ରମ ହୁଏ । ବର୍ତ୍ତମାନ ସମୟରେ ପୁଣି ବ୍ୟାଙ୍କ ନୋଟ ପ୍ରଚଳିତ ହେଉଅଛି, ବଣିକମାନଙ୍କ ମଧ୍ୟରେ ହୁଣ୍ଡୀ ମଧ୍ୟ ଚଳୁଅଛି, କିନ୍ତୁ ଏମାନଙ୍କ ପ୍ରଚଳନରେ କିଛି ତାରତମ୍ୟ ଅଛି । ଏମାନଙ୍କ ଜନ୍ମ ଏବଂ ବ୍ୟବହାର ସ୍ୱତନ୍ତ୍ର କାରଣରୁ ଉତ୍ପନ୍ନ । ଏହା ସମୟାନ୍ତରେ ଆଲୋଚିତ ହେବ ।

## ବିବିଧ ସମ୍ବାଦ

ଆମ୍ଭମାନଙ୍କ ମାଜେଷ୍ଟ୍ରେଟ୍ ଓ କଲେକ୍ଟର ଶ୍ରୀଯୁକ୍ତ ଟି. ନରମନ ସାହେବ ବାର୍ଷିକ ମଫସଲ ଗସ୍ତପାଇଁ ଗତ ୪ ନଭେମ୍ବର ମାସରୁ ବିଦେଶକୁ ଯାତ୍ରା କରିଅଛନ୍ତି ।

ଗତ ଦୌଡ଼ରେ ଯେଉଁ ସମସ୍ତ ମକଦ୍ଦମା ନିଷ୍ପତ୍ତି ହୋଇଅଛି ସେଥିମଧ୍ୟରୁ ଗୋଟିଏ ମୋକଦ୍ଦମା ଅତି ଶୋଚନୀୟ ।

ବିହାରିବାଗର ଜେଲର ମେକଲି ସାହେବଙ୍କ ସହିତ ଉଇଲସନ୍ ସାହେବଙ୍କର ବିଶେଷ ବନ୍ଧୁତା ଥିଲା । ସେହି ଅବକାଶରେ ଜେଲରଙ୍କ ମେମସାହେବ ସହିତ

ଉଇଲସନ୍‌ର ସୁଦ୍ଧା ପ୍ରଣୟ ହୁଏ । କିଛିଦିନ ବାଦ ଉଇଲସନସାହେବ ସବ୍‌ଓଭରସିୟର ହୋଇ ବାଲେଶ୍ୱରକୁ ଆସନ୍ତି । ଏଠାରେ ତାହାଙ୍କର ପୀଡ଼ା ହୁଏ । ପୀଡ଼ା ସମ୍ବାଦ ଉଲ୍ଲିଖିତ ମେମସାହେବ ପାଇଁ ଅତ୍ୟନ୍ତ ଦୁଃଖିତ ହେଲେ । ସାକ୍ଷାତ୍ କରିବା ବିଶେଷ ଆବଶ୍ୟକ ମଣି ମେମସାହେବ ଘରୁ ବାହାରିଲା ବେଳେ କଲିକତା ଯାଉଅଛି ବୋଲି ନିଜ ସ୍ୱାମିଙ୍କଠାରେ କହିଥିଲେ । କିନ୍ତୁ ଗୁପ୍ତଭାବରେ ଷ୍ଟିମାର୍ ଯୋଗେ ଏଠାକୁ ଆସିଲେ । ଜେଲର ସାହେବ ଏହି ଘଟନାର ସମ୍ବାଦ ପାଇ ଡାକଯୋଗେ ଏଠାରେ ଉପସ୍ଥିତ ହେଲେ । ସନ୍ଧାନ କରି ଜାଣିପାରିଲେ ଯେ ମେମସାହେବ ଆସିଥିଲେ ସତ୍ୟ ମାତ୍ର ଗତ ଷ୍ଟିମାରରେ ଗୃହକୁ ଯାଇଅଛନ୍ତି । ମେକଲି ସାହେବ କୋପାବିଷ୍ଟ ହୋଇ ଉଇଲସନ ସାହେବଙ୍କ ନାମରେ ଗୃହିଣୀକୁ ଫୁସୁଲାଇ ଆଣିଥିବାର ଦାବିକରି ଜୟଣ୍ଟ ମାଜିଷ୍ଟ୍ରେଟଙ୍କଠାରେ ଲାଲିସ ରୁଜୁ କଲେ । ସାହେବ ମଉସୁଫ ବିଚାରକରି ଆସାମିକୁ ଦୌରା ସପୋର୍ଦ୍ଦ କଲେ । ଦୌରାରେ ସବାଲ ଜବାବ କରିବାପାଇଁ ଉଇଲସନ୍ ସାହେବ କଲିକତାରୁ ଗୋଟିଏ ଇଂରେଜ ଉକିଲ ଅଣାଇଥିଲେ । ବିଚାରରେ ଫୁସୁଲାଇ ଆଣିଥିବାର ପ୍ରମାଣ ନମିଳିବାରୁ ଆସାମି ଖଲାସ ହୋଇଅଛି । ଆଜିକାଲି ଯେଉଁମାନେ ଉକିଲ ସାହେବ ହୋଇଅଛନ୍ତି ସେମାନଙ୍କୁ ଖଣ୍ଡିଏ ତାଲିମ ମିଳିଲା ।

ଆମ୍ଭମାନଙ୍କ କମିଶନର ଟି.ଇ. ରାଭିନ୍‌ସା ସାହେବ ୨୦ ତାରିଖ ନଭେମ୍ବର ଏଠାରେ ଉପସ୍ଥିତ ହେବେ । ମୟୂରଭଞ୍ଜ ଓ ନୀଳଗିରି ମଧ୍ୟରେ ଗଡ଼ାବେଡେଇ ପଥର ଖଣି ନେଇ ଯେଉଁ ବିବାଦ ଚଳୁଅଛି ତାହା ଭଞ୍ଜନ କରାହିଁ ଆସିବାର ପ୍ରଧାନ ଉଦ୍ଦେଶ୍ୟ ।

ବାଲେଶ୍ୱର ନିବସୀ ଶ୍ରୀଯୁକ୍ତ ବାବୁ ବୈକୁଣ୍ଠନାଥ ଦେ ବାଲେଶ୍ୱର ଉତ୍କଳ ପ୍ରେସ୍‌କୁ କୋମ୍ପାନିଙ୍କ ଠାରୁ କ୍ରୟକରି ଅଛନ୍ତି ।

—



**ଡକ୍ଟର ଅରବିନ୍ଦ ଗିରି (୧୯୫୪) :** ଜନ୍ମ – ଭଦ୍ରକ ଜିଲ୍ଲାର କିଶୋର ପ୍ରସାଦ ଗ୍ରାମ;ଶିକ୍ଷା– ଫକୀରମୋହନ ମହାବିଦ୍ୟାଳୟ, ବାଲେଶ୍ୱର ଓ ଉପାଧ୍ୟୁତ୍ତର ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ। ସଂପ୍ରତି ବରିଷ୍ଠ ଅଧ୍ୟାପକ, ଓଡ଼ିଆ ବିଭାଗ, ସ୍ୱର୍ଣ୍ଣଚୂଡ଼ ମହାବିଦ୍ୟାଳୟ, ମିତ୍ରପୁର, ବାଲେଶ୍ୱର।

'ସାହିତ୍ୟିକ ଚନ୍ଦ୍ରମୋହନ ମହାରଣା' ଚର୍ଚ୍ଚା-ନିବନ୍ଧ ପାଇଁ ୧୯୮୫ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ଲାଭ।

ଏ ପର୍ଯ୍ୟନ୍ତ ତାଙ୍କର ଏକଶହରୁ ଊର୍ଦ୍ଧ୍ୱ ଗବେଷଣାତ୍ମକ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ। କେତେକ ଗଳ୍ପ ଓ କବିତା ମଧ୍ୟ ପ୍ରକାଶିତ। ସାହିତ୍ୟ ସାଧନା ପାଇଁ ବହୁ ଅନୁଷ୍ଠାନ ଦ୍ୱାରା ସେ ସମ୍ମାନିତ ।

ଲିଖିତ ଓ ସଂପାଦିତ ପୁସ୍ତକାବଳୀ – ଚନ୍ଦ୍ରମୋହନ ପରିକ୍ରମା, ଚନ୍ଦ୍ରମୋହନ ଗ୍ରନ୍ଥାବଳୀ, ଚନ୍ଦ୍ରମୋହନ ମହାରଣା (ଜୀବନୀ) ଗୋଲକ ସ୍ମୃତିସମ୍ଭାର, ଫକୀରମୋହନଙ୍କ ଦୁର୍ଲଭ ରଚନାବଳୀ, ଜଗନ୍ନାଥ ପଢ଼ିହାରୀ ଗ୍ରନ୍ଥାବଳୀ (ଯନ୍ତ୍ରସ୍ଥ), ରସରାଜ ବଟବିହାରୀ ଗ୍ରନ୍ଥାବଳୀ(ଯନ୍ତ୍ରସ୍ଥ), ରାଜା ବୈକୁଣ୍ଠନାଥ ଦେ ବାହାଦୁର (ଯନ୍ତ୍ରସ୍ଥ) ।

ପ୍ରଗତି ଉତ୍କଳ ସଂଘ (ପ୍ରତିଷ୍ଠା-୧୯୫୮) ଇସ୍ପାତ ସହର ରାଉରକେଲାର ଅନ୍ୟତମ ସର୍ବପୁରାତନ ଓ ଅଗ୍ରଣୀ ସ୍ୱେଚ୍ଛାସେବୀ ସାଂସ୍କୃତିକ ଅନୁଷ୍ଠାନ। ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟ ପାଇଁ ଏହା ସମଗ୍ର ଓଡିଶାରେ ସୁପରିଚିତ। ପାଠାଗାର ଆନ୍ଦୋଳନ କ୍ଷେତ୍ରରେ ଏହା ଦୃଷ୍ଟାନ୍ତମୂଳକ ନେତୃତ୍ୱ ଦେଇଛି। ଉତ୍କଳ ଗୌରବ ମଧୁସୂଦନ ଜୟନ୍ତୀ ଓ ଉତ୍କଳ ଦିବସ ପାଳନ ପରମ୍ପରାର ଏହା ପ୍ରତିଷ୍ଠାତା। ମଧୁସୂଦନଙ୍କ ଆଦର୍ଶ ସଂପର୍କରେ ଯୁବପୀଢି ମଧ୍ୟରେ ସଚେତନତା ସୃଷ୍ଟି କରିବା ପାଇଁ ପ୍ରଗତି ଉତ୍କଳ ସଂଘ ଓଡିଶାର ବିଶ୍ୱବିଦ୍ୟାଳୟଗୁଡିକରେ ସ୍ୱର୍ଣ୍ଣପଦକ-ପ୍ରଦାନର ବ୍ୟବସ୍ଥା କରିଛି ଓ ମଧୁସୂଦନଙ୍କ ସଂପର୍କରେ - Madhusudan Das : The Legislator; Madhusudan Das : The Man and His Missions I Madhusudan Das : His Life and Achievements ଆଦି ପୁସ୍ତକର ଏହା ପ୍ରକାଶକ। ସାଂପ୍ରତିକ କାଳରେ ଓଡିଆ ସାହିତ୍ୟ ଓ ସଂସ୍କୃତିର ଅବହେଳିତ ଦିଗ ତଥା କ୍ରମଶଃ ବିସ୍ମୃତ ହୋଇଯାଉଥିବା ବରେଣ୍ୟ ପ୍ରତିଭାମାନଙ୍କ ସଂପର୍କରେ ଏହା କେତେକ ଉଲ୍ଲେଖଯୋଗ୍ୟ ପୁସ୍ତକର ପ୍ରକାଶକ।